# ହରିହର ମିଶ୍ରଙ୍କ କବିତା
# ଏକ
# ସମୀକ୍ଷଣ

**ସଂକଳନ ଓ ସମ୍ପାଦନା :**
ପ୍ରଫେସର ଗଣେଶ୍ୱର ମିଶ୍ର
ଇଂରାଜୀ ବିଭାଗ, ବାଣୀବିହାର
ଫୋନ୍ - ୫୮୧୦୩୦



**ସରସ୍ୱତୀ ପବ୍ଲିକେଶନସ୍**
ଜଗତପୁର - ୭୫୪ ୦୨୧
କଟକ

# ହରିହର ମିଶ୍ରଙ୍କ କବିତା ଏକ ସମୀକ୍ଷଣ


- ସତ୍ୱାଧିକାରୀ ଓ ପ୍ରକାଶକ :
  ଲକ୍ଷ୍ମଣ କୁମାର ସାହୁ
  ସରସ୍ୱତୀ ପବ୍ଲିକେଶନସ୍
  ପ୍ଲଟ ନମ୍ବର - ୧୩୭, ନୂତନ ଶିକ୍ଷାଞ୍ଚଳ,
  ଜଗତପୁର , କଟକ-୭୫୪ ୦୨୧
  ☎ ୬୮୨୫୩୨ / ୬୮୨୫୧୨

- ପ୍ରଥମ ସଂସ୍କରଣ : ୨୦୦୧



- କବି ହରିହର ମିଶ୍ରଙ୍କ ଠିକଣା :
  ମାର୍କଣ୍ଡେଶ୍ୱର ସାହି, ପୁରୀ / କିମ୍ବା
  ଏଲ୍.ବି.୨୯୦, ବରଗଡ଼ ବ୍ରିଟ୍ କଲୋନୀ, ଭୁବନେଶ୍ୱର-୧୮
  ଫୋନ୍ - ୩୧୨୧୨୬



- ଡି.ଟି.ପି.
  ମଞ୍ଜୁ ପ୍ରିଣ୍ଟର୍ସ
  ନୂଆ ରାଉସାପାଟଣା, କେନାଲ ରୋଡ଼
  କଟକ -୧ , ଫୋ. (୦୬୭୧) ୬୧୮୭୩୯

- ମୂଲ୍ୟ :
  ସାଧାରଣ : ୧୫୦ ଟଙ୍କା
  ବନ୍ଧେଇ : ୧୭୫ ଟଙ୍କା

# ସୂଚୀ

# ଅଗ୍ରଲେଖ

*ଗଣେଶ୍ୱର ମିଶ୍ର*

ହରିହର ମିଶ୍ର ଆମ ସମୟର ଅନ୍ୟତମ ପ୍ରମୁଖ କବି । କେବଳ କବି ନୁହନ୍ତି । ନାଟ୍ୟକାର, କଥାଶିଳ୍ପୀ, ମଞ୍ଚନିର୍ଦ୍ଦେଶକ, ଅଭିନେତା, ବେତାର-ଶିଳ୍ପୀ ମଧ୍ୟ । ବିଗତ ଦଶକ ବ୍ୟାପି ତାଙ୍କର ସାହିତ୍ୟ ଓ କଳା ସାଧନା ଓଡ଼ିଶାରେ ସୁବିଦିତ ।

ଏହି ଗ୍ରନ୍ଥଟି ହରିହରଙ୍କ କାବ୍ୟ-ପ୍ରତିଭାର ଏକ ପ୍ରାଥମିକ ଆକଳନ ମାତ୍ର । ତାଙ୍କ କାବ୍ୟ ପ୍ରତିଭା ସମ୍ପର୍କରେ ପତ୍ର-ପତ୍ରିକାରେ ପ୍ରକାଶିତ କେତେକ ଆଲୋଚନାର ସଙ୍କଳନ 'ହରିହର ମିଶ୍ରଙ୍କ କବିତା : ଏକ ସମୀକ୍ଷଣ' । କହିବା ଅନାବଶ୍ୟକ, ଗ୍ରନ୍ଥ ଆକାରରେ ପ୍ରକାଶିତ ହେବାର ପରିକଳ୍ପନାରେ ଏହି ଆଲୋଚନା ସବୁ ଲିଖିତ ହୋଇନଥିଲା । କିନ୍ତୁ ଉଭୟ ପ୍ରବୀଣ ଓ ତରୁଣ, ସମାଲୋଚକ ଓ କବିମାନଙ୍କ ଦ୍ୱାରା ଲିଖିତ ଏହି ଆଲୋଚନା ସବୁ ହରିହରଙ୍କ କାବ୍ୟ ପ୍ରତିଭା ତଥା ମାନସିକତାର ବିଭିନ୍ନ ଦିଗ ଆଲୋକିତ କରିଛି । ଏଇ ସଂକଳନଟି ତେଣୁ ହରିହରଙ୍କ କାବ୍ୟ ପ୍ରତିଭା ବୁଝାମଣାରେ ଯଥେଷ୍ଟ ସହାୟକ ହେବ ବୋଲି ଆଶା କରିବା ସ୍ୱାଭାବିକ ।

ଜୀବିତ କବି/ ଲେଖକମାନଙ୍କ କୃତିର ଆଲୋଚନା ଗ୍ରନ୍ଥ ଓଡ଼ିଆରେ ବିରଳ । ଏ ଗ୍ରନ୍ଥର ସ୍ୱାତନ୍ତ୍ର୍ୟ ତେଣୁ ସହଜରେ ସ୍ୱୀକାର କରାଯାଇପାରେ । ଅନ୍ୟାନ୍ୟ ପ୍ରମୁଖ କବି/ ଲେଖକମାନଙ୍କ କୃତି ସମ୍ପର୍କରେ ଏପରି ଆଲୋଚନା ଗ୍ରନ୍ଥମାନ ଅଚିରେ ପ୍ରକାଶିତ ହେବା ଉଚିତ୍ ।

ହରିହର ମିଶ୍ରଙ୍କ ଏ ଯାବତ୍ ପ୍ରକାଶିତ କବିତା ସଂକଳନ ଗୁଡ଼ିକ ହେଲା : ଶଙ୍ଖନାଭି (୧୯୭୩), ଅକ୍ଷମ ଦେବତା (୧୯୭୮), ସୂକ୍ତ ଶତକ (୧୯୭୯), ଚନ୍ଦ୍ରବିମ୍ବ (୧୯୮୧) ଲାଲ୍ କଡ଼ର ତପସ୍ୟା (୧୯୮୨), ଚାହାଣି ମଣ୍ଡପ (୧୯୮୮), ସ୍ୱପ୍ନ ବିନିମୟ (୧୯୯୨), ଭିତିରି ଚନ୍ଦନ (୧୯୯୮), ଶବ୍ଦ ଏକା ଏକା ଏକତ୍ର (୧୯୯୫), ଦର୍ପଣ ଶିଳା (୧୯୯୫), ଅଣ ଅକ୍ଷର (୧୯୯୮), ସନ୍ଧ୍ୟା ଦର୍ଶନ (୧୯୯୮) ଏବଂ ସ୍ୱର ବର୍ଣ୍ଣ (୧୯୯୯) । ଏହା କିନ୍ତୁ ତାଙ୍କର ସମ୍ପୂର୍ଣ୍ଣ ଗ୍ରନ୍ଥ-ତାଲିକା ନୁହେଁ । ବର୍ତ୍ତମାନ ମଧ୍ୟ ନିରବଚ୍ଛିନ୍ନ ତାଙ୍କର କାବ୍ୟ-ସାଧନା । ତାଙ୍କ ସମ୍ପର୍କରେ ଭବିଷ୍ୟତ ଗବେଷଣା ପାଇଁ ଏ ସଙ୍କଳନ ଭିତ୍ତିଭୂମି ମାତ୍ର ।

ହରିହର ଏଯାବତ୍ ପାଞ୍ଚ ଶହରୁ ଅଧିକ କବିତା ରଚନା କରିଛନ୍ତି । ସେଥି ମଧ୍ୟରେ ଗୀତିକବିତା (ସ୍ୱରବର୍ଣ୍ଣ) ଓ ଅନୁବାଦ (ସୂକ୍ତ ଶତକ) ଅନ୍ତର୍ଭୁକ୍ତ । ତାଙ୍କର ବହୁ ଗୀତିକବିତା ଚଳଚ୍ଚିତ୍ର, ରେଡ଼ିଓ, ଟେଲି ଭିଜନ୍ ଓ କ୍ୟାସେଟ୍ ମାଧ୍ୟମରେ ପ୍ରକାଶିତ ଓ ଆଦୃତ । କେବଳ ସଂଖ୍ୟା ଦୃଷ୍ଟିରୁ ବିଚାର କଲେ ହରିହରଙ୍କ ସମକାଳୀନ କବି ବର୍ତ୍ତମାନର ଓଡ଼ିଆ ସାହିତ୍ୟରେ ବିରଳ । ସଂଖ୍ୟାର ବିଚାର ଅବଶ୍ୟ କବିତା ମୂଲ୍ୟାୟନରେ ଗୌଣ ।

ଏ ସଙ୍କଳନର ଆଲୋଚକମାନେ ହରିହରଙ୍କ କବିତାର ବୈଶିଷ୍ଟ୍ୟ ସମ୍ପର୍କରେ କେତେକ ନିର୍ଦ୍ଦିଷ୍ଟ ତଥ୍ୟର ଅବତାରଣା କରିଛନ୍ତି/ ଯେପରି-(୧) ଅଧିକାଂଶ କବିତାର ଅନୁଭୂତି ପୁରୀ, ସମୁଦ୍ର, ଜଗନ୍ନାଥ ଅର୍ଥାତ୍ ପୁରୀର ସାଂସ୍କୃତିକ ପରିବେଶ ସମ୍ପର୍କିତ, (୨) କାବ୍ୟ ଶୈଳୀରେ ତାଙ୍କର ମିଥ୍– ପ୍ରୟୋଗ ଅନ୍ତରଙ୍ଗ ଓ ବଳିଷ୍ଠ; (୩) ଜୀବନାନୁଭୂତିର ତୀବ୍ରତା ପ୍ରକାଶ ନିମିତ୍ତ ସେ ତୀକ୍ଷ୍ଣ ଶ୍ଳେଷାତ୍ମକ ଦୃଷ୍ଟିଭଙ୍ଗୀ ଗ୍ରହଣ କରିଛନ୍ତି, (୪) ଦ୍ୱିଧା, ବିପରୀତ ବୋଧକ ଶବ୍ଦ ସମନ୍ୱୟ ତଥା ବିରୋଧାଭାସ ମାଧ୍ୟମରେ ସେ ଜୀବନକୁ ବିଶ୍ଳେଷଣ କରିଛନ୍ତି, (୫) ଆଶା, ବିଶ୍ୱାସ ସ୍ୱପ୍ନର ବିନିମୟ ତାଙ୍କର ମୂଳ ବକ୍ତବ୍ୟ, (୬) ଐତିହ୍ୟ ଓ ଆଧୁନିକତା ଭିତରେ ସେ ସମ୍ପର୍କ ଯୋଡ଼ିଛନ୍ତି । ଭାଷା, ଭାବ, ଛନ୍ଦ ଓ ରୂପକଳ୍ପରେ; (୭) ରହସ୍ୟମୟତା ଓ ଆଧ୍ୟାତ୍ମବାଦ ତାଙ୍କ କବିତାର ମୂଳ ସ୍ୱର; (୮) ସେ ଏକ ସମୟରେ ଆଞ୍ଚଳିକ ଓ ଆନ୍ତର୍ଜାତିକ; ରକ୍ଷଣଶୀଳ ଓ ପ୍ରଗତିଶୀଳ; ବୌଦ୍ଧିକ ଓ ସାଧାରଣ; ପ୍ରାଚୀନ ଓ ଆଧୁନିକ ।

ଏ ସମସ୍ତ ବିଶ୍ଳେଷଣରୁ ଗୋଟିଏ କଥା ସ୍ପଷ୍ଟ- ଯେ ହରିହର ମିଶ୍ରଙ୍କ କାବ୍ୟ ସୃଷ୍ଟି ବୈଚିତ୍ର୍ୟମୟ ଓ ଜଟିଳ ଏବଂ ସ୍ୱକୀୟ । ତାଙ୍କର ବକ୍ତବ୍ୟ କେବେ କେବେ ଅସ୍ପଷ୍ଟ । ଏହି ଅସ୍ପଷ୍ଟତାର କାରଣ ହୋଇପାରେ ଚିତ୍ର କଳ୍ପନା (ଯାହା ଏତେ ଆଞ୍ଚଳିକ ଯେ ବୃହତ୍ତର ପାଠକ ସମାଜ ନିକଟରେ ତାହା ଅପରିଚିତ); କିମ୍ବା ଶବ୍ଦଟିଏ (ଯାହା ଆନୀତ ହୋଇଥାଇପାରେ ଲୋକ ମୁଖରୁ କିମ୍ବା କୌଣସି ମଧ୍ୟଯୁଗୀୟ କବିଙ୍କ ଜଣାଣରୁ); କିମ୍ବା ଏପରି ଏକ ତନ୍ମୟଭାବ ବା ଉଚ୍ଛ୍ୱାସ– ଯାହାର ପ୍ରକାଶ ଭାଷାତୀତ ! ହରିହର ମିଶ୍ରଙ୍କ କବିତାରେ ସାନ୍ଦ୍ରତା ଅନୁଭବ କରାଯାଇପାରେ ସହଜରେ; କିନ୍ତୁ ଯୁକ୍ତିନିଷ୍ଠ ପ୍ରାଞ୍ଜଳତା ସବୁ ସମୟରେ ଆଶା କରାଯାଇପାରେନା । ତାଙ୍କ କବିତାର ଗୋଟିଏ ଚିତ୍ରକଳ୍ପ– ଏପରି କି ପ୍ରଥମ ଧାଡ଼ିଟି– ଭାରି ମୁଗ୍ଧ କରିପାରେ ପାଠକକୁ– ଯେ ପରବର୍ତ୍ତୀ ଚିତ୍ରକଳ୍ପ ବା ଧାଡ଼ିମାନଙ୍କ ମର୍ମ ଉପଲବ୍ଧିର ମାନସିକତା ସେ ହରାଇବସେ । ଏଥିରୁ କବିଙ୍କର ସାମର୍ଥ୍ୟ ପ୍ରମାଣିତ ହୁଏ, ଦୁର୍ବଳତା ନୁହେଁ ।

ଆକ୍ଷରିକ ଅର୍ଥରେ ନ ହେଲେ ମଧ୍ୟ ହରିହର ମିଶ୍ର ମୋର ଅଗ୍ରଜ । ଆମର ଜନ୍ମସ୍ଥାନ ପୁରୀ; ଶିକ୍ଷା ପୁରୀ ଓ ରେଭେନ୍ସା କଲେଜରେ । ବୃତ୍ତି- ସାହିତ୍ୟ ଅଧ୍ୟାପନା । ବିଗତ ଚାଳିଶ ବର୍ଷ ଆମର ବ୍ୟକ୍ତିଗତ, ପାରିବାରିକ, ଭାବଗତ ସମ୍ପର୍କ, ତାଙ୍କର ବହୁ କବିତାର ମୁଁ ପ୍ରଥମ ପାଠକ/ ସମାଲୋଚକ । ସେ ଅହରହ ଭାବ ଜଗତରେ ନିମଜ୍ଜିତ ରହିଥାନ୍ତି । ତାଙ୍କର ସାନ୍ନିଧ୍ୟ ଲାଭ ମୋର ସୌଭାଗ୍ୟ । ତାଙ୍କ ସମ୍ପର୍କରେ ଲିଖିତ ଗ୍ରନ୍ଥଟିର ଅଗ୍ରଲେଖ ରଚନା କରିବା ଯଥାର୍ଥରେ ମୋର ପରମ ଗୌରବ ।

**ସଂପାଦକ**

ପ୍ରଫେସର ଇଂରାଜୀ ବିଭାଗ,

ବାଣୀବିହାର



ସ୍ୱପ୍ନ ବିନିମୟ
ସତ୍ୟ ବିନିମୟ

# ହରିହର ମିଶ୍ରଙ୍କ କବିତା...

*ସୌରୀନ୍ଦ୍ର ବାରିକ*

କବି ନିଃସଙ୍ଗ ସାମାଜିକ ଜୀବଟିଏ । ଠିକ୍ ସାମାଜିକ କହିଲେ ଆମେ ଯାହା ବୁଝୁ ତା'ଠାରୁ ସେ ଅଧିକ । ଗୋଟିଏ ଜାତିର ସଂସ୍କୃତି, ଐତିହ୍ୟ, ସମସ୍ୟା ଓ ସ୍ୱପ୍ନ ଏବଂ ତା'ର ବର୍ତ୍ତମାନ ସବୁଥିରୁ ସେ ଜନ୍ମ ନିଏ । ସେ କେବଳ ଏକା ଏହା ସାଥିରେ ରହେ ନାହିଁ । ଦଳ ଭିତରେ ଏକା ହୋଇ ରହିବାର ଧାରାକୁ ବୁଦ୍ଧିମନ୍ତ କରେ । ସିଏ ତେଣୁ ଏକ ବିରୋଧାଭାସ । ସେ ଗଣ ଭିତରୁ ଜନ୍ମ ନେଇ ନିଜସ୍ୱ ଏକକଟିଏ; ପୁଣି ନିଜର ନିଜସ୍ୱତା ଭିତରେ ସେ ଗଣକୁ ଗର୍ଭିତ କରିଥାଏ । ଏହା ସମ୍ଭବ ହୋଇଥାଏ ଜୀବନ ପ୍ରତି ତା'ର ଅଙ୍ଗୀକାରରୁ, ଜୀବନକୁ ଭିନ୍ନ ଭାବରେ ଦେଖିବାର ଢ଼ଙ୍ଗରୁ ଏବଂ ବାସ୍ତବତାକୁ ନିଜସ୍ୱ ଭାବରେ ସଜାଡ଼ିବାର କଳ୍ପନାଶକ୍ତିରୁ । ଏଇଥିପାଇଁ ଜଣେ କବି ଗୋଟିଏ ଜାତିର ସାମଗ୍ରିକ ଚେତନାର ପ୍ରତୀକ । ତା ଭିତରେ ବନ୍ଦୀ ମୁହୂର୍ତ୍ତେ ଚିରନ୍ତନ କାଳ । ତେଣୁ ଜଣେ ସଚେତନ କବିକୁ ପଢ଼ିଲାବେଳେ ଆମେ କେବଳ ବର୍ତ୍ତମାନର ବର୍ତ୍ତମାନତା ଭିତରେ ନୁହେଁ, ଆମର ସମସ୍ତ ଅତୀତର ସ୍ମୃତି ଏବଂ ଭବିଷ୍ୟତର ସମ୍ଭାବନାକୁ ଛୁଇଁ ପାରୁଁ । ଏହି ପୂର୍ଣ୍ଣତାର ପ୍ରତୀକ କବି । ଆମ ସାମ୍ପ୍ରତିକ କବିତାରେ ଏପରି ଜଣେ ସିଦ୍ଧ କବି ହେଉଛନ୍ତି ହରିହର ମିଶ୍ର ।

ହରିହରଙ୍କ କବିତାରେ ଏହି ବିରୋଧର ସମନ୍ୱୟ । ଏହି ସମନ୍ୱୟ ତାଙ୍କ ଚେତନାରେ, ତାଙ୍କ ପ୍ରକାଶ ଭଙ୍ଗୀରେ । ତାଙ୍କ ଭିତରେ ଜଣେ ନାଟ୍ୟକାର ପୁଣି ନିଛକ କବିର ସମନ୍ୱୟ । ସେ ନିଛକ ଓଡ଼ିଆ ସଂସ୍କୃତି ଓ ଐତିହ୍ୟକୁ ନିଜସ୍ୱ କରି ସାରା ମଣିଷର କଥା କହିବାକୁ ଚାହିଁଛନ୍ତି । ଆଞ୍ଚଳିକତାର ଗହିରୀ ଦାଣ୍ଡରେ ଧୂଳି ଧୂସର ପାଦ ବହପି ଯାଇଛି ସାର୍ବଜନୀନତାର ଦିଗ୍‌ବଳୟ ଆଡ଼କୁ । ସ୍ୱପ୍ନ ଦେଇ ଧରିବାକୁ ଚାହିଁଛନ୍ତି ବାସ୍ତବତାକୁ । ତାଙ୍କ କବିତା ତ ବାସ୍ତବତାର ସ୍ୱପ୍ନ ସହ, ସ୍ୱପ୍ନର ବାସ୍ତବତା ସହ ବିନିମୟ । ଏଇସବୁ ପାଇଁ ହରିହରଙ୍କ କବିତା ନିଜସ୍ୱ ଗୁଣରେ ଭାସ୍ୱର । ଆମେ ଯେତେବେଳେ ତାଙ୍କ କବିତା ପଢ଼ୁଁ ଆମେ ପଢ଼ୁଁ ଏକ

ସଚେତନ ଓଡ଼ିଆ ସାମ୍ପ୍ରତିକ କବିକୁ, ଓଡ଼ିଆ ଭାଷାରେ କେବଳ ଲେଖୁଥିବା କବି ନୁହେଁ, ଓଡ଼ିଆ ମନ ନେଇ, ଓଡ଼ିଆ ଚେତନା ନେଇ, ଓଡ଼ିଆ ମାଟିର କବିତା ଲେଖୁଥିବା କବିଟିକୁ । ଓଡ଼ିଆ ଚେତନା ତ ସମନ୍ୱୟର ଚୈତନା, ଉଦାରତାର ଚେତନା । ଆଉ ଏଇ ଉଦାର ବ୍ୟାପକତା ତ ହରିହରଙ୍କ କବିତା ।

ହରିହରଙ୍କ ପାଖରେ ଆଧୁନିକ ଜୀବନର ଜଟିଳ ସମସ୍ୟା ନୁହେଁ, ଜୀବନ ଓ ସମ୍ପର୍କର ରହସ୍ୟମୟତା ହିଁ ମୁଖ୍ୟ । ଏହି ରହସ୍ୟମୟତା ଅଧିକ ରହସ୍ୟମୟ ହୁଏ ଯେତେବେଳେ ସେ ସ୍ୱପ୍ନ ଏବଂ ମୃତ୍ୟୁ କଥା ଭାବନ୍ତି । ସ୍ୱପ୍ନ, ମୃତ୍ୟୁ, ଉଭୟ ରହସ୍ୟ । ରହସ୍ୟ ବି ତାଙ୍କ ପାଖରେ ସବୁଠାରୁ ନିଜର, ନିକଟର ଜଗନ୍ନାଥ । ଜଗନ୍ନାଥବୋଧ କବିଙ୍କ ଚେତନାକୁ ଛାଇଯାଇଛି । ଏହି ଚେତନା ତାଙ୍କ ରହସ୍ୟବୋଧକୁ ଅଧିକ କରି ତୋଳିଛି । ଜଗନ୍ନାଥ ଚେତନା ଭିତରେ କବି ଜନ୍ମିଛନ୍ତି, ବଢ଼ିଛନ୍ତି । ପୁରୀର ବିଶ୍ୱ, କବିଙ୍କର ମନ । କବିଙ୍କର ସ୍ୱପ୍ନ । ସେଇ ମନ ନେଇ ସେ ଆଜିର ବାସ୍ତବତାକୁ ଦେଖିଛନ୍ତି । ସ୍ୱପ୍ନକୁ ଖୋଜୁଛନ୍ତି । ସ୍ୱପ୍ନ ଓ ବାସ୍ତବ, ରହସ୍ୟ ଓ ସତ୍ୟ ଭିତରେ ବିନିମୟ ହିଁ ତାଙ୍କ କବିତା । ଏହି ବିନିମୟର ମାଳାକାର କବି । 'ମୁଁ ତ ତା'ର ମାଳାକାର/ମୁଁ ତାହାର ଗୋଟି ଗୋଟି ପାଖୁଡ଼ାର/କମ୍ପନ ଓ ଉଦ୍‌ବେଳନ ବୁଝେ/ଓ ବାଣ୍ଟିଦିଏ କବିତାରେ/ଫୁଟିବାର ସବୁ ସ୍ୱପ୍ନ, ସବୁ ପ୍ରେମ/ନୀରବରେ ଯେବେ ଝଡ଼ି ପଡ଼େ/କଙ୍କାଳର ହସ ପରି/ଏ ମାଟିରେ ଗଡ଼େ... ଲୋଟି ପଡ଼େ ।' (ଫୁଟିବାର ସ୍ୱପ୍ନ/ଚାହାଣି ମଣ୍ଡପ) । ଫୁଲଟି କବିଙ୍କ ପାଖରେ ରହସ୍ୟବାସ୍ତବର ଛବି, ଜୀବନ । ତା ପାଖରେ ସ୍ୱପ୍ନ, ମୃତ୍ୟୁ ସବୁ ସତ । ଆଉ କବି ଏହି ସତ୍ୟର ମାଳାକାର । ଏହା ହିଁ ତାଙ୍କ କବିତାର ଉତ୍ସ ।

ପଞ୍ଚମ ଓ ଷଷ୍ଠ ଦଶକରେ ଆଧୁନିକ ଓଡ଼ିଆ କବିତା ଇଂରାଜୀ କବି ଏଲିଅଟ୍ ଏବଂ ପାଉଣ୍ଡ୍ ଆଦିଙ୍କ ପ୍ରଭାବ ଦ୍ୱାରା ଋଦ୍ଧିମନ୍ତ ହୋଇଥିଲା । ଏହି ପ୍ରଭାବ ଦ୍ୱାରା କବିତାରେ ଆନ୍ତର୍ଜାତିକବୋଧର ଜନ୍ମ ହୋଇଥିଲା । ଏହା ଫଳରେ ଓଡ଼ିଆ କବିତାର କାନ୍‌ଭ୍ୟାସ୍ ବ୍ୟାପ୍ତ ହୋଇଥିଲା ସତ୍ୟ ମାତ୍ର ଉପୁଡ଼ା ଗଛ ପରି ଏହାର ଅସ୍ତିତ୍ୱ ହୋଇଗଲା । ଏ କବିତାରେ ନିଜ ମାଟିର ଗନ୍ଧ ଅପେକ୍ଷା ବିଦେଶୀ ଗନ୍ଧର ଆଧିକ୍ୟ ହେଲା । ଆଧୁନିକ କବିତାରେ ନିର୍ଦ୍ଦିଷ୍ଟତା ରହିଲା ନାହିଁ । ଅଦ୍ଭୁତ ଏକ ବିଶାଳ ସାଧାରଣତା ଓଡ଼ିଆ କବିତାକୁ ଗ୍ରାସିଗଲା । ମାତ୍ର କବିଙ୍କ ନିଜସ୍ୱ ଅନୁଭୂତିର ସାର୍ବଜନୀନତା ଏହି ନିଜସ୍ୱ ଅନୁଭୂତିଟା ଜନ୍ମ ନିଏ କବିର ନିଜ ଗାଁ, ଭୂଇଁ, ନିଜ ପରିବେଶ ସହ ମାର୍ମିକ ସମ୍ପର୍କରୁ । ଏହି ସମ୍ପର୍କ ତ ଆଞ୍ଚଳିକତା । ଏହା ପ୍ରତ୍ୟେକ କବିକୁ ଠିଆ ହେବାପାଇଁ ନିର୍ଭରଯୋଗ୍ୟ ଭୂଇଁଟିଏ ଦିଏ, ଯାହା ଉପରେ ଠିଆ ହୋଇ ସେ ଉପରକୁ ଦେଖିପାରିବ । ଆଞ୍ଚଳିକତା କବି ଚେତନାକୁ ରସାଣିତ କରେ । ଶବ୍ଦ ଓ ଭାଷା ପ୍ରତି ତା' ଦୃଷ୍ଟିକୋଣକୁ ଋଦ୍ଧିମନ୍ତ କରେ । ତା' କବିତା ହୋଇଉଠେ ଅନୁଭୂତିର ପ୍ରତୀକ । ସତ୍ୟର

ପ୍ରତୀକ । ଆଞ୍ଚଳିକତାର ମୂଳଦୁଆ ଉପରେ ଠିଆ ହୁଏ ଆନ୍ତର୍ଜାତିକତାର ଇମାରତ । ଏହା ଆରୋପିତ ହୋଇପାରେନା । ଏହା ଗଢ଼ିଉଠେ ଅନୁଭୂତି ଏବଂ ଅଙ୍ଗୀକାରର ଆନ୍ତରିକତାରୁ । ତେଣୁ ଆଧୁନିକ ଯୁଗର କବିତାରେ ନୂତନତାର ମୋହ ସଙ୍ଗରେ ଏହି ଆନ୍ତରିକତାର ଆସକ୍ତି ଏକ ମୃଦୁ-ପ୍ରତିବାଦ ହୋଇ ଫଲ୍‌ଗୁ ପରି ରହି ଆସିଥିଲା । ଏହି ଫଲ୍‌ଗୁ 'ପ୍ରତିବାଦର ସ୍ୱର' ହରିହରଙ୍କ କବିତା । ଏହା ହିଁ ତାଙ୍କ ନିଜସ୍ୱତା ।

ହରିହରଙ୍କ କବିତା ଓଡ଼ିଆ ଚେତନାର କବିତା । ତାଙ୍କ ଚେତନାରେ ଦୁଇଟି ମୂଳ କଥା । ଗୋଟିଏ ପୁରୀ, ଜଗନ୍ନାଥ, ସମୁଦ୍ର । ଅନ୍ୟଟି ଆମ ଐତିହ୍ୟ, ଆମ ସଂସ୍କୃତି । ଏକ ନୂଆ ମନ ନେଇ କବି ଏହାକୁ ଦେଖି ନାହାନ୍ତି, ବଞ୍ଚିଛନ୍ତି । ଏହା ଗତ୍ଵ ପାରମ୍ପରିକତା ନୁହେଁ । ସେ ବର୍ତ୍ତମାନ ଦ୍ୱାରା ଆଚ୍ଛାଦିତ । ସେ ବର୍ତ୍ତମାନର କଥା ହିଁ କହୁଛନ୍ତି ମାତ୍ର ତାଙ୍କ କାବ୍ୟ ପୁରୁଷଟି ଐତିହ୍ୟ ଓ ବର୍ତ୍ତମାନର ମାର୍ମିକ ସମନ୍ୱୟରୁ ହିଁ ଗଢ଼ି ଉଠିଛି । ଏହି ସମନ୍ୱୟରୁ ହିଁ ଜନ୍ମ ନେଇଛି ଚିରନ୍ତନତାବୋଧ । ଯେମିତି—'ତୁମରି ବିଚିତ୍ର ସ୍ପର୍ଶରେ/ଏ ଯେଉଁ ନୀରବତା ଆଉ ଅନ୍ଧକାର/ମୁଁ ଆବିଷ୍କାର କରିବି ପୁନଶ୍ଚ/ପୂର୍ଣ୍ଣାଙ୍ଗ ସମ୍ପର୍କର ପ୍ରାଚୀନତା/ତମରି କୁହୁକ ଛୁଆଁରେ ଫେରିପାଇବି/ଅଜଣା ଏକ ମୂର୍ଚ୍ଛନାର ମହାଦେଶ/ସେ ମୁହୂର୍ତ୍ତ... ସେ ସମୟ/ରୂପାନ୍ତର ପ୍ରତିଟି ମୃତ୍ୟୁର' ('ନୀରବତା ଓ ଅନ୍ଧକାର') । ଏହି ବିଚିତ୍ର ସ୍ପର୍ଶ ତ ଜୀବନର । ବଞ୍ଚିବାର 'ପ୍ରେମର' । ଏହି ସ୍ପର୍ଶର ଅନୁଭୂତି ଆଣିଦିଏ 'ନୀରବତା' ଏବଂ 'ଅନ୍ଧକାର' । ଏହା ହିଁ ତ ରହସ୍ୟ । ଆଉ ଏହି ରହସ୍ୟ ଜରିଆରେ ପାଇ ହୁଏ 'ପୂର୍ଣ୍ଣାଙ୍ଗ ସମ୍ପର୍କର ପ୍ରାଚୀନତା' । ହରିହରଙ୍କ 'ପୂର୍ଣ୍ଣାଙ୍ଗ ସମ୍ପର୍କ' ଓ ତା'ର ପ୍ରାଚୀନତା ହିଁ ବଡ଼ କଥା । ତେଣୁ ଏହାର ଅସ୍ତିତ୍ୱ ନିର୍ମୂଳି ଲଟା ପରି ନୁହେଁ । ଏହା ଜୀବନ ଆଉ ମୃତ୍ୟୁର ରହସ୍ୟକୁ ସତ୍ୟଭାବେ ଅନୁଭବ କରିବାର ପ୍ରୟାସ । ତାଙ୍କ କବିତା ତ ଏହି ରହସ୍ୟ ପ୍ରତି ଏକ ଚାହାଣି । ତାଙ୍କ ପୃଥିବୀ ସେଇ ମଣ୍ଡପ । ତାଙ୍କ କବିତାରେ ରହସ୍ୟ, ସ୍ୱପ୍ନ ଓ ବାସ୍ତବତା ସବୁ ଏକାକାର । ଏହା ହିଁ ପୂର୍ଣ୍ଣାଙ୍ଗ ସମ୍ପର୍କ । ଏହା ହିଁ ଶୂନ୍ୟ, ଏହା ହିଁ ଜଗନ୍ନାଥ, ଏହା ହିଁ ଜୀବନ ଓ ମୃତ୍ୟୁ । ଏହାର ଅନ୍ୟ ନାମ ଅନାମ । 'ଯଦି ପାର ଦୁଇହାତ ମୋର/କାଟି ଦେଇ କର ଜଗନ୍ନାଥ.../ଗୋଟିଏ ହାତ ମୋର ଅଙ୍ଗୁଳି ନିର୍ଦ୍ଦେଶ କରେ/ଅନ୍ଧାରର ଅଜସ୍ର ତାରାଙ୍କୁ/ସୂର୍ଯ୍ୟଠାରୁ ଦୂର ଏକ ବୃହତ୍ତର ଆଲୋକ ଚକ୍ରକୁ/ଅନ୍ୟ ହାତଟି ମୋର ପଂଗୁ...ସ୍ନେହ ଜୁଡୁବୁଡୁ/ଯାହାକୁ ଧରି ତମେ ବ୍ୟର୍ଥତାରେ ଲୋଟିଯାଅ...' ('ମାୟାଚକ୍ର') । ଏହା ହିଁ କବିଙ୍କ ଜୀବନର ମାୟାଚକ୍ର । ତାଙ୍କ ପୂର୍ଣ୍ଣାଙ୍ଗ ବାସ୍ତବତାର ମାୟା । ଏହି ସ୍ୱପ୍ନ ଓ ସତ୍ୟର ମାୟାକୁ ଜୀବନ୍ୟାସ ଦିଏ ହରିହରଙ୍କ କବିତା । ଉତ୍ତରିଯାଏ ବର୍ତ୍ତମାନରୁ ଚିରନ୍ତନ ଆଡ଼କୁ, ବାସ୍ତବତାରୁ ଶୂନ୍ୟତା ଆଡ଼କୁ । 'ତୁମେ ଘୁଞ୍ଚିଯାଉଥିଲ ଅବା ମୁଁ ଘୁଞ୍ଚି ଆସୁଥିଲି/ଆମର ସ୍ୱୀକୃତିରୁ, ପୃଥିବୀରୁ/ପରସ୍ପର ଠାରୁ ବାକିଥିବା ସଂଳାପରୁ/ଅଥଚ ନିମଗ୍ନ ରହିଥିବା ଶବ୍ଦ ଓ ନୀରବତାର ଛନ୍ଦଭରା ତଟଦେଶ/କଣ୍ଟ ଦେଇଥିବା ଆମ/

ସ୍ଥାନ କାଳ ପାତ୍ର/ଭାସି ଭାସି ଯାଉଥିଲା ଆମର ପୃଥିବୀ ଆଉ ଦୂରକୁ ଆକାଶ/ଆଲୋକ ନ ଥିଲା ବେଳେ/ନୀରବରେ ଶବ୍ଦ ଆଉ ଛନ୍ଦ ସବୁ/ଶୂନ୍ୟତାକୁ କେଉଁଠାରେ/ଦେଲା ଜୀବନ୍ୟାସ... ।' ('କେଉଁଠାରେ ଶବ୍ଦ ସବୁ ନିଏ ଜୀବନ୍ୟାସ') ।

ଏହି ଶୂନ୍ୟତାକୁ ଜୀବନ୍ୟାସ ଦେଲା ପରେ ଆଉ କିଛି ରହେ ନାହିଁ । କବିର ଚେତନାଟି 'ସ୍ୱପ୍ନ ବିନିମୟ' ପାଇଁ ପ୍ରସ୍ତୁତ ହୋଇଯାଏ । ଆଉ ଏଇ ପ୍ରସ୍ତୁତିରେ ଯୁକ୍ତି ନ ଥାଏ, ପ୍ରଶ୍ନ ନ ଥାଏ । ଥାଏ ଖାଲି ଅବବୋଧ । 'ଏହାପରେ ଅଛି କ'ଣ ? ପ୍ରଶ୍ନ ନାହିଁ, ସବୁ ପ୍ରଶ୍ନ ନେଇଛି ସମାଧି/ଯେତେ ବିଧି, ଯେତେ ନୀତି, ପ୍ରଗତିର ଯେତେ କର୍ମ ଶୁଦ୍ଧି/ସମ୍ପର୍କର ସେତୁ ବାନ୍ଧି ପାରେ ନାହିଁ/ଗର୍ଜି ଉଠେ ଅଶ୍ରୁର ବାରିଧି ।' (ଅସ୍ୱୀକୃତ ପ୍ରସ୍ତାବ କେତୋଟି) କବି ଚେତନାର ସରହଦ ଏହି । ଏହା ହିଁ ତାଙ୍କ କବିତାର ବିଷୟବସ୍ତୁ । ସେ ଜୀବନକୁ ଦେଖନ୍ତି ତାଙ୍କର 'ଚାହାଣି ମଣ୍ଡପ'ରୁ । ଏହା ଦୂରତ୍ୱ ନୁହେଁ, ନିବିଡ଼ତା । ଏହା ସଂକୀର୍ଣ୍ଣତା ନୁହେଁ, ଉଦାରତା । ଏହି ଉଦାର ଦୃଷ୍ଟିରେ ଜୀବନକୁ ଦେଖିଲେ ସେ ନୂଆ ସତ୍ୟରେ ରୂପାନ୍ତରିତ ହୁଏ । 'ଏତେ ବଡ଼ ସାହାଣ ମେଲାରେ/ତୁମ ଚାହାଣି ମଣ୍ଡପରୁ/ଦିଶେ ସୀମା ସରହଦ/ଭାଷା ଲୋକାଚାର/ଗୁଡ଼ାଏ ରଙ୍ଗ ଭଳି/ମାଟିର ଥାଳିଆରେ ।' (ଦଶଦିଗ)

କବିଙ୍କର ଏହି ରହସ୍ୟବୋଧ ତାଙ୍କ ବାସ୍ତବତାର ବାସ୍ତବ ରୂପକୁ ସୂଚାଇ ଦିଏ । କବି ସ୍ୱପ୍ନ ସଚେତନ, ମାତ୍ର ସ୍ୱପ୍ନ ପ୍ରବଣ ନୁହେଁ । ତାଙ୍କ ପାଖରେ ସତ୍ୟର ନାହିଁତ୍ୱ ନୁହେଁ; ଏହା ସତ୍ୟର ରହସ୍ୟତ୍ୱ । ସିଏ ଏହି ରହସ୍ୟକୁ ବାସ୍ତବ ଜରିଆରେ ବୁଝିବାକୁ ଚାହେ । ସେ ବୁଝିବା କେତେବେଳେ ହୁଏ 'ବଞ୍ଚିବାଟା ବଞ୍ଚିବାର ପାଇଁ/ଯାହାର କି ଅର୍ଥ କିଛି ନାହିଁ ।' ମାତ୍ର ଏଇ ଅର୍ଥହୀନତା ଭିତରେ ଥାଏ, ସବୁ ଅର୍ଥର ମହା ସମ୍ଭାବନା । ଏହି ସତ୍ୟ ହିଁ 'ନିତ୍ୟ ସ୍ୱରୂପ' । 'ମହାପ୍ରଳୟରେ/କାଲି ପ୍ରଭାତରେ/ଅଭିଷେକ ହେବ ନିତ୍ୟ ସ୍ୱରୂପର/ଅମୃତାୟନ ସତ୍ୟରେ.../ହେଉଥିବ ବାରମ୍ବାର ନବ କଳେବର ।' (ଅମୃତାୟନ) । ସତ୍ୟର ଏହି ନବକଳେବର ହିଁ ଚିରନ୍ତନ ସତ୍ୟର ମାୟା । ଏହି ମାୟାକୁ ବୁଝିବାର ପ୍ରଚେଷ୍ଟା କବିତା । ଏଇ କବିତା ବି ସେଇ ମାୟାର ଅନ୍ୟ ରୂପ । ତାର ଭାଷା ସେ ନିଜେ । ତେଣୁ କବିଙ୍କ ପାଖରେ 'କବିତା ହେବ କବିତାର ବକ୍ତବ୍ୟ ।'

ହରିହରଙ୍କ କବିତା ଏହି ଧରଣର । 'ଶଙ୍ଖନାଭି'ଠାରୁ ଆଜିର କବିତା ପର୍ଯ୍ୟନ୍ତ ଏହି ଚେତନାର କ୍ରମ ବିବର୍ତ୍ତନ ଯେମିତି ସ୍ୱପ୍ନରୁ ସ୍ୱପ୍ନକୁ ଡେଇଁବା ଆଉ ଏକ ଜଗତପାଇଁ କବିଙ୍କ ପାଖରେ 'ଅବାଧ ପ୍ରବେଶ ପାଇଁ ଥିଲା ଏକ ମୁକ୍ତ ସିଂହଦ୍ୱାର ।' ଏହି 'ଅବାଧ ପ୍ରବେଶ' ଏବଂ 'ମୁକ୍ତ ସିଂହଦ୍ୱାର' କବି ଚେତନାର ସୂଚକ । ଜୀବନ ଏବଂ ଜୀବନକୁ ଦେଖିବାର ଭଙ୍ଗୀ । ଏହିଠାରେ ହିଁ ତାଙ୍କ ସୃଷ୍ଟିଶୀଳତାର ରୂପ । ରୂପ ସୃଷ୍ଟିଶୀଳତା, ଏମିତିକି କବିତା ବି ତାଙ୍କ

ବାସ୍ତବତାର ରୂପ । ତାଙ୍କ କବିତା ଜୀବନର ପୂର୍ଣ୍ଣତାକୁ ଗ୍ରହଣ କରେ । ପ୍ରେମ ଓ ଭଲପାଇବା ଏହି ଗ୍ରହଣ ଯୋଗ୍ୟତାର ମୂଳ । ଜୀବନକୁ କବି ତାଙ୍କ ପ୍ରେମ ଜରିଆରେ ଆଉଥରେ ସୃଷ୍ଟି କରେ । ଜୀବନ ଓ ପୃଥିବୀ ସହ ମାୟା ଶୃଙ୍ଗାର ଲଗାଏ । କବିତା ତ ଏଇ ମାୟା ଶୃଙ୍ଗାରର ଧ୍ୱନିମୟ ରୂପ । ଏହା ଶୂନ୍ୟକୁ ପୂର୍ଣ୍ଣ କରେ, ନୀରବତାରେ ତରଙ୍ଗ ତୋଳି ଧ୍ୱନି ତୋଳେ ଏବଂ ଧ୍ୱନି ଭିତରେ ଛପିଥିବା ମହାନୀରବତାକୁ ଏକାତ୍ମ କରେ । ଯଥା–'ପ୍ରୀତି ଥିଲା ଅଜ୍ଞାତ/ଅନାହତ ସୃଜନର ଅନ୍ତରାଳେ/ଥିଲା ଖାଲି ଅନ୍ତରଙ୍ଗ ଉଚ୍ଚାରଣ/ଧ୍ୱନିମୟ ନାମହୀନ ଥିଲା ସମ୍ବୋଧନ/ସୃଜନର ଅନ୍ତରାଳେ/ଘନିଭୂତ ହେଉଥିଲା ରସଘନ ବାରିବାହ'... 'ଶବ୍ଦ ବି ନ ଥିଲା ସେଠି/ଅର୍ଥ ବି ନ ଥିଲା/ତଥାପି ସଙ୍ଗୀତ ଶୁଭେ ଅହର୍ନିଶ ସୃଷ୍ଟିର ଲୟରେ/ମୁଖରିତ କରୁଥିଲା ପ୍ରଥମ ଋତୁ ଆଉ ସମୟକୁ/ସକାଳକୁ, ସ୍ୱପ୍ନର ଅନ୍ଧାରକୁ, ନିଦ୍ରିତ ରାତ୍ରିକୁ' ('ଶୃଙ୍ଗାର') । ଏଥିରେ ସୃଷ୍ଟି, ପ୍ରେମ ଆଉ ଜୀବନର ମହାମିଳନ । ଏହା କେବଳ ଦୈହିକ ନୁହେଁ । ଏହା ଏକ ରୂପାନ୍ତରର ପ୍ରକ୍ରିୟା । ଏକ ଉତ୍ତର ପାହାଚ ଚଢ଼ା, ଏକ ଆବିଷ୍କାର ଓ ପରିଚୟ । ଏହା ଖାଲି 'ରସଘନ' ନୁହେଁ, ଏକ 'ସ୍ପନ୍ଦିତ ଆହ୍ଲାଦ' ଏହା ହିଁ ଶୃଙ୍ଗାର । ଏହା ଦେହ ମନ ଓ ଆତ୍ମାକୁ ଛାଇଯାଏ । ଜୀବନର ରହସ୍ୟକୁ ଭେଦିଯାଏ । ଦେହକୁ ଗ୍ରହଣ କରି ଦେହକୁ ଟପିଯାଏ । ଯାହା ଜୀବନ ପାଖରେ ସତ୍ୟ, କବିତାରେ ବି ତାହାର ପ୍ରତିଧ୍ୱନି । 'ଦେହରେ ହଜଇ ଦେହ/ଦେହ ପୁଣି ମିଶଇ ଦେହରେ/ଦେହରେ ହିଁ ସ୍ରୋତ ଭଳି, ଜ୍ୟୋତି ଭଳି/ସ୍ପନ୍ଦିତ ଆହ୍ଲାଦ ତା'ର ପ୍ରୀତି ସଙ୍ଗମର ।' ('ଶୃଙ୍ଗାର') । ତେଣୁ ଶୃଙ୍ଗାର ସୃଷ୍ଟିଶୀଳତାର ପ୍ରତୀକ । ଏହି ସୃଷ୍ଟିଶୀଳତାରେ କବିର 'ପୌରୁଷ ପ୍ରସରିଯାଏ ଦିଗ ଦିଗନ୍ତରେ/ନୂଆ ସ୍ୱପ୍ନ ନୂଆ ପ୍ରେମ ଦିଗ୍‌ବଳୟରେ' । ଏହି ସୃଷ୍ଟି, ଏହି ଅବବୋଧ କବିର 'ନିଜସ୍ୱ ସାମ୍ରାଜ୍ୟ' । ପୁଣି ଏହି ସାମ୍ରାଜ୍ୟ ତ 'ସମୟର ଭୋଗ ଦଖଲରେ' ।

ଏହି ଉତ୍ତରିତ ଅବବୋଧ କବିର, ବିଶେଷତଃ ହରିହରଙ୍କର ଚେତନା । ତାଙ୍କ କବିତାରେ 'ଦେହର ବାସି ଉଷୁମ'ରେ ଘାରି ହେଉଥିବା ଚେତନାର କଥା ଅଛି, ପୁଣି ଅଛି ତା' ଶୋଷିଲା ଚାହାଣି । ମାତ୍ର ସବୁଠାରୁ ବଡ଼ କଥା ଏସବୁ ବାହାରେ ଅଛି ଆଉ ଗୋଟାଏ ଅବବୋଧ ଯା'ଏ ସବୁକୁ ଉତ୍ତରି ଯାଏ । ଯେଉଁଠି ମିଳେ ଦେହର ନୂଆ ପରିଚୟ । 'ତୁମେ ଥିଲେ ସମ୍ପର୍କହୀନ ଶବ୍ଦଟିଏ/ପାଇଯାଏ ଅର୍ଥଟିଏ ତା'ର/ସବୁଠୁ କଟିଯାଇ ତୁମେ ଠିଆ ହୁଅ/ସବୁଠୁ କଟିଯାଇ ମୁଁ ସେଠି ମିଶିଯାଏ/ଅବିକଳ ତୁମ ଦେହେ/ଦେହ ମୋର ପରିଚୟ ପାଏ ।' ('ଥାଅ ବା ନ ଥାଅ ତମେ') ଆଉ 'ଆଲୋକ ପ୍ରବେଶ ମାତ୍ରେ/ଆଉଥରେ ମିଳିବା କଷ୍ଟ ଅନ୍ଧାର ।' ଏହି କାବ୍ୟିକ ମାୟା ଚେତନା, ସେହି ଶୃଙ୍ଗାର, ସେଇ ସମ୍ପର୍କ ଗୋଟିଏ ଦିଗରେ ମଣିଷର ସମ୍ପର୍କ (ଦୈହିକ ଓ ମାନସିକ) କଥା କହୁଥିଲା ବେଳେ ଅନ୍ୟଦିଗରେ କବିତା ପ୍ରତି କବିଙ୍କ ଦୃଷ୍ଟିକୋଣକୁ ସୂଚାଇ ଦେଉଛି ଆଉ ଏହି ଦୃଷ୍ଟିକୋଣ ଭିତରେ ହିଁ ରହିଛି ହରିହରଙ୍କ

ବିଶେଷତ୍ୱ । କବିତା ତାଙ୍କର ବାସ୍ତବତା ସହ ସ୍ୱପ୍ନ ବିନିମୟର କଥା । ଏହି ବିନିମୟରେ ପରିଚୟ ମିଳେ । ସମ୍ପର୍କହୀନ ଶବ୍ଦଟିଏ ଅର୍ଥ ପାଇଯାଏ । କବିତା ତ ଏଇ ସମ୍ପର୍କହୀନ ଶବ୍ଦର ନୂଆ ସମ୍ପର୍କ ଜରିଆରେ ନୂଆ ଅର୍ଥ । ଏଇ ଅର୍ଥ ତ ଶବ୍ଦର ଜୀବନ । ଏଇ ମାତ୍ର ଶବ୍ଦନିଏ 'ନୂଆ ଅବତାର' । ଏଇ 'ନୂଆ ଅବତାର' କବିତାର ପ୍ରାଣ । ଏଇ ଅବତାର ଭିତରେ ଜୀବନ ଓ ବାସ୍ତବତା ମଧ୍ୟ କବିଙ୍କ ସ୍ୱପ୍ନ ମତେ ଅବତାରିତ ହୋଇଯାଏ । ଜୀବନ, ଶବ୍ଦ ଏବଂ କବିତା ପ୍ରତି ଏହି ଦୃଷ୍ଟିକୋଣ କବିଙ୍କ ମେଟାଫିଜିକାଲ ମନର ସୂଚନା ଦିଏ । ଏହି ଚେତନା ଚିରନ୍ତନତାକୁ ଗ୍ରହଣ କରି ଜୀବନର ଆଦିମ ସମ୍ପର୍କର ସୂଚନା ଦିଏ । ଏହି ସମ୍ପର୍କର ପୂର୍ଣ୍ଣତା ଏକାକାର କରେ ସୃଷ୍ଟି ଏବଂ ଧ୍ୱଂସ ।

'ସବୁ ଦିନେ ଧ୍ୱଂସ କରି ଏହିଥର ହେବା ମହାଶୂନ୍ୟ/ଗଢ଼ିବା ଓ ଭାଙ୍ଗିବାରେ ରଖି ଭାରସାମ୍ୟ/ଏକମାତ୍ର ଆନନ୍ଦରେ ଲୀନ ହେବା/ଯେଉଁଠାରେ ଜଡ଼ ଓ ଜୀବନ ଥିବ ଭେଦାଭେଦ ହୀନ/କ୍ରିୟା ଥିବ ଅବ୍ୟାହତ ଧ୍ୱଂସ ଓ ସୃଜନ' ('ଶ୍ମଶାନ ଯେଉଁଠି ଆରମ୍ଭ') । ଜୀବନକୁ ଏହି ଭାବେ ଗ୍ରହଣ କରି ନିଜ ସ୍ୱପ୍ନ ମୁତାବକ ଆଉ ଥରେ ଗଢ଼ିବା, ସୃଜନ ତଥା କବିତାର ଏକ ଦିଗ । ଏଇଥିପାଇଁ କବି ଈଶ୍ୱର ସ୍ତରକୁ ଉତ୍ତୀର୍ଣ୍ଣ ହୁଏ । ଏହି ଉତ୍ତୀର୍ଣ୍ଣତା ସବୁ ଶିଳ୍ପୀର କାମ୍ୟ । 'ହୁଏତ ମୋ' ଜୀବନର ଦୃଶ୍ୟାରମ୍ଭ ହେବ ସେହିଦିନ/ଯେଉଁଦିନ ହସୁଥିବ ଚିନ୍ତାଗ୍ରସ୍ତ ପୃଥିବୀ/ମୋ ସ୍ୱପ୍ନ ମୁତାବକ' ('ପ୍ରଶ୍ନୋତ୍ତର') । ଏହିଠାରେ ହରିହରଙ୍କ କବିତାର ଦିଗନ୍ତକୁ ଛୁଇଁ ହୁଏ । ତାଙ୍କ କବିତା ନିଜ ଅହଂ, ନିଜ ସ୍ୱପ୍ନ ଜରିଆରେ ତାଙ୍କୁ ଦେଇଥିବା 'ଚିନ୍ତାଗ୍ରସ୍ତ' ପୃଥିବୀକୁ ଗଢ଼ିବାକୁ ଚାହିଁଥାଏ । ଏହି ସ୍ୱପ୍ନ ତ ସବୁଠି । ବାହ୍ୟ ପୃଥିବୀ ଏବଂ ଅନ୍ତର୍ଜଗତ । 'ତା'ହେଲେ ଯେଉଁ ସଙ୍ଗୀତର ଲୟରେ/ତୁମେ ହସ କାନ୍ଦ ଆଉ ଅଭିମାନ କର/ତାର ସଙ୍କେତ କ'ଣ ଏ ଦେହରେ, ମାଟିରେ ନା ଆକାଶରେ/ନା ଏହି ମନ ତାର ଅଭିଧାନ ।'

ସ୍ୱପ୍ନ ଓ ବାସ୍ତବ ଭିତରେ ମାୟାର ସମ୍ପର୍କ ହରିହରଙ୍କ କବିତା । ମାତ୍ର କବିଙ୍କ ସ୍ୱପ୍ନ ବାସ୍ତବତାର ଗୋଟିଏ ଦିଗ । ଏହା ସତ୍ୟହୀନ ବା ସତ୍ୟବିରୋଧୀ ନୁହେଁ । ସତ୍ୟର ବିକଳ୍ପ ବି ନୁହେଁ । ଏହା ସତ୍ୟର ସତ୍ୟ । ଏହା ସତ୍ୟକୁ ରୂପ ଦିଏ । ଜଗନ୍ନାଥ ଯେମିତି ମଣିଷର ସ୍ୱପ୍ନର ସତ୍ୟ ରୂପେ ଠିଆ ହୋଇଛନ୍ତି । କବିତା ଏହି ସ୍ୱପ୍ନ-ସତ୍ୟର ପ୍ରକାଶ । ତାହା ଏହି ବଞ୍ଚିବାର ନିର୍ଯ୍ୟାସରୁ ଜନ୍ମ ନିଏ । ଏଥିରେ ଛଳନା ନାହିଁ, ହିସାବ ନିକାଶ ନାହିଁ । ସ୍ୱପ୍ନର ମୃତ୍ୟୁ, ସୃଷ୍ଟିର ମୃତ୍ୟୁ । ଏହା ହିଁ ନର୍କ-ମୃତ୍ୟୁ । ଏହା ହିଁ କବିଙ୍କର ସାମ୍ପ୍ରତିକ ନର୍କର ସୂଚନା । ଏ ନର୍କରେ ମଣିଷ ମନରେ ସ୍ୱପ୍ନ ନାହିଁ । ସୌନ୍ଦର୍ଯ୍ୟ, ପ୍ରେମ ହୋଇଛି ପଣ୍ୟ ନାୟିକା । 'ଯାହା ହେଉ ତୁଟିଗଲା ଯାହା ଥିଲା ସ୍ୱପ୍ନ ସାଙ୍ଗେ ସଂଗ୍ରାମ ଆମର/ଏଣିକି ସ୍ୱପ୍ନ ହେବ ଦୈନନ୍ଦିନ କାରବାର ଦୋକାନରେ/ଭିନ୍ନ ଭିନ୍ନ ରଙ୍ଗର ବୋତଲରେ ପ୍ରତ୍ୟେକଙ୍କ ବିଚିତ୍ର ନିଶାରେ/ସ୍ୱପ୍ନର ଅଟ୍ଟାଳିକା

ଗଢ଼ା ହେବ ଆଗାମୀ ଶତାବ୍ଦୀର ନିର୍ଜନ ଘାଟରେ/ଯାହା ପାଇଁ ମଣିଷ ନଥିବ' ('ସ୍ୱପ୍ନ ପାଇଁ କେହି ନାଇଁ') । ଏହିପରି ପୃଥିବୀର ଛବି ମିଳେ, ଭଙ୍ଗା ରାଜବାଟୀର ସ୍ୱପ୍ନରେ । ଏଥିରେ ସବୁ ଅପୂର୍ଣ୍ଣତା ନର୍କର ଛବି । ଏହି ଅପୂର୍ଣ୍ଣ ପୃଥିବୀରେ ମଣିଷ ଏକ 'କ୍ଷୁବ୍ଧ ଜନ୍ମେଜୟ', ଏକ ମୃତ୍ୟୁର ପ୍ରତୀକ ।

ଏହା ହିଁ ହରିହରଙ୍କ କବିତାର ପୃଥିବୀ । ଏହା ଟ୍ରକ୍ ଡ୍ରାଇଭରର ତିନି ଟ୍ରିପ୍ ଭରା ନିଦ ଦେଖିବାରେ ଆରମ୍ଭ ହୋଇ ଗତିଶୀଳ ହୁଏ । 'କେଉଁ ମୁହାଁଣରେ ସତେ ବିଲୁପ୍ତ ବିନ୍ଦୁଟିଏ/ଥଳକୂଳ ହଜିବାର ଦେଖେ/ପ୍ରଣମିଲା ବେଳେ ଏକ ନିର୍ମମ ସୂର୍ଯ୍ୟରେ/ତା' ଆଖିରେ ଲୁହ ନୁହେଁ/ସୂର୍ଯ୍ୟ ମିଳିଯାଏ ।' (ପ୍ରତିଶ୍ରୁତି) ହରିହରଙ୍କ କବିତାରେ ଏହି ସୂର୍ଯ୍ୟକୁ ପାଇଯିବାର ପ୍ରତିଶ୍ରୁତି । ଏହା ହିଁ ବୋଧହୁଏ ତାଙ୍କ 'ଲାଲ କଢ଼ର ତପସ୍ୟା' । ସୂର୍ଯ୍ୟ ଉଭୟ ଜୀବନ ଏବଂ ଜୀବନ-ପରମର ସ୍ୱପ୍ନ । ଏହା ପୂର୍ଣ୍ଣତା ।

ହରିହରଙ୍କ କବିତାର କ୍ରମବର୍ଦ୍ଧମାନ ଚେତନାକୁ ମୁଁ ବିଶ୍ଳେଷଣ କରୁନାହିଁ । ମୁଁ ତାଙ୍କ ପୂର୍ଣ୍ଣ ଚେତନାର ସୂଚନା ଦେଉଛି ମାତ୍ର । ତେଣୁ ଏ ପ୍ରବନ୍ଧ ତାଙ୍କ କାବ୍ୟକୃତିର ବିଶ୍ଳେଷଣ ନୁହେଁ, ତାତ୍ତ୍ୱିକ ଆଲୋଚନା ନୁହେଁ, ଏହା ଏକ ଅପୂର୍ଣ୍ଣ ପ୍ରତିକ୍ରିୟା । ତାଙ୍କ କବି ଚେତନାର ନିଜସ୍ୱତାକୁ ଖୋଜିବାର ଚେଷ୍ଟା କରୁଛି; ଏ ନିଜସ୍ୱତା ନିହିତ ସଂସ୍କୃତି ସହ ତାଙ୍କ ଏକାତ୍ମିକତାରୁ । ସେ ବାସ୍ତବତାକୁ ଅଧ୍ୟୟନ କରି ନୁହେଁ, ବଞ୍ଚିଛନ୍ତି, ଏକାତ୍ମ ହୋଇଛନ୍ତି ଜଗନ୍ନାଥଙ୍କ ଉଦାରତାରେ । ହରିହର କେବଳ କବି ନୁହନ୍ତି । ସେ ଏକାଧାରରେ କବି ଏବଂ ନାଟ୍ୟକାର । କବିର ଯାତ୍ରା ଅନ୍ତର୍ଜଗତକୁ ଏବଂ ତାର ଦେଖିବାର ଭଙ୍ଗି ଆତ୍ମନେପଦୀ । ମାତ୍ର ନାଟ୍ୟକାର ଅବୈକ୍ତିକ, ସେ ଦୂରତ୍ୱ ରକ୍ଷା କରେ । ସେ ତାର ଚରିତ୍ର ଗୁଡ଼ିକରେ ପ୍ରାଣ ସଞ୍ଚାର କରିଥାଏ । ହରିହରଙ୍କ କବିତାରେ ନାଟ୍ୟକାରର ଅବୈକ୍ତିକତା ନାହିଁ । ପ୍ରତ୍ୟେକ କବିତା ତାଙ୍କ ମନର, ତାଙ୍କ ଅନ୍ତରର ପ୍ରତିଧ୍ୱନି ହୋଇଯାଇଛି । ତାଙ୍କର କବିତା ମୁଖ୍ୟତଃ ଗୀତିଧର୍ମୀ । ଏହା ଯେମିତି ଶୃଙ୍ଗାରର ପରଝାଡ଼ି 'ଶୃଙ୍ଗରୁ ଶୃଙ୍ଗକୁ' ଉଡ଼ି ଚାଲିଛି । ଉଡ଼ି ଚାଲିଛି ଚେତନାରୁ ଚେତନାକୁ । ଏହି ଚେତନାର ସ୍ପନ୍ଦନ ଆଣିବା ପାଇଁ କବି ତା'ର ଶବ୍ଦକୁ ଖୋଜିଛି । ଜଳିଯାଇଛି ନିଜ ଯନ୍ତ୍ରଣାର ଶୃଙ୍ଗାରରେ, ଆଉ ଏହି ଯନ୍ତ୍ରଣା ସ୍ୱପ୍ନ ସହ ମିଶି ଶବ୍ଦକୁ ଅର୍ଥମୟ କରିଛି । ସୃଷ୍ଟି ହୋଇଛି କବିତାର ତାରକସୀ । 'ଫୁଲରେ ଗଢ଼ିବୁ କିସ କାରିଗର/କବିତାର ଅଭ୍ୟନ୍ତର...କବିର ସ୍ୱପ୍ନ/ନା କବିର ମସ୍ତିଷ୍କ.../ବିଶ୍ୱରୂପ ଠାରୁ ଯାହା ଦିଶେ ଭୟଙ୍କର' ('ତାରକସୀ') । କବିତାର ଚେତନା ଗୋଟିଏ ଗୋଟିଏ ବିଶ୍ୱରୂପ । ଗୋଟିଏ ଗୋଟିଏ ପୂର୍ଣ୍ଣତା । ଏହାକୁ ଧରି ରଖେ କବିତା ତାର ଗଭୀରତାରେ । କବିତାରେ ଏହି ଗଭୀରତା ଆସେ ବଞ୍ଚିବାର ତୀବ୍ରତାରୁ ଆଉ ଏ ତୀବ୍ରତା ଜନ୍ମ ନିଏ ଯନ୍ତ୍ରଣାରୁ, ସ୍ୱପ୍ନରୁ । 'ଶୋକର ଫର୍ଣ୍ଣେସ୍‌ରେ ସ୍ୱପ୍ନର ତାରକସୀ/ଫୁଲସବୁ ଇସ୍ପାତଠୁ ଟାଣ ହୋଇ ଫୁଟୁଥାଉ, ଗଢ଼ା ହେଉ ଥାଉ' (ତାରକସୀ) । ଏହି

ରୂପାନ୍ତର କବିତା, ଏହା ହିଁ ତାର ଅର୍ଥ । କବିଙ୍କ ପାଖରେ କବିତା ଭାଷାର ତାରକସୀ ମାତ୍ର ନୁହେଁ, ଏହା ସ୍ୱପ୍ନର ରୂପାନ୍ତର ମଧ୍ୟ । ପ୍ରତ୍ୟେକ କବିତା କବିର ଗୋଟିଏ ଗୋଟିଏ ବିଶ୍ୱରୂପ । ଏହି ଚେତନା 'ଚନ୍ଦ୍ରବିମ୍ବ' ପରି ତାଙ୍କ କବିତାରେ ମାୟା ସୃଷ୍ଟି କରେ ସତ୍ୟ ଆଉ ସ୍ୱପ୍ନର । କାୟା ଆଉ ଛାୟାର । ଏହି ବିଶ୍ୱରୂପ ପାଇଁ କବିର ଶବ୍ଦ ଆଉ ଛନ୍ଦର ବ୍ୟବହାର । ସବୁ ବ୍ୟବହାରରେ ସ୍ୱାଚ୍ଛନ୍ଦ୍ୟ, ସବୁ ସ୍ୱାଚ୍ଛନ୍ଦ୍ୟରେ ନିଜସ୍ୱ ଚେତନା ଓ ନିବିଡ଼ତା । ତେଣୁ ତାଙ୍କ କବିତା ତାଙ୍କ ନିଜର ପ୍ରତିଧ୍ୱନି । 'ଚନ୍ଦ୍ରବିମ୍ବ'ରେ ଏଇ ସ୍ୱର, ଏହି ଗୀତିମୟତା । ଏହି ଗୀତିମୟତାରେ ଆବେଦନର ଅସଫଳତାରେ ସଚେତନତା ଅଛି ମାତ୍ର ଅଛି ଅନ୍ୟର ମନକୁ ଛୁଇଁବାର ବ୍ୟାକୁଳତା, ଆନ୍ତରିକତା 'କିନ୍ତୁ ଚିଟି ଲେଖିବା ମୋର/ବନ୍ଦ ହୋଇନାହିଁ/ଲୁହରେ ଅଠା ବୋଳି/ଲଫାପା ବନ୍ଦ କରେ/ଅଥଚ ପହଞ୍ଚି ପାରେନି, ମୋ ଚିଠିର ଶବ୍ଦଲିପି ।' ତଥାପି ସେ ଚାହିଁଛନ୍ତି କବିତାକୁ ବଡ଼ ଦାଣ୍ଡରେ ଚଳାଇବାକୁ । କବିତାରେ ବଡ଼ଦାଣ୍ଡର ଚେତନା ଢାଳିବାକୁ । ତେଣୁ ସେ ଚାହିଛନ୍ତି 'ତୁମ ସଙ୍ଗେ ଇଚ୍ଛା ମୋର ଜଳୁଥାଉ ଅଖଣ୍ଡ ଜ୍ୟୋତିରେ/ ମିଶିବାକୁ ଶକ୍ତିମୟ ଚେତନାର ଦିବ୍ୟ ସଂହତିରେ ।'

ହରିହରଙ୍କ କବିତା ଏହି ସଂହତିର । ଏହା ସ୍ୱପ୍ନ ବିନିମୟର କବିତା । ଜୀବନଦଗ୍ଧ ମନଟିର ସତ୍ୟ ପାଇଁ ସ୍ୱପ୍ନ ଦେଖିବା । ଏହା ଜୀବନର ଗୀତ । ଏକ 'ଅକ୍ଷମ ଦେବତା'ର ପୂର୍ଣ୍ଣତା ।

''ଏ ଜୀବନ ଫେରିଆସୁ ପୂର୍ଣ୍ଣ ହେଉ ଭବିଷ୍ୟତ
ବଞ୍ଚି ରହୁ ନିଃସହାୟ ବାଙ୍କୁତ ଜୀବନ ।''

ହରିହରଙ୍କ କବିତାରେ ଏହି ପ୍ରାର୍ଥନା, ଏହି ସ୍ୱପ୍ନ ସାମ୍ପ୍ରତିକ କବିତାରେ ଏକ ଉଦାର ମନର ନିଜସ୍ୱ ଉଚ୍ଚାରଣ । ଏକ ଆନ୍ତର୍ଜାତିକ ଆଞ୍ଚଳିକତା । ଏହି ଚେତନା ବୋଧହୁଏ ଆମ ସାମ୍ପ୍ରତିକ କବିତାର ସଦ୍ୟତମ ଧାରା । ଏହାରି ଭିତରେ ନିହିତ ଏକ ମୃଦୁ ଅହଂକାର ଏକ ମୃଦୁ ବିପ୍ଳବ । ଆଉ ଏଇଥିପାଇଁ ହରିହରଙ୍କ କବିତା ଏତେ ପ୍ରାଣସ୍ପର୍ଶୀ ।

ଏରୋଡ୍ରମ୍ ଏରିଆ,
ପୁନାମା ଗେଟ୍ ପାଖ, ଭୁବେନଶ୍ୱର-୯

('ପ୍ରତିବେଶୀ' -୧୯୮୯ ଅଗଷ୍ଟ ମାସରେ 'ସାହିତ୍ୟ ମଞ୍ଚ' ବିଭାଗରେ ପ୍ରକାଶିତ)



# ଆଧୁନିକ ସମାଲୋଚନା ପ୍ରସଙ୍ଗ ଓ ହରିହରଙ୍କ କବିତା

*ଚିତ୍ତରଞ୍ଜନ ମିଶ୍ର*

-ଏକ-

କବିର ଚେତନା, ବ୍ୟକ୍ତିଗତ ଅନୁଭୂତି, ସେ ବ୍ୟବହାର କରୁଥିବା ଭାଷାର ଅର୍ଥବଳୟ ଆଧୁନିକ କାଳରେ ବହୁ ଆସ୍ତରଣମୟତା ଭିତରେ ଜଟିଳ ହୋଇପଡୁଛି । ପାଶ୍ଚାତ୍ୟ ସମାଲୋଚନା କ୍ଷେତ୍ରରେ ସସୁଅର୍ ଓ ଡେରିଡାଙ୍କ ଅଭିନବ ତାତ୍ତ୍ୱିକ ଅବଦାନକୁ ଯେମିତି ଏଡ଼ାଇ ଦେବା ସହଜ ନୁହେଁ, ସେହିଭଳି ଭାରତୀୟ କବିତା ଆଲୋଚନା କଲାବେଳେ ସେହି ସବୁ ତତ୍ତ୍ୱକୁ ଅଣଭାରତୀୟ କହି ଆଖିବୁଜି ଦେବା ସମ୍ଭବ ନୁହେଁ । ସାର୍ବଜନୀନ ପ୍ରାସଙ୍ଗିକତା ସମ୍ବଳିତ ତତ୍ତ୍ୱଗୁଡ଼ିକ ଆମ ସାହିତ୍ୟରେ ପ୍ରୟୋଗ କରିବାରେ କୌଣସି ଅସମିଚୀନତା ନାହିଁ ।

ଆନ୍ତର୍ଜାତୀୟ ସମାଲୋଚନା ପଦ୍ଧତି ପ୍ରତି ଆମ ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ସ୍ୱଚ୍ଛ ନୁହେଁ । ମୁଖ୍ୟତଃ ଇଂରାଜୀଭାଷା ଜରିଆରେ ଏହା ଆମ ପାଖରେ ଉପଲବ୍ଧ ହୁଏ । ଏହି ପଦ୍ଧତି ସମ୍ବନ୍ଧୀୟ ଜ୍ଞାନ ଉଚ୍ଚଶିକ୍ଷା ପ୍ରତିଷ୍ଠାନରେ ପ୍ରତିଷ୍ଠିତ ଆଗ୍ରହୀ ବୁଦ୍ଧିଜୀବୀମାନଙ୍କ ନିକଟରେ ପର୍ଯ୍ୟାପ୍ତ ଥିଲେ ମଧ ତନ୍ମଧ୍ୟରୁ ଖୁବ୍ କମ୍ ବ୍ୟକ୍ତି ଆପଣା ଭାଷାରେ ତାହାର ଅନୁଶୀଳନ ତଥା ଭାରତୀୟ ସମାଲୋଚନା ପରମ୍ପରା ସହ ତାହାର ତୁଳନାତ୍ମକ ଅଧ୍ୟୟନ କରିଥାନ୍ତି । କିନ୍ତୁ ସାମ୍ପ୍ରତିକ କାଳରେ ଇଉରୋପ ଓ ଆମେରିକାରେ ଗଢ଼ି ଉଠିଥିବା Neo-Marxist, Feminist ଓ De Constructionist ସମାଲୋଚନା ତତ୍ତ୍ୱରାଜିକୁ ଆମେ ଅବହେଳା କରିବା ଅନୁଚିତ । ଆମ ଭାରତୀୟ ପାଣି ପବନରେ ବହୁ କିଛି ସଂଶୋଧିତ ହେବାରେ ଲାଗିଛି ଓ ହେବା ଆବଶ୍ୟକ । ତେଣୁ ସଂସ୍କାର ଉଦ୍ଦେଶ୍ୟରେ ଏହି ତତ୍ତ୍ୱକୁ ବ୍ୟବହାର କରାଯାଇପାରେ । କେବଳ ଆଧୁନିକତାର ଛାପ ଦେବା ଉଦ୍ଦେଶ୍ୟରେ ଏହାର ପ୍ରୟୋଗ ମାରାତ୍ମକ ଓ ପ୍ରହେଳିକାମୟ ହୋଇପାରେ । କାରଣ 'ଭାରତୀୟ ଚେତନାରେ ହୀନମନ୍ୟତା ସୃଷ୍ଟି କରିବା, ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିକୁ ଏକ ଆଦର୍ଶଭାବେ ସ୍ୱୀକୃତି ଦେବା ଏବଂ ଉପନିବେଶବାଦର ଅଖଣ୍ଡତା ପାଇଁ ଭାରତୀୟ ଶିକ୍ଷିତ ସମାଜର ଆନୁଗତ୍ୟ ତିଆରି କରିବାରେ ଇଂରାଜୀ ଭାଷା ଓ ସାହିତ୍ୟର ପ୍ରଭାବ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।' (ମଧୁସୂଦନ ପତି, ମୁକ୍ତିର ମରିଚୀକା, ପ୍ରଜାତନ୍ତ୍ର) ।

ତେଣୁ ସାମ୍ପ୍ରତିକ ଇଂରାଜୀ ଭାଷାଶ୍ରୟୀ ସାହିତ୍ୟ ତତ୍ତ୍ୱ ଦ୍ୱାରା ଆମ ସମୟର କବିତାର ଅନୁରୂପ ଅନୁଶୀଳନ ଏକ ଅଧସ୍ତନତା ବା ଆନୁଗତ୍ୟ କିମ୍ବା ବାହ୍ୟ ଆଡ଼ମ୍ବର ପାଇଁ ଉଦ୍ଦିଷ୍ଟ ନ ହୋଇ ଏକ ବୃହତ୍ତର ଅନୁସନ୍ଧାନର କ୍ଷେତ୍ର ପ୍ରସ୍ତୁତ କରିବା ନିମନ୍ତେ ବ୍ୟବହୃତ ହେବା ଉଚିତ । ସମଗ୍ର ପାଶ୍ଚାତ୍ୟ ତତ୍ତ୍ୱକୁ ଉପନିବେଶବାଦର ଅନ୍ତର୍ଗତ ବୋଲି ଭାବିବା ଅନୁଚିତ । ଆମ ନିଜ ପ୍ରସଙ୍ଗରେ ଆପଣାର ସମାଜ ଓ ସାହିତ୍ୟର ସମ୍ପର୍କ ଅନୁସଙ୍ଗରେ ସେହି ତତ୍ତ୍ୱରୁ କେତେକ ପରୀକ୍ଷିତ ହୋଇପାରିବେ । ଏହି ପ୍ରବନ୍ଧରେ ହରିହରଙ୍କ କବିତା ସମାଲୋଚନା କ୍ଷେତ୍ରରେ କେତେକ ତାତ୍ତ୍ୱିକ ପ୍ରାସଙ୍ଗିକତାର ସମ୍ଭାବନା ସୂଚାଇ ଦେବାର ପ୍ରୟାସ କରାଯାଇଛି ମାତ୍ର ।

ହରିହରଙ୍କ କବିତାର ଭାବବସ୍ତୁ ହେଉଛି ସ୍ୱପ୍ନ ଓ ସୃଜନ ମଧ୍ୟବର୍ତ୍ତୀ ଉଦ୍‌ବେଳନ । ଏହି ଉଦ୍‌ବେଳନକୁ ତାଙ୍କ କାବ୍ୟିକ ଉତ୍ତରଣର ଭିନ୍ନ ଭିନ୍ନ ପର୍ଯ୍ୟାୟରେ ସେ ବିଭିନ୍ନ ବାକ୍‌ରୀତି ଓ ଶୈଳୀରେ ଧରି ରଖିବାର ଚେଷ୍ଟା କରିଛନ୍ତି । ସାମଗ୍ରିକ ଭାବେ ଜଣେ ରୋମାଣ୍ଟିକ୍ ଓ ଆତ୍ମମଗ୍ନ କାବ୍ୟ ପୁରୁଷର ଉଚ୍ଚାରଣ ତାଙ୍କ ସମସ୍ତ କବିତାରେ ଅନୁଭୂତ ହୁଏ । ସେଇ କାବ୍ୟପୁରୁଷଟି ଏକ ବ୍ୟକ୍ତିସତ୍ତା, ଅତୀତ ଓ ବର୍ତ୍ତମାନର ଅନୁଭୂତିରେ ଜୁଡ଼ୁବୁଡ଼ୁ ଏକ ପୁରୁଷ ଯେ ବିଭିନ୍ନ ରୂପରେ ବିଶ୍ୱରୂପର, ବାସ୍ତବତାର କିଛି ପୁନର୍ଗଠନ କରେ ଆପଣାର ସ୍ୱପ୍ନ, ଦୁଃସ୍ୱପ୍ନ ଓ ସୃଜନ ମାଧ୍ୟମରେ । ତାଙ୍କ କବିତାର କେତେକ ବିଶୃଙ୍ଖଳିତ ଉଚ୍ଚାରଣ ଭିତରେ ବି ଅବଚେତନର ଉଦ୍‌ବେଗ, ଆବେଗ ରୂପ ପାଇଥାଏ । ସେଇ ଅବଚେତନଟି ହେଉଛି କବିସତ୍ତା ଯାହା ବ୍ୟତୀତ କବିତା ଅସମ୍ଭବ । କବିଠାରୁ ଅଲଗା କରି କବିତାକୁ ଦେଖିବା ଏକ ପାଶ୍ଚାତ୍ୟ ଢଙ୍ଗ । ପାଠକର ଗୁରୁତ୍ୱକୁ ଅତିମାତ୍ରାରେ ବୃଦ୍ଧି କରିବାକୁ ଯାଇ ଲେଖକର ଗୁରୁତ୍ୱକୁ ସମ୍ପୂର୍ଣ୍ଣଭାବେ ଚପାଇ ଦେବାର ଏକ ରାଜନୀତି କବିତାର ଅନୁଶୀଳନକୁ ବୌଦ୍ଧିକ ଓ ଶୈଳୀତାତ୍ତ୍ୱିକ କରିପାରେ କିନ୍ତୁ ଆସ୍ୱାଦନର ଆବେଗକୁ ଅସ୍ୱୀକାର କରିଥାଏ । ହରିହରଙ୍କ ସୃଜନର ଉତ୍ସ ସ୍ୱପ୍ନରେ ଓ ଅବଚେତନରେ । 'ସ୍ୱପ୍ନ କେଉଁ ଅନ୍ଧାର ଗହ୍ୱରରୁ ବାହାରି ଉଜ୍ଜ୍ୱଳ ସାଗରରେ ବିସ୍ତାରିତ ହୋଇଯାଏ, ବୁଝି ହୁଏନା । କିନ୍ତୁ ବାରମ୍ବାର ତାର ଆକର୍ଷଣରେ ବାହାରି ତାକୁ ନ ପାଇ ଫେରି ଆସିବାକୁ ହୁଏ । ସେତେବେଳେ ଯାହା ସବୁ ପ୍ରତିଘାତ ଦିଏ, ଚୋଟ ମାରେ, ତାକୁ ସହୁଥିବା ମଣିଷଟି ମ୍ରିୟମାଣ କବିଟିଏ ପାଲଟି ଯାଏ ।' ହରିହର ମିଶ୍ର, ସ୍ୱପ୍ନ ବିନିମୟ (୧୯୯୨) । ଏଇ ମ୍ରିୟମାଣ କବିଟିର ମୃତ୍ୟୁ ଘୋଷଣା କରି ତାର କବିତାର ପାଠକମାନଙ୍କୁ କବିତା ଟୀକା କରିବାର ଅଶେଷ ସ୍ୱାଧୀନତା ପ୍ରଦାନ କରିବାରେ ଯେଉଁ ସମାଲୋଚନା ଶତଚ୍ଛିଦ୍ର, ତାହା ସମ୍ପୂର୍ଣ୍ଣ କି ? ରୋଲାଁ ବାରଥ୍ସ ୧୯୬୮ ମସିହାରେ କବି ବା ଲେଖକର ପ୍ରାଧାନ୍ୟକୁ ଭାଙ୍ଗି ଦେବାକୁ ଯାଇ ଲେଖକର ମୃତ୍ୟୁ (Death of the Author) ଘୋଷଣା କରିଥିଲେ । କିନ୍ତୁ ହରିହରଙ୍କ କବିତାରେ ସ୍ୱପ୍ନ ଦେଖୁଥିବା କବିଟିକୁ ସମାଲୋଚକ ନିର୍ବାସିତ

କରିପାରିବ ନାହିଁ । ଅଧିକାଂଶ କବିତାର 'ମୁଁ' ହେଉଛି ଗୋଟିଏ ଏକକ ବ୍ୟକ୍ତିନିଷ୍ଠ ସ୍ୱପ୍ନଚାରୀର ଭିନ୍ନ ଭିନ୍ନ ଅବସ୍ଥାର ଅଙ୍ଗୀକାର । ସେହି ପ୍ରଥମ ପୁରୁଷର ଅଭିବ୍ୟକ୍ତିରେ ଏକ ସାମ୍ରାଜ୍ୟବାଦୀ ଲେଖକୀୟ ଅହଂନାହିଁ, ବରଂ ଅଛି ସୃଜନର ପ୍ରତ୍ୟାଶା ବାଣ୍ଟିଦେବାର ଏକ ବିଶ୍ୱଜନୀନ ସ୍ୱପ୍ନ । ୧୯୭୩ରେ ପ୍ରକାଶିତ 'ଶଙ୍ଖନାଭି' ଠାରୁ ୧୯୯୪ର 'ଭିତିରି ଚନ୍ଦନ' ପର୍ଯ୍ୟନ୍ତ, ଯେତେ ପର୍ଯ୍ୟାୟ ସେ ଅତିକ୍ରମ କରିଛନ୍ତି, ସବୁଥିରେ କେତେକ ଗଠନଧର୍ମୀ ସାଙ୍କେତିକତାର ପୁନରାବୃତ୍ତି ରହିଛି । ଏବଂ ସେଇଥିରେ ନିହିତ ରହିଛି ତାଙ୍କ ସ୍ୱକୀୟ ଶୈଳୀର ପରିଚୟ । ଧୀରେ ଧୀରେ ଆବେଗମୟ ଶବ୍ଦ ବହୁଳତାରୁ ବ୍ୟଞ୍ଜନା ଓ ପ୍ରତୀକାଶ୍ରୟୀ ହେଉଛି ତାଙ୍କ ଉଚ୍ଚାରଣ । ପ୍ରକୃତିର ଅପରିବର୍ତ୍ତନୀୟ ଆକାର ପ୍ରକାର (ଝରଣା, ପାହାଡ଼)ର ଅବତାରଣା କମିଯାଇଛି ଏବଂ ପ୍ରତି ବଦଳରେ ପ୍ରକୃତିର ଶାବ୍ଦିକ ପ୍ରତିନିଧିତ୍ୱ ବିଶେଷ ବୃଦ୍ଧି ପାଇଛି । ତେଣୁ ଦୃଶ୍ୟକଳ୍ପର ବ୍ୟାପକତା କମିଯାଇ ଆଭାସଧର୍ମରେ ତାଙ୍କ କବିତା ବଦଳିବାରେ ଲାଗିଛି । ନାରୀ ସମ୍ପର୍କୀୟ ଉଚ୍ଚାରଣରେ ଏହି ପରିବର୍ତ୍ତନ ଉପଲବ୍ଧି କରିହୁଏ । 'ଚିର ଶ୍ୟାମଳ ଭୂଇଁର ଜନନେନ୍ଦ୍ରିୟ' ବା 'ନାରୀର ଗର୍ଭଭଳି ଦିଶୁଥିବା ପାହାଡ଼ଖୋଲ' ବା' ଲୋହିତ ପନ୍ହାରେ ସକାଳର ବିନ୍ଦୁ ବିନ୍ଦୁ ରଶ୍ମିଜାଲ' ଆଦି ଶବ୍ଦ ବିନ୍ୟାସରେ ନାରୀର ଦେହ, ପାହାଡ଼, ଭୂଇଁ ଓ ସକାଳ ଆଦି ବ୍ୟାପକ ଦୃଶ୍ୟପଟ୍ଟ ସହ ଜଡ଼ିତ । କିନ୍ତୁ ପରବର୍ତ୍ତୀ ସମୟରେ ନାରୀ ସାଧାରଣ ସମସାମୟିକ ଅବକ୍ଷୟମୟ ଜୀବନର ଚରିତ୍ର ରୂପେ ଚିତ୍ରିତା ହୋଇଛି । 'ଭିତରି ଚନ୍ଦନ' ସଙ୍କଳନର 'ରୀତିକାବ୍ୟ'ରେ ସୁଖଲତା ଓ ସୁରଜିତ୍‌ର ସମ୍ପର୍କର ନାଟକୀୟ ବର୍ଣ୍ଣନା ନିହାତି ବାସ୍ତବ । ନାରୀ ପୁରୁଷର ସମ୍ପର୍କରେ ବହୁ କବିତା ବିନ୍ୟସ୍ତ । ପ୍ରେୟସୀ, ପ୍ରେମିକା, ଜନନୀ, ବେଶ୍ୟା, ମୋହିନୀ ଭୈରବୀ ଆଦି ଅନେକ ରୂପର ରୂପକଳ୍ପରେ ସେ ଚିତ୍ରିତ । ତେବେ ନାରୀ ସକଳ ସୌନ୍ଦର୍ଯ୍ୟର ଦ୍ୟୋତକ, ବାହ୍ୟ ପ୍ରକୃତିର ବି' ପ୍ରକୃତିର ଅବକ୍ଷୟ ନାରୀର ଅବକ୍ଷୟ । 'ବର୍ଷିୟସୀ ଜନନୀର ଧଳା ଧଳା କେଶ ଭଳି', 'କୁହୁଡ଼ି, କରକା ଆଉ ତୋଫାନର' ଫେଣ ଶୁଖିଯାଏ । ('ଅପରାଧିନୀ', 'ସ୍ୱପ୍ନ ବିନିମୟ', ପୃ-୩୬) କିମ୍ବା 'ଚାଳରୁ ଦିଶୁଛି ଜହ୍ନ ବୁଢ଼ୀର ଫୁଟା ଫୁଟା ଚିତଉ ପିଠାର ମୁହଁ' ('ମୁହୂର୍ତ୍ତର ଶତାବ୍ଦୀ', 'ଭିତିରିଚନ୍ଦନ', ପୃ-୨୩) । ସାମ୍ପ୍ରତିକ କାଳରେ ପରିବେଶ ସଚେତନତା ଓ ନାରୀବାଦ (Feminism) ବୁଦ୍ଧିଜୀବୀ ମହଲରେ ବିଶେଷ ଆଦୃତ । ଯାହା ଫଳରେ ନୂତନ ଶବ୍ଦଟିଏ eco-feminist ଜନ୍ମ ନେଇଛି । ହରିହରଙ୍କ କବିତାରେ ଏହି ସଚେତନତା ଭରି ରହିଛି । ପରିବେଶ ଯେଉଁଠି ସଜଳ ସବୁଜ; ନାରୀ ବି ସୌନ୍ଦର୍ଯ୍ୟମୟୀ, ଯୁବତୀ; ପରିବେଶ ଯେଉଁଠି ବିଧ୍ୱସ୍ତ, ସେଇଠି ନାରୀ ସୌଷ୍ଠବହୀନା, ଏବଂ ବୃଦ୍ଧା । 'ଦେହ ଜହ୍ନ ରାତିର' ହୁଏ 'ବୈଧବ୍ୟର ମାର୍ବଲ ମନ୍ଦିର' (ବିଧବାକାଳୀ) । ନାରୀର ଅଧିକାର ଏବଂ ପ୍ରକୃତିର ସୁରକ୍ଷା ପୁରୁଷପ୍ରଧାନ ସମାଜରେ ଆଜି ବିପଦଗ୍ରସ୍ତ । ଏହା ଏକ

ଆଧୁନିକ-ସଚେତନତା । ତେବେ ହରିହରଙ୍କ ଦୃଷ୍ଟିଭଙ୍ଗୀ ନାରୀବାଦୀ ବା Feminist ନୁହେଁ । ନାରୀବାଦୀମାନଙ୍କ ପରି ପୁରୁଷପ୍ରଧାନ ସମାଜର ପାରମ୍ପରିକ ଶବ୍ଦଚୟନରେ ସେ ନାରୀ ବିରୋଧୀ ଷଡ଼ଯନ୍ତ୍ର ଆବିଷ୍କାର କରିନାହାନ୍ତି । ଅନେକ ସ୍ଥଳରେ କବି ଆଧୁନିକ ଜୀବନର ଚିତ୍ର ଭିତରେ ଯୌନତାର ଅବତାରଣା କରିଛନ୍ତି । ନାରୀବାଦୀମାନେ ହୁଏତ ଏହାକୁ ପୁରୁଷ କବିର ଆମୋଦପ୍ରବଣତା ବା ପୁରୁଷ ପାଠକ ପାଇଁ ଉଦ୍ଦିଷ୍ଟ ମନୋରଞ୍ଜନ ବୋଲି ଅଭିହିତ କରିପାରନ୍ତି । କିନ୍ତୁ ଉଗ୍ର ନାରୀବାଦୀମାନେ ନାରୀ ଯୌନତାର ପ୍ରକାଶର କୌଣସି ଅଶ୍ଳୀଳତା ଦେଖନ୍ତି ନାହିଁ । ବାକ୍ ସ୍ୱାଧୀନତାର ସପକ୍ଷରେ ସେମାନେ (ନାରୀ ଲିଖିତ) ଅଶ୍ଳୀଳତାକୁ ପ୍ରଶ୍ରୟ ଦେଇଥାନ୍ତି । ତେବେ ପ୍ରେମ କବିତାରେ ହରିହରଙ୍କ ରୋମାଣ୍ଟିକ୍ ଭାବ ସମ୍ପଦ ଓ ଭାଷା ବିନ୍ୟାସ ପୁରୁଷ ପ୍ରଭୁତ୍ୱର ନିଦର୍ଶନ ନୁହେଁ । ହସ, ଲୁହ ଫୁଲ ଆଉ ଜହ୍ନରାତି ଭିତରେ ନାରୀ ବିରୋଧୀ ଉଚ୍ଚାରଣ ନାହିଁ । 'ଚନ୍ଦ୍ରବିମ୍ବ' ସଙ୍କଳନର ପ୍ରତ୍ୟୟଧର୍ମୀ କବିତା ଛନ୍ଦମୟ ଏବଂ ଗୀତିଧର୍ମୀ । ତେବେ ନାରୀବାଦୀ ପ୍ରେମ କବିତାର ସ୍ୱରୂପ ସମ୍ପୂର୍ଣ୍ଣ ନୂତନ । କେତେକ କବୟିତ୍ରୀ ସମସ୍ତ କବିଙ୍କ ଭଳି ଆତ୍ମପ୍ରକାଶ ଭିତରେ ଋତୁ ଗର୍ଭଧାରଣ, ପ୍ରସବ ଆଦି ସ୍ୱତନ୍ତ୍ର ନାରୀ ଅନୁଭୂତିକୁ ଗର୍ଭିତ କଲାବେଳେ ଅନ୍ୟକେତେକ 'ମୁଁ ଜଣେ ନାରୀ' ବା 'ମୁଁ ଜଣେ ନାରୀ ସମଲିଙ୍ଗି' (I'm lesbian) ଭଳି ଉଚ୍ଚାରଣ ଦୋହରାଇଥାନ୍ତି । ନାରୀ-ପୁରୁଷର ସମଗ୍ର କନ୍ଦଳ ଆମ ସମୟର କବିମାନଙ୍କ କବିତାରେ ଧୀରେ ଧୀରେ ପ୍ରକାଶ ପାଇଲାଣି । ହରିହରଙ୍କ ସମାଜଧର୍ମୀ କବିତା ବିଶେଷ କରି 'ଭିତିରିଚନ୍ଦନ' ସଙ୍କଳନରେ ଏହାର ପ୍ରଭାବ ଅନୁଭୂତ ହୁଏ । ଆନ୍ତର୍ଜାତିକ ରାଜନୈତିକ ପର୍ଯ୍ୟାପଟ୍ଟରେ ଭୋଗ୍ୟା ବସୁନ୍ଧରା ଉପରେ କାହାର ଅଧିକାର, ତାର ଉତ୍ତର ଖୋଜିଛନ୍ତି କବି ।

ହରିହରଙ୍କ କବିତାର ସ୍ୱର ତିନୋଟି ଦଶକ ଭିତରେ ଯେତିକି ବଦଳିଛି ତା ଭିତରେ ପୃଥିବୀର ରାଜନୀତି ଓ ବାକ୍‌ଗତିରେ ଯଥେଷ୍ଟ ପରିବର୍ତ୍ତନ ଘଟିଛି । ବୋଧହୁଏ 'ପରିବର୍ତ୍ତନ ହିଁ ସତ୍ୟ' କବିଙ୍କ ମତରେ । ତେଣୁ ତାଙ୍କ କବିତାର ଅର୍ଥ ମଧ୍ୟ ସମୟ ସହିତ ପରିବର୍ତ୍ତିତ ହେଉଥିବ । କୌଣସି ଶବ୍ଦବିନ୍ୟାସ ବା ଭାଷାର ଗୋଟଏ ସମ୍ପୂର୍ଣ୍ଣ ଓ ଅନ୍ତିମ ଅର୍ଥ ଥାଏ ବୋଲି ଭାବିବା ଭ୍ରମାତ୍ମକ । ଆଧୁନିକ ପ୍ରତିବିନ୍ୟାସ(Deconstruction)ଧର୍ମୀ ଚିନ୍ତାନାୟକମାନେ ଏଥିରେ ଏକମତ । ତା ଛଡ଼ା ଭିତରେ ଥିବା ଅନ୍ତର୍ବିରୋଧକୁ ପୁଞ୍ଜି କରି ହରିହର ଯେଉଁ କବିତା ଲେଖିଛନ୍ତି, ତାହା ବହୁ ଦୃଷ୍ଟିରୁ ବ୍ୟାଖ୍ୟା କରାଯାଇପାରେ । ଅନ୍ୟ ସମସାମୟିକ କବିମାନଙ୍କର କୃତି ସହ ତାଙ୍କର କବିତାର ତୁଳନା କରାଯାଇ ପାର୍ଥକ୍ୟ ଓ ସାମଞ୍ଜସ୍ୟ ଜରିଆରେ ତାଙ୍କର ଗୁରୁତ୍ୱର ବିଚାର ଏ ଯାବତ୍ ଏକ ଅନାଲୋଚିତ ଦିଗ ।

-ଦୁଇ-

ସୃଷ୍ଟି ଓ ସ୍ରଷ୍ଟାର ସମ୍ପର୍କ ଏକ ଅବ୍ୟକ୍ତ ତଥା ଅବିଚ୍ଛେଦ୍ୟ ସମ୍ପର୍କ । ତାହା ଈଶ୍ୱର ଓ ସୃଷ୍ଟି, କବି ଓ କବିତା ବା ଜନ୍ମଦାତ୍ରୀ ଏବଂ ସନ୍ତାନ କିମ୍ବା ପରମ୍ପରା ଓ ବର୍ତ୍ତମାନ ମଧ୍ୟରେ ଥିବା ସମ୍ପର୍କକୁ ବୁଝାଇପାରେ । ସୃଷ୍ଟିକ୍ରିୟା ସମ୍ଭୂତ ଏକ ରୂପ/ଶବ୍ଦ/ଭାବ/ଜୀବ ସତ୍ତାର ଯେ, ରୂପାନ୍ତରିତ ହେବା ପରେ ସ୍ରଷ୍ଟା ଠାରୁ ବିଚ୍ଛିନ୍ନ ଏକ ସ୍ୱୟଂ ସମ୍ପୂର୍ଣ୍ଣ ସତ୍ତା ହୋଇଯାଏ, ଏପରି ଭାବିବାର ଯଥାର୍ଥତା ଅନେକ ପ୍ରଶ୍ନର ଅପେକ୍ଷା ରଖେ । ତେବେ ଜୈବିକ ସ୍ତରରେ ତଥା ବୌଦ୍ଧିକ ସ୍ତରରେ ସୃଷ୍ଟିସତ୍ତା ସ୍ରଷ୍ଟାଠାରୁ ବିଚ୍ଛିନ୍ନ ହୋଇପାରେନା । ଦୁଇଟିଯାକ ଗୋଟିଏ ପ୍ରକ୍ରିୟାଭୁକ୍ତ ଏବଂ ଅନ୍ତରଙ୍ଗ । ଯେଉଁଠାରେ ସ୍ରଷ୍ଟା ଈଶ୍ୱର, ସେଠାରେ ସୃଷ୍ଟି ଈଶ୍ୱରଙ୍କ ଭଳି ବିଚିତ୍ର । କବି ହରିହର ମିଶ୍ରଙ୍କ କବିତାରେ ବହୁ ପର୍ଯ୍ୟାୟରେ ଥିବା ସୃଷ୍ଟି ଓ ସ୍ରଷ୍ଟାର ସମ୍ପର୍କ ଭିନ୍ନ ଭିନ୍ନ ସଙ୍କଳନର କବିତା ଭିତରେ ଏକ ମୁଖ୍ୟ ଭାବବସ୍ତୁ ରୂପେ ପରିବେଷିତ ହୋଇଛି ।

ଏହି ଭାବବସ୍ତୁ ତାଙ୍କୁ ତାଙ୍କ ସମସାମୟିକ କବିମାନଙ୍କ ଠାରୁ ଏକ ପୃଥକ୍ ପ୍ରତିଭା ଭାବେ ସାବ୍ୟସ୍ତ କରେ । ତେବେ ଏହାର ଅର୍ଥ ନୁହେଁ ଯେ ସେ ସମସାମୟିକ ଓଡ଼ିଆ କାବ୍ୟ ଜଗତର ରୁଚି ବିନ୍ୟାସ ତଥା ଶିଳ୍ପକଳାଠାରୁ ଦୂରରେ । ବରଂ ଆଧୁନିକ ଓଡ଼ିଆ କବିମାନଙ୍କ ମଧ୍ୟରେ ଯେଉଁମାନେ ନିଜସ୍ୱ ଶୈଳୀ ଦ୍ୱାରା ପ୍ରତିଷ୍ଠିତ ହୋଇଛନ୍ତି, ସେମାନଙ୍କ ଭିତରେ ହରିହର ଏହି ଦୃଷ୍ଟିରୁ ଅନ୍ୟତମ । ୧୯୭୩ରେ ତାଙ୍କର 'ଶଙ୍ଖନାଭି' କବିତା ଗ୍ରନ୍ଥ ପ୍ରକାଶିତ ହେବା ବେଳକୁ ସେ ନିଜକୁ ସମସାମୟିକ କାବ୍ୟ ଶିଳ୍ପର ଏକ ମୁଖ୍ୟ ପ୍ରତିନିଧି ଭାବେ ସାବ୍ୟସ୍ତ କରିସାରିଥିଲେ । 'ଶଙ୍ଖ ନାଭି'ର ଜଣେ ଆଲୋଚକଙ୍କ ମତରେ : 'ହରିହରଙ୍କ ବିଭିନ୍ନ କବିତା ମଧ୍ୟରେ ଆମେ ଖୋଜିପାଇବା ଗୁରୁପ୍ରସାଦଙ୍କର କାବ୍ୟ ପୁରୁଷର ସେଇ ଅସହାୟ ତଥା ଯନ୍ତ୍ରଣାପିଷ୍ଟ ରୂପକୁ । ଖୋଜି ପାଇବା ରମାକାନ୍ତଙ୍କ କାବ୍ୟ ନାୟକର ଆତ୍ମ ଉପଲବ୍ଧିମୂଳକ ଦୁଃଖ, ଅନୁଶୋଚନା ତଥା ସର୍ବଗ୍ରାହୀ ମୃତ୍ୟୁର ସ୍ୱରୂପକୁ । ଏହା ବ୍ୟତୀତ ସୀତାକାନ୍ତଙ୍କ କାବ୍ୟରେ ଭାରତୀୟ ସଂସ୍କୃତି ସଚେତନତାର ସ୍ୱରୂପ ମଧ୍ୟ ମିଶ୍ରଙ୍କ କବିତାରେ ସ୍ପଷ୍ଟ । ନିଜ କବିତାଗୁଡ଼ିକରେ ହରିହର ଏହି ତିନି କବିଙ୍କ କାବ୍ୟ ଚେତନାର ସଫଳ ସମନ୍ୱୟ ଘଟାଇ ପାରିଛନ୍ତି ।' କିନ୍ତୁ ଆଜି ସମନ୍ୱୟର ସ୍ୱର ଅପେକ୍ଷା ସ୍ୱକୀୟତାର ସ୍ୱର କବି ହରିହରଙ୍କୁ ପାଠକର ନିକଟତର କରିଛି ।

* (ଶଙ୍ଖନାଭି ୧୯୭୦ ପୂର୍ବରୁ ଲେଖା । ଶଙ୍ଖନାଭି ଦୀର୍ଘ କବିତାଟି ୧୯୬୩ରେ ଲେଖା ଓ ୧୯୬୪ ମସିହା ପ୍ରଥମ ଯୁବଲେଖକ ସମ୍ମେଳନରେ ଏହା ପଠିତ ପୁରୀ, ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚଠାରେ । ତେଣୁ ଷଷ୍ଠ ଦଶକରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ କବିତା ଏଥିରେ ସ୍ଥାନିତ ହୋଇଛି । ଅନେକ ପାଠକ ଏହା ଜାଣନ୍ତି ନାହିଁ, କାରଣ ଏହା ୧୯୭୩ ମସିହାରେ

ଲାର୍କ ବୁକ୍ସ ଦ୍ୱାରା ଅର୍ଥାତ୍ ଅଷ୍ଟମ ଦଶକରେ ପ୍ରକାଶିତ ହେଲା । ୨୦୦୦ ମସିହାରେ ଏବେ 'ଶଙ୍ଖନାଭି ଓ ଅନ୍ୟାନ୍ୟ କବିତା' ଆର୍ଯ୍ୟ ପ୍ରକାଶନୀ, କଟକ ପ୍ରକାଶ କରିଛନ୍ତି ।)

'ଶଙ୍ଖନାଭି' ପରେ 'ଲାଲ କଢ଼ର ତପସ୍ୟା', 'ଚନ୍ଦ୍ରବିମ୍ବ', 'ଅକ୍ଷମ ଦେବତା', 'ଚାହାଣି ମଣ୍ଡପ', 'ସ୍ୱପ୍ନ ବିନିମୟ', 'ଭିତିରି ଚନ୍ଦନ', 'ଦର୍ପଣଶିଳା', 'ଶବ୍ଦ ଏକା ଏକା ଏକତ୍ର' ଓ 'ସଂଧ୍ୟାଦର୍ଶନ' କବିତା ସଙ୍କଳନ କେତୋଟିରେ ମୁଖ୍ୟ ଭାବବସ୍ତୁ ଏବଂ ଶୈଳୀ ଗର୍ଭିତ ପରିପକ୍ୱତା ଲକ୍ଷ୍ୟ କରିହୁଏ ।

'ଶଙ୍ଖନାଭି' ସଙ୍କଳନର ମୁଖ୍ୟ ଏବଂ ଆଦ୍ୟ କବିତା । 'ଶଙ୍ଖନାଭି'ରେ କାବ୍ୟପୁରୁଷ ଏକ ଦ୍ରଷ୍ଟା ତଥା ଯୁଗାଦର୍ଶର ସଚେତନ ସମାଲୋଚକ । ଅନୁଭୂତିର ସ୍ରୋତ ଭିତରେ ସିକ୍ତ ହେଉଥିବାର ବ୍ୟକ୍ତିତ୍ୱରେ ହିଁ ପ୍ରବାହର ଆରମ୍ଭ ଓ ଶେଷଆଡ଼କୁ ଦୃଷ୍ଟିନିକ୍ଷେପ କରିବାର ଏକ ପୃଥକ ଅବବୋଧ ସମଗ୍ର କବିତାରେ ସୁସ୍ପଷ୍ଟ ।

ପରମ୍ପରାର ଗଡ୍ଡାଳିକା ପ୍ରବହମାନତାର ଏକ ଅବକ୍ଷୟମାଣ ଅପସଂସ୍କୃତିକୁ ଉପଜୀବ୍ୟ କରି ଯେଉଁ ଆଧୁନିକ ଯୁଗଧର୍ମ ଗଢ଼ି ଉଠିଛି ତାର ଅର୍ଥହୀନ ଆସ୍ତରଣକୁ ଖୋଲି ଖୋଲି ବାସ୍ତବତାର ନାଭିକେନ୍ଦ୍ରରେ ପହଞ୍ଚିବାର ପ୍ରୟାସ କରିଛନ୍ତି ହରିହର । ସମକାଳୀନ ସମାଜର ତଥାକଥିତ ଆଦର୍ଶ ସ୍ପୁରୁଓଟର ପିଠି ପଟେ ଥିବା କୁଜପରି । ସେହିଭଳି ପ୍ରେମ ଓ ତଦ୍‌ଜନିତ କଳ୍ପନା ମଧ୍ୟ ପକ୍ଷାଘାତ ଗ୍ରସ୍ତ । ଧାର୍ମିକ ଓ ମାର୍ମିକ ଆବେଗରୁ ମୁକ୍ତ ହୋଇ ବିଛିନ୍ନତାର ଦଶା ଭୋଗିବା ସମସାମୟିକ ଜୀବନରେ ଏକ ବାସ୍ତବତାର ଆହ୍ୱାନ ସ୍ୱରୂପ ଦେଖାଦେଇଛି । ନିଜକୁ ନିସଙ୍ଗ କରି ଏକ ଯୋଗୀଭଳି ସରଳ ଅମାୟିକ ବ୍ୟକ୍ତିତ୍ୱଟିଏ ନେଇ ସତ୍ୟର ସନ୍ଧାନ ସେ କରିଛନ୍ତି, ଯେଉଁଥିପାଇଁ ଏକ ବଳିଷ୍ଠ ପରମ୍ପରା ଥାଇ ବି ତାହାର ଅପଭ୍ରଂଷ୍ଟ ଅବଶେଷ ଅକର୍ମଶିଳା ପରି ପଡ଼ିଥିବା କବି ଅନୁଭବ କରିଛନ୍ତି । ଏ ଦୃଷ୍ଟିରୁ ସଂସ୍କୃତିର ପୁନର୍ଗଠନ କାବ୍ୟରେ ଅବଶ୍ୟମ୍ଭାବି ହୋଇ ପଡ଼ିଛି । ଯୁଗର ବିକୃତ ମାନସରେ ପ୍ରତିବିମ୍ବିତ କାଳଭ୍ରଂଷ୍ଟ ସଂସ୍କୃତିର ରଚି ଓ ବୈଭବ । କବିଙ୍କ ସ୍ୱଚ୍ଛ ଦୃଷ୍ଟିକଳ୍ପରେ ତାହାକୁ ଏଡ଼ି ଦେଇ ଯିବା ସହଜ ନୁହେଁ । ଆହୁରି ଅବଚେତନ ଓ ଅଚେତନର ସ୍ମୃତିରେ ସଂସ୍କୃତିର ରଚିପୂର୍ଣ୍ଣ ସମ୍ଭାର ନିମଜ୍ଜିତ । ତେଣୁ ସେ ସମୟ ସମୁଦ୍ରକୁ ମନ୍ଥି ତାର ନିର୍ଯ୍ୟାସ ଅମୃତକୁ କଳ୍ପନାର ଭାବଲୋକରେ ସ୍ଥାୟୀତ୍ୱ ଦେବାକୁ ଚାହାନ୍ତି । ଶଙ୍ଖନାଭି ଦୀର୍ଘ କବିତାର ଏହା ହିଁ ଭୁୟୋଦର୍ଶନ ବା Vision, ଯାହା ବିଚ୍ଛିନ୍ନତା ବୋଧର ଯୁଗୀୟ ବାସ୍ତବତା ଉପରେ ଦୌଦୁଲ୍ୟମାନ ସ୍ଥିତିରେ ପ୍ରକମ୍ପିତ । ଏହି କମ୍ପନରେ ଆତଙ୍କିତ କବିର ଏକ ଶିଶୁସୁଲଭ ଭୀତ ମାନସ ।

ତେଣୁ ଧର୍ମରୁ ବିଚ୍ଛିନ୍ନ ହୋଇ ଯେଉଁ ଔପଚାରିକ ପୂଜା ପଦ୍ଧତି ପରମ୍ପରା ସୂତ୍ରରେ ଗଢ଼ି ଆସିଛି, ସେଥିପ୍ରତି କବି ତିର୍ଯ୍ୟକ ବ୍ୟଙ୍ଗ ଓ ବିଷାଦ ପ୍ରକାଶ କରିଅଛନ୍ତି । ଏକ ବୈପ୍ଳବିକ ସଚେତନତା ସହ ରହସ୍ୟବାଦୀ ଅନ୍ୱେଷା ଭିତରେ ସବୁ ସ୍ମୃତି ଓ ସମ୍ଭାବନା ତଥା ସବୁ ଐତିହ୍ୟ ଓ ଆସକ୍ତି ଉଦ୍‌ବେଳିତ ହୋଇଛି । ଶଙ୍ଖରେ କାନ ଦେଲେ ଯେମିତି ଶୁଭେ ପବନର ସ୍ୱର ସେମିତି କବିତାଟି ଶୁଣାଏ ଶଙ୍ଖନାଭିରେ ସମୁଦ୍ରର ସ୍ୱର । ଏହି ଶବ୍ଦ-ବ୍ରହ୍ମ ଶ୍ରୀକ୍ଷେତ୍ରରେ ବିଦ୍ୟମାନ । ସମୁଦ୍ର ସେ ସବୁର ମୂଳାଧାର । ସମସ୍ତ ପ୍ରଶ୍ନର ଉତ୍ତର ତଥା ସବୁ ସମୟର ଉର୍ଦ୍ଧ୍ୱରେ ଥିବା ଏକ ଚିରନ୍ତନ ବିସ୍ତାର ଏ ସମୁଦ୍ର । ଏହି କବିତାରେ ଯୁଗ ସଙ୍କଟର ସମାଧାନ ଅପେକ୍ଷା ସମାଧାନର ଅନ୍ୱେଷା ହିଁ ମହତ୍ତର ।

ଏ ସମୁଦ୍ର ଅଭିଧାନ ଶୀତ ଝଡ଼ କୁହୁଡ଼ିର
ଖୋଜାଯାଇପାରେ ଏଠି ଅନ୍ଧାରର ଅର୍ଥ କଣ
ଏ ସମୁଦ୍ର ଯଦି ଆସେ ଝର୍କା ଦେଇ ଛାତ ଆଉ ଚଟାଣରୁ
ଏ ସମୁଦ୍ର ପାର ହେବା ଇଚ୍ଛା ମୋର ବହୁଦିନୁ ଭିକ୍ଷାବୃତ୍ତି
ଦାନ ଦିଆଇବ ଓ ନ ଦିଆ ନ କରିବ ।

-ଶଙ୍ଖନାଭି

ତେବେ 'ଶଙ୍ଖନାଭି'ରେ ହଜାଇବାର ସ୍ୱର ଅଧିକ । ବିରହ ଭିତରେ ପ୍ରେମର ତୀବ୍ରତା ଯେପରି, ହଜିବାରେ ଖୋଜି ପାଇବାର ସମ୍ଭାବନା ସେପରି ପରିଦୃଷ୍ଟ । କେତୋଟି କବିତାରେ ଶିଶୁ ସୁଲଭ ଆବିଷ୍କାର-ପ୍ରବଣତା ସହ ବିଜଡ଼ିତ ଅବଶୋଷ ମଧ୍ୟ ସମନ୍ୱିତ ହୋଇଛି । ଇନ୍ଦ୍ରିୟ ମାଧ୍ୟମରେ ଇନ୍ଦ୍ରିୟାତୀତର ପ୍ରୟୋଗ ତଥା ବିଚ୍ଛିନ୍ନତା ମାଧ୍ୟମରେ ଉତ୍ତରଣର ପ୍ରଚେଷ୍ଟା ଏହାଦ୍ୱାରା ସମ୍ଭବ ହୋଇଛି । ଆଶ୍ୱାସନା ବିବର୍ଜିତ ଆଧୁନିକ ମଣିଷ ନିଜକୁ ମା ଛେଉଣ୍ଡ ମନେ କରି ବିଳାପ କରି ଉଠୁଛି ଯେତିକି, ସେତିକି ପବିତ୍ରତାର ସ୍ପର୍ଶରେ ନିଜକୁ ନିଷ୍ପାପ ଶିଶୁ ଭଳି ଉଲଗ୍ନ କରିଦେବାକୁ ଇଚ୍ଛା କରୁଛି । ଅବାରିତ ଓ ସ୍ୱଚ୍ଛନ୍ଦ ହୋଇଛି କବିତାର ଗତି ଓ ଧୃତି ।

'ବୋଉ ମୁଁ କଣ ଚିହ୍ନା ତୋର ସବୁ ଇନ୍ଦ୍ରିୟରେ
ଆଖିରେ ସେ ଲେଖିଦେଲା ନିର୍ବିକାର
ବାବା, ସ୍ତନ ମୋର ଇନ୍ଦ୍ରିୟ ନୁହେଁରେ
(ବେଢ଼ା ପରିକ୍ରମା ବୋଉ ସହିତ)

ଅଥବା

ମାଆମାନେ ଥରେ ତୁମ ସ୍ତନକୁ ପଚାର
ଦେବକୀ, ପୁତନା ମାତା
କିବା ହେ ଯଶୋଦା ମାତା
କାଉରୁ କୋଇଲି ବସା କାହାକୁ ମୁଁ କରିବି ନିଜର
ବାଲ୍ୟ ଯାର ନିଃସହାୟ ନିରାଶ ଜର୍ଜର

(ତତ୍ତ୍ୱବିତ୍ 'ଶଙ୍ଖନାଭି')

ସ୍ତନ ଇନ୍ଦ୍ରିୟାତୀତ ଚେତନାର ପ୍ରତୀକ । ଅସ୍ୱଚ୍ଛ ମାନସିକତାରୁ ମୁକ୍ତି ନେଇ କବି ଯଥେଷ୍ଟ ସାହସିକତାର ପରିଚୟ ଦେଇଛନ୍ତି । ସ୍ତନର କୋମଳତା ଘାତକ ବୁଝେନାହିଁ । ଏ ସମୟ ସେପରି ଏକ ନିର୍ମମ ନିଷାଦ ।

'ଦିନେ ଦିନେ ଦି ପହରେ ଆର ଗାଁ କନ୍ଧଟିଏ
ସେ ସ୍ତନରେ ଶରକୁ ପଜାଏ
ଦେବୀଙ୍କୁ ସୁମରିଯାଏ ପକ୍ଷୀ ଖୋଜି, ଖୋଜି ତା ଶିକାର ।

ଦୈନନ୍ଦିନତା ଭିତରୁ ଇନ୍ଦ୍ରିୟ ଉଚ୍ଛ୍ୱାସକୁ ମୁକ୍ତିଦେବା ଓ ଇନ୍ଦ୍ରିୟ ଉଚ୍ଛ୍ୱାସରୁ ଇନ୍ଦ୍ରିୟାତୀତ ଚେତନାରେ ସମାହିତ ହେବାର ଏପରି ଉନ୍ମାଦପୂର୍ଣ୍ଣ ପ୍ରଚେଷ୍ଟା ଅବଶ୍ୟ କବିଙ୍କୁ ବିବାଦାସ୍ପଦ କରିଛି । କବି ସୀତାକାନ୍ତଙ୍କ ଭାଷାରେ ଆଧ୍ୟାତ୍ମିକ ଉତ୍ତରଣ ପାଇଁ ହରିହରଙ୍କ ଏହା ଏକ ନିଉରେଟିକ୍ ପ୍ରସେସ୍ ।

ହରିହରଙ୍କ ଅନେକ କବିତାରେ ବୋଉର ଦୁଃଖ, ବୋଉ ସୁନ୍ଥାର ସିନ୍ଦୂର ବାଳୁତ ବାନପ୍ରସ୍ଥ, ଗର୍ଭଠାରୁ ଜନ୍ମ ଓ ଅନ୍ଧାରର ଗର୍ଭଗୃହରେ ଆଲୋକର ଅଙ୍କୁର ସନ୍ଧାନ କରିବାର ରହସ୍ୟମୟ ବୃତ୍ତାନ୍ତ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ବିଭାବ । ଏହା ଏକ ସମ୍ପୂର୍ଣ୍ଣ ନୂତନ ସମାଲୋଚନାର ଅପେକ୍ଷା ରଖେ । ସାଧାରଣ ଭାବେ 'ଶିଶୁ' କବିମାନସର ଏକ ପ୍ରତୀକ । ଗୋକୁଳ ବିହାରୀ ମହାନ୍ତିଙ୍କ ଭାଷାରେ କାବ୍ୟପୁରୁଷ 'ଭୀତ ମାନସ ଶିଶୁ ଭଳି ଅଣ୍ଡାଳି ଅଣ୍ଡାଳି ଖୋଜିଛି ତାର ହୃତ ଚୈତନ୍ୟ, ତାର ଜାତୀୟ ଭାବମାନସର ପରମ୍ପରା ସହିତ ଯୋଗସୂତ୍ର ତଥା ସମୟର ସ୍ୱର ।' (୨)

'ଶଙ୍ଖନାଭି'ର ସମସ୍ତ କବିତା ଅଳ୍ପେ ବହୁତେ ବର୍ଣ୍ଣନାଧର୍ମୀ । ଅଧିକାଂଶ ଶବ୍ଦ ଚିତ୍ରମୟ ହୋଇଥିବାରୁ ପାଠକର ଦୃଶ୍ୟାନୁଭବ ହୋଇଥାଏ । ତେଣୁ ସିଧାସଳଖ ଜୀବନ ଦର୍ଶନଟିଏ

ଥୋଇବା ଅପେକ୍ଷା ଦାର୍ଶନିକ ଦୃଷ୍ଟିଭଙ୍ଗୀଟିଏ ପାଠକ ମନରେ ତିଆରି କରିବାରେ ହରିହର ସଫଳ ହୋଇଛନ୍ତି । ଭିନ୍ନ ଭିନ୍ନ ଜୀବନାନୁଭୂତିର କାବ୍ୟିକ ଅବତାରଣା ଏକ କାହାଣୀ ଗର୍ଭିତ ସାବଲୀଳ ବାକ୍‌ଶୈଳୀ ବା ଗାଥା କବିତା ପରି ପାଠକକୁ ଛୁଇଁଥାଏ । ଏ ଦୃଷ୍ଟିରୁ ଶଙ୍ଖନାଭିର ଶେଷ କବିତାଟି ରାମାୟଣ ମିଥ୍‌କୁ ନେଇ ଯୁଗାଦର୍ଶର ଚିତ୍ର ପ୍ରଦାନ କରିଛି । କବି ଶ୍ରୀ ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଭାଷାରେ "Harihar delights in a poetic mist, centripetal introversion" ତାଙ୍କ ମତରେ ହରିହରଙ୍କ କୃତି କୁହୁଡ଼ିଘେରା ଏକ କାବ୍ୟିକ ଆତ୍ମମଗ୍ନତାରେ ଘନିଭୂତ । ତେବେ ସେ ଆତ୍ମମଗ୍ନତା କେବେ ଆତ୍ମକେନ୍ଦ୍ରିକତା ନୁହେଁ । କେନ୍ଦ୍ର ଅଭିମୁଖୀନତାରେ ସେ ଯେତିକି ମଗ୍ନ ସେତିକି ପରିଧି ଆଡ଼କୁ ପ୍ରସରିଯିବାରେ ବ୍ୟାକୁଳ । ଲାଲକଢ଼ର ତପସ୍ୟା ସଙ୍କଳନର କବିତା 'ଅନାମ ସୁନ୍ଦରୀ'ରେ ଏହି ବ୍ୟାକୁଳତା ବେଶ୍ ସ୍ପନ୍ଦିତ ।

ମୁଁ କେମିତି କହିବି ଯେ ମୋର ଛାଇ
ବୁଲୁଅଛି ରାତି ରାତି ଗ୍ରହ ଗ୍ରହାନ୍ତରେ
ଓ ଏ ପୃଥିବୀ ଯଥେଷ୍ଟ ନୁହେଁ ମୋ ପାଇଁ
ମୋର ସୁଖ ଦୁଃଖ ମୋର ଆସ୍ଥାନ ପାଇଁ

ଏହି କବିତାରେ ଏକ କୁହେଳିକାମୟୀ ନାରୀ ପରି ପୃଥିବୀ । ଯା'ର ନାରୀତ୍ୱରେ ଅଛି ମାତୃତ୍ୱରୁ ମୈଥୁନ ପର୍ଯ୍ୟନ୍ତ ସକଳ ଆଶ୍ୱାସନା । ପଞ୍ଚମ ପଙ୍‌କ୍ତିରେ ସେ ନାରୀର ସାନ୍ନିଧ ଠିକ୍ କବି D. H. Lawrenceଙ୍କ Piano କବିତାର ବର୍ଣ୍ଣନା ପରି, ଯେଉଁଠି ଘର ଭିତରେ କବି ଏବଂ ସେହି ବିଚିତ୍ର ନାରୀ, ବାହାରେ ଶୀତଋତୁର ହେମାଳ ଏବଂ ସଂଧ୍ୟାର ଅନ୍ଧାର ।

ମୁଁ ଏକ କାଦୁଅ ଘରେ ତା ସହିତ
ନିଆଁ ଜାଳେ ନିଭୃତରେ ଉଷୁମରେ
ଚର୍ତୁଦିଗେ ସନ୍ନିପାତ ସଂଧ୍ୟାର ଶେତାଳ ଶୀତରେ ।

(ଅନାମ ସୁନ୍ଦରୀ, ଲାଲ କଢ଼ ତପସ୍ୟା)

'ପ୍ରତିବେଶୀ' ପତ୍ରିକାର ସୌଜନ୍ୟ ସମ୍ପାଦକ କବି ହରପ୍ରସାଦ ଦାସ ଏଥିପାଇଁ ମନ୍ତବ୍ୟ ଦିଅନ୍ତି–'ହରିହର ମିଶ୍ରଙ୍କ ଦୃଷ୍ଟିର ଛାୟାଛନ୍ନତା ଓ ଧୂମାଳତା ତାଙ୍କର ସ୍ୱତନ୍ତ୍ର ଗୁଣ । ଏଥିରେ ଅଧିକ ସ୍ୱଷ୍ଟତା ଓ ତୀକ୍ଷ୍ଣତା ଖୋଜିବା ବୃଥା, ଯେମିତି ହରିହର ମିଶ୍ରଙ୍କୁ ଯାବତୀୟ ପୁରୀ ଆଶ୍ରିତ କବିତା ସହ୍ୱେ ପୁରୀରେ ଖୋଜିବା ବୃଥା । ଛାୟାପଥରେ ଥାନ୍ତି ହରିହର ମିଶ୍ର, ସେଇଠି ରହିବେ । ଛାୟାପଥରୁ ଜନପଥକୁ ନ ଓହ୍ଲାନ୍ତୁ କବି ହରିହର । ସେ ବିଭୋର ହୋଇ ଯେତେବେଳେ ରୁକ୍ଷୀ ପାହାଡ଼ ଉପରେ ମେଘର ସଞ୍ଚାର ଦେଖନ୍ତି, ସେତେବେଳେ ହଠାତ୍

ଠିଆ ହୋଇଥିବା ମାଟିରୁ ଅଲଗା ହୋଇଯା'ନ୍ତି, ଉପରକୁ ଉଠନ୍ତି । ଯେତେ ଉପରକୁ ଉଠନ୍ତି ହରିହର, ସେତେ ଛାୟାଛନ୍ନ ଓ ଧୂମାଳ ହୁଏ ତାଙ୍କ ଦୃଷ୍ଟି, ସେତେ କବିତ୍ୱମୟ ବି । ସେ ନୟାଗଡ଼ରେ ନ ଥାନ୍ତି କି ପୁରୀରେ ନ ଥାନ୍ତି, ସେ ଥାନ୍ତି ତାଙ୍କର ବିଭୋର ଦୃଷ୍ଟିରେ । କଳ୍ପନାକୁ ସେ ସଜାଡ଼ି ଜାଣନ୍ତି ନାହିଁ । ପାଣ୍ଡିତ୍ୟ ଓ ଚାତୁର୍ଯ୍ୟର ସ୍ପର୍ଶ ଲାଗିଲେ ହୀରା ତାଙ୍କର ଅଙ୍ଗାର ହୋଇଯାଏ । ସଂହତି ବୋଲି କିଛି ଗୋଟାଏ 'କାରିଗରୀ' ତାଙ୍କ କବିତାରେ ନ ଥାଏ । ଦରକାର ବି ନାହିଁ ସେ କାରିଗରୀର, ପାଣ୍ଡିତ୍ୟର, ଚାତୁର୍ଯର ଯଦି ଶୁଦ୍ଧ କବିତା କେବଳ ଆବେଗର ଆତ୍ମା ଓ ବିଭୋରତାର ରକ୍ତମାଂସରେ ଗଢ଼ା ଯାଇପାରେ । ହରିହର ମିଶ୍ରଙ୍କ କବିତା, ଅଗଷ୍ଟ ୧୯୮୯ ପ୍ରତିବେଶୀ ସାହିତ୍ୟ ମଞ୍ଚ ।

ଆବେଗ ସହ ଫିଟି ପଡ଼ିବାରେ ସେ ଏତେ ଉନ୍ମୁଖ ଯେ 'ଲାଲକଢ଼ର ତପସ୍ୟା' ସଙ୍କଳନରେ ଶବ୍ଦର ଶୃଙ୍ଖଳା ପ୍ରତି ତାଙ୍କର ଗୁରୁତ୍ୱ ରହେ ନାହିଁ । ତେଣୁ ଅନେକ ସମୟରେ ଅବିନ୍ୟସ୍ତତା ଓ ଅସଲଗ୍ନତାରେ ତାଙ୍କ କବିତାର ବକ୍ତବ୍ୟ ଓ ଅଭିବ୍ୟକ୍ତି ପରସ୍ପରଠାରୁ ଅନେକ ପଂକ୍ତିରେ ବିଚ୍ଛିନ୍ନ ବୋଧହୁଏ । ତେବେ ତାଙ୍କ ଆବେଗର ଉଷ୍ମତା ଓ ସମ୍ପର୍କ ସମସ୍ତ ଅବଶୋଷକୁ ଅତିକ୍ରମି ଆନନ୍ଦ ଓ ଅନ୍ୱେଷାର ସ୍ୱର ତୋଳେ । 'ଶୁଖିଲା କୋରଡ଼ ସବୁ ଥରି ଉଠେ ମହୁମାଛି ଭଅଁର ଗୀତରେ ।'

(ମୋର ସମ୍ବର୍ଦ୍ଧନା ପାଇଁ ଅପେକ୍ଷା କରିଥିବା ସୁନ୍ଦରୀକୁ)
ଲାଲକଢ଼ର ତପସ୍ୟା

ଅନ୍ତରର ଯେତେ ବ୍ୟକ୍ତିଗତ ଅବସାଦ, ଆସ୍ୱାଦ ଓ ଆହ୍ଲାଦକୁ ଅନ୍ତରରେ ଚପାଇ ତାର କିଛି ମପାଚୁପା ଭଗ୍ନାଂଶ କବିତା ଭିତରକୁ ସେ ଲମ୍ବାଇ ଦିଅନ୍ତି ନାହିଁ । 'ବରଂ ଛୋଟ ପ୍ରେମ କଥାଟିଏ ହଉ ପଛେ ମୁଁ ରଖିପାରିନି ଗମ୍ଭିରୀ ଘରେବୋଲି' ସ୍ୱୀକାର କରନ୍ତି ।

'ଫାଲ୍‌ଗୁନର ବିଷାଦ ଯୋଗ'ରେ କବିତାଟି ଶବ୍ଦମାନଙ୍କ ଅତ୍ୟାଚାରରେ ଚାପି ହୋଇଗଲା ପରି ମନେହୁଏ । ଏକ ଦୃଶ୍ୟ ଭିତ୍ତିକ ବାକ୍ ବିନ୍ୟାସରେ ପାଠକକୁ ଆମନ୍ତ୍ରଣ କରାଯାଇଛି ଏମିତି ଏକ ଇଲାକାକୁ ଯେଉଁଠାରେ ମୂଲ୍ୟବୋଧ, ରୁଚି, ସଂଯମ ଓ ସଚେତନତା ନିରର୍ଥକ । ସବୁ ଉପମା ସବୁ ଛବି ଭିତରେ ଯୌନତା ଏକ ଅର୍ଦ୍ଧନଗ୍ନ ନାରୀ ପରି କେତେବେଳେ ଅନାବୃତ ଓ କେତେବେଳେ ସାଙ୍କେତିକତାରେ ଅସ୍ପଷ୍ଟ । ସେ ଫାଲ୍‌ଗୁନ ଇଲାକାର ସମ୍ଭୋଗ ପ୍ରବଣ ନାୟକ, ସମାଜର ସମସ୍ତ ଶୃଙ୍ଖଳାର ବହୁ ଦୂରରେ । ତା ପାଇଁ ପରିଚିତ ପୃଥିବୀର ସମସ୍ତ ଶିକ୍ଷା, ଚଳଣି ଓ ମୂଲ୍ୟବୋଧ ଖୋଳପା ପରି । ମଣିଷ ଠିକ୍ ଗୋଟିଏ ଘୋଷାରେ ନିୟନ୍ତ୍ରିତ ହେଉଥିବା ଗୀତ ବା ଗୋଟିଏ ଆଦର୍ଶର ଅନୁବର୍ତ୍ତୀ ହୋଇ ଡ୍ରିଲ୍ ଅଭ୍ୟାସ କରୁଥିବା

ସୈନିକ ଭଳି । ମଣିଷର ଉଦ୍ଦାମତା, ଆଦିମତା, ସ୍ୱାଧୀନତାକୁ ଜବରଦସ୍ତ ମଣ କରି ଦେଉଥିବା ମଣିଷ କବି ଦୃଷ୍ଟିରେ ଅମଣିଷ । ଆଦିମତାର ସଙ୍ଗୀତ ଖୋଜି, ତୀଖ ଗଡ଼ାଣିରେ ନୃତ୍ୟର ଉଦ୍ଦାମତାକୁ ସ୍ୱାଗତ କରି, ଦେହର, ମାଂସର, ରକ୍ତର ଅନୁଭବକୁ ପୁଞ୍ଜି କରି ସେ ଫେରି ଆସିବାକୁ ନାଚାର । ସେ ଅନୁଭୂତିର ମାଦକତା 'ବର୍ଷାପରି, ଛତାପରି, ନର୍ତ୍ତକୀର କଥକ ଘେର' ପରି ଘେରି ଯାଇଛି, ପ୍ରସରି ଯାଇଛି କବି ମାନସରେ । ସେଇ ଶୃଙ୍ଗରୁ ପୁରୁଣା ପରିଚିତ ପୃଥିବୀର ସବୁ ଅପରିଚିତ ଦୃଶ୍ୟ ଫିଟି ପଡୁଛି । ପଟା ପଟା ବାଘଛାଲ ପରି ତଳ ପୃଥିବୀର ଭୟାନକତା ସୁନ୍ଦର ଆବରଣ ଭିତରେ ଆଉ ଘୋଡ଼ାଇ ରଖି ହେଉନି । ପ୍ରବୃତ୍ତି ଓ ପ୍ରକୃତିର ଜୟ ଉଦ୍‌ଘୋଷଣାରେ କବି ହରିହର ଅନେକ କବିତାରେ ଶତଜିହ୍ୱ । ସୀମା ସରହଦର ଶୃଙ୍ଖଳ ତାଙ୍କ ଇପ୍‌ସା ଓ ଅନୁଭବର ଅପରିସୀମ ବିଶୃଙ୍ଖଳା ଆଗରେ ତୁଚ୍ଛ ଓ ନଗଣ୍ୟ ।

ଦେହ ଏବଂ ବିଦେହ ହରିହରଙ୍କ କବିତାରେ ଦୁଇଟି ପରସ୍ପର ବିରୋଧୀ ଧାରଣା ନୁହେଁ । ଦେହ ବ୍ୟତିରେକେ ବିଦେହର କୌଣସି ରୂପ ନାହିଁ । ଅରୂପର ଅନୁଭବକୁ ମାଂସ, ରକ୍ତ, ସ୍ୱେଦ, ରେତ ଓ ଚୁମ୍ବନର ନିବିଡ଼ତା ଭିତରେ ହିଁ ପ୍ରକାଶ କରିବାରେ କବି ମାନସ ସବୁ ବେଳେ ଦୋଳାୟିତ ଏବଂ ଅନୁଭବ ପ୍ରତି ବିଶ୍ୱସ୍ତ । ତାଙ୍କ ଚିତ୍ରକଳ୍ପ ସେଥିପାଇଁ ବହୁ ଅର୍ଥଦ୍ୟୋତକ ହେଲେ ମଧ୍ୟ ପ୍ରଥମତଃ ଜୈବିକ । 'ଚିର ଶ୍ୟାମଳ ଭୂଇଁର ଜନନେନ୍ଦ୍ରିୟ'ରେ, 'ନାରୀର ଗର୍ଭ ଭଳି' ଦିଶୁଥିବା 'ପାହାଡ଼ ଖୋଲ'ରେ, 'ନୂଆ ଗ୍ରହର ଭ୍ରୁଣ'ରେ ବା ମାଂସ ହାଡ଼ ବିନ୍ଦୁ ବିନ୍ଦୁ ହୋଇ ମିଳେଇଯାଉଥିବା 'ମେଘ ପଟଳ'ରେ କିମ୍ବା 'ଲୁହର ଅନ୍ଧାରରୁ ଫିଟି ଆସୁଥିବା ଆଗାମୀ ସକାଳ'ରେ ତାଙ୍କ ସର୍ଜନା, ତାଙ୍କର ଅନ୍ୱେଷା ।

କବି ମୁଖ୍ୟତଃ ଆବେଗ ଓ ଅଭିମାନର ଚାହାଣି ମଣ୍ଡପରୁ ଦୃଷ୍ଟି ପହଁରେଇଛନ୍ତି ନିଜ ଉପରେ । ନିଜ ସ୍ମୃତିରେ, ଅବଶେଷରେ, ଲୁହ ବିନ୍ଦୁରେ, ପୁଣି ରାସ୍ତାରେ, ଛକରେ, ମନ୍ଦିରରେ, ସମୁଦ୍ରରେ । ପୁନଶ୍ଚ ନିଜକୁ ନିଜଠାରୁ ଦୂରେଇ ନେଇ ଚାହାଣି ମଣ୍ଡପରୁ ଦେଖିଛନ୍ତି, ନିଜର ପ୍ରତିବିମ୍ବକୁ ଆବିଷ୍କାର କରିଛନ୍ତି । ସବୁର ଉତ୍ସ ଖୋଜିଛନ୍ତି କେତେବେଳେ ଆହତ ଶିଶୁଟି ପରି—ଜରାୟୁ ଭିତରକୁ ଫେରି ପାରୁନଥିବା ମଣିଷ ଭଳି ସ୍ନେହଁ ପ୍ରବଣ ଅସହାୟତାରେ, ଅସହାୟତାର ସଚେତନତାରେ । ଅଠସ୍ତରୀରେ ପ୍ରକାଶିତ 'ଅକ୍ଷମ ଦେବତା' ସଙ୍କଳନର 'ସାର୍ବିକ କରୁଣା' କବିତାରେ ସେ କହିଛନ୍ତି ।

'ଚାହାଣି ମଣ୍ଡପରୁ ଯେତେଦିନ/ଦେଖୁଥିଲି ନିଜକୁ ହିଁ ଖାଲି/ଆଖିରେ ମୋ ଲାଗିନାହିଁ ବଡ଼ଦାଣ୍ଡ ଧୂଳି' (ପୃ-୬୪)

ଦୀର୍ଘ ଦଶବର୍ଷ ପରେ ସେଇ ଯୋଗସୂତ୍ରକୁ ନେଇ ସେ ଯୋଡ଼ିଛନ୍ତି ତାଙ୍କର ଏବକାର କାବ୍ୟ କୃତିରେ । ତାଙ୍କର ଏକ ସଙ୍କଳନର ନାମ 'ଚାହାଣି ମଣ୍ଡପ' । ଯା ଭିତର ଅୟୁତ ଧୂଳିର ବହଳ କାଟି ଅନୁଭୂତିର ଶଙ୍ଖନାଭିରେ ତରଙ୍ଗିତ ହୋଇ ପ୍ରସରି ଯାଇଛି ଚାହାଣି ମଣ୍ଡପର ପରିସୀମା, ଯେଉଁଥିରେ ସେ ନିଜେ ଦ୍ରଷ୍ଟା, ନିଜେ ଦୃଶ୍ୟ ।

ହରିହର ଶବ୍ଦସଜ୍ଜା ଏବଂ ଗଠନ ଶୈଳୀରେ ବହୁବିଧ ପରୀକ୍ଷା ମଧ୍ୟ ଚଳାଇ ଆସିଛନ୍ତି । ସଙ୍ଗୀତ ଓ ନାଟକ ସହ କବିଙ୍କର ସୃଜନଶୀଳ ଘନିଷ୍ଠତା ଏହି ପରୀକ୍ଷା ପାଇଁ ତାଙ୍କୁ ଯଥେଷ୍ଟ ଖାଦ୍ୟ ଯୋଗାଇଛି । 'କ୍ରନ୍ଦନ ଏକ ଯୁଗଳ ବନ୍ଦୀ'ରେ ନାଟକୀୟତା ଓ ସାଙ୍ଗୀତିକତାର ମିଶ୍ରିତ ଅବୟବ ଭିତରେ ପ୍ରକୃତରେ ଏକ ଯୁଗଳବନ୍ଦୀର ଭ୍ରମ ସୃଷ୍ଟି ହୋଇଛି । ତେବେ ଅପାରମ୍ପରିକ ହୋଇଥିବାରୁ ପାଠକ ମହଲରେ ଏହାର ସ୍ୱୀକୃତି ସନ୍ଦେହ ଜନକ । 'ବର୍ଣ୍ଣବୋଧର ଚିତ୍ରଲିପି', 'ଶ୍ୱେତପତ୍ରର ଲିପି' ଏଭଳି ଦୁଇଟି ପରୀକ୍ଷା ଧର୍ମୀ କବିତା । 'ଶ୍ୱେତ ପତ୍ରର ଲିପି' କବିତାଟିକୁ ଶେଷଆଡ଼ୁ ପଢ଼ି ଆସିଲେ କବିତାର ଅର୍ଥ ବା ପ୍ରଭାବରେ ଆପାତଃ କୌଣସି ପରିବର୍ତ୍ତନ ହେଲାଭଳି ମନେହୁଏ ନାହିଁ । 'କଳ୍କୀ' କବିତାଟି ଚିତ୍ରକାବ୍ୟ ପରମ୍ପରାର । ଛପା ଅକ୍ଷରରେ କବିତାର କଳେବର ଘୋଡ଼ା ଉପରେ କେହି ଜଣେ ସବାର ହୋଇଥିବା ଭଳି ଦୃଶ୍ୟ ହୁଏ ।

ଭିନ୍ନ ଭିନ୍ନ କାବ୍ୟ ଗ୍ରନ୍ଥରେ ଅନେକ କବିତା ସଙ୍କଳିତ ଯେଉଁଥିରେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଏବଂ ଘଟଣାର ବର୍ଣ୍ଣନା ରହିଛି । ଭାବ ଯେତେ ସାର୍ବକାଳିକ ହେଲେ ମଧ୍ୟ କବିଙ୍କର ସ୍ଥାନ ଓ ଘଟଣା ସହ ବ୍ୟକ୍ତିଗତ ଅନୁଭବଟି ଏତେ ଆନୁଗତ୍ୟ ସହ ଜଡ଼ିତ ଯେ କବିତାରେ ସେ କାବ୍ୟନାୟକକୁ ସେଥିରୁ ଉତ୍ପାନ୍ତରିତ କରାଇବାକୁ ପସନ୍ଦ କରନ୍ତି ନାହିଁ । 'ଅକ୍ଷମ ଦେବତା' ସଙ୍କଳନରେ 'ଗଞ୍ଜୁଆ', 'କାଳିଜାଇ', 'ଲାଲକଢ଼ର ତପସ୍ୟା'ରେ 'କଲିକତା ହେ ଚିର ପ୍ରବାସ' ଏବଂ 'ଚନ୍ଦ୍ରବିମ୍ବ'ରେ 'ସ୍ୱର୍ଗଦ୍ୱାର ଚେକ୍‌ପୋଷ୍ଟ' ଏହିଭଳି କେତୋଟି ଦୃଷ୍ଟାନ୍ତ । ବହୁ କବିତାରେ ପୁରୀ ସହରର ଭିନ୍ନ ଭିନ୍ନ ସ୍ଥାନ ଓ ଜଗନ୍ନାଥ ମନ୍ଦିର ସମ୍ପର୍କିତ ଶବ୍ଦ ଦେଖିବାକୁ ମିଳେ । ତେବେ ଏହି ପ୍ରକାର ଶବ୍ଦ ଚୟନରେ କବିତାର ପରିସର ସଙ୍କୁଚିତ ହୋଇ ଯାଇଥିବା ଆଶଙ୍କା କରିବା ଏକ ଭ୍ରାନ୍ତ ଧାରଣା ।

ଲୋକକଥା ଓ ଢଗ ଢମାଳୀରୁ ବହୁ ଖିଅ ନେଇ କବିତାରେ ଖୁବ୍ ଚତୁରତାର ସହ ସେ ତାର ପ୍ରୟୋଗ କରିଛନ୍ତି । ଯାହା ଫଳରେ ବହୁ ଗଭୀରତତ୍ତ୍ୱ, ଦର୍ଶନ, ଜିଜ୍ଞାସାକୁ ସେ ଜନଜୀବନ ଓ ଚଳଣି ସହ ସମ୍ପର୍କିତ କରି ପାଠକର ନିକଟବର୍ତ୍ତୀ ହୋଇପାରିଛନ୍ତି । 'ନାଭିଚ୍ଛେଦ'ରେ 'ଏଇ କଥାକୁ/ଚାହିଁ ବସିଛୁ କଲିକତାକୁ', 'କନ୍ଦର୍ପ'ରେ 'ବାୟାର କି ଯାଏ ଆସେ ବସା ଝୁଲୁଥାଏ', 'ପକ୍ଷିଣୀ ବିନ୍ୟାସ ପରଲୋକ ପାଇଁ'ରେ କଣ୍ଟାଟିଏ ତଣ୍ଟିତଳେ ରଖିଥିବା ବାଘ ଏବଂ ବଗୁଲୀର ଗପ, 'ଧର୍ମଘଟ'ରେ 'ରକତ ଟଳମଳ ଖଇର ପାଞ୍ଚ ପଳ'

ପରି ଅନେକ ଉଦାହରଣ ଭିନ୍ନ ଭିନ୍ନ କବିତାରୁ ନିଆଯାଇପାରେ । ଏ ସମସ୍ତରେ ଲୋକକଥା ଓ ଢଗ ମାନଙ୍କୁ ସାମାନ୍ୟ ପରିବର୍ତ୍ତିତ କରି ଭିନ୍ନ ଭିନ୍ନ ପ୍ରାସଙ୍ଗିକାରେ ଖଞ୍ଜି କବିତାର ଭାବ ଓ ଶିଳ୍ପର ଶ୍ରୀ ବର୍ଦ୍ଧିତ କରାଯାଇଛି ।

କ୍ଷୁଦ୍ର କବିତା ମାନଙ୍କରେ ହରିହରଙ୍କ ଛନ୍ଦ ଓ ଗୀତିମୟତା ଏତେ ଶୃଙ୍ଖଳିତ ସେ ମୁକ୍ତ ଛନ୍ଦର କବିତା ମାନଙ୍କରେ ଥିବା ଦର୍ପିତ ସ୍ୱାଧୀନତା ସେଇ କବିଙ୍କର ଲେଖନୀ ପ୍ରସୂତ ବୋଲି ବିଶ୍ୱାସ ହୁଏ ନାହିଁ । କ୍ଷୁଦ୍ର କବିତାର ସମାହାର 'ଚନ୍ଦ୍ରବିମ୍ବ' ସଙ୍କଳନରେ ରୋମାଣ୍ଟିକ ଭାବୋଚ୍ଛ୍ୱାସ, ପ୍ରେମପ୍ରଣୟ, ଆତ୍ମକଥନ ଆଦି ପ୍ରାୟତଃ ପାରମ୍ପରିକ ଶୈଳୀରେ ରଚିତ । ଏହି କବିତା ଗୁଡ଼ିକରେ ଶେଷ ପଂକ୍ତି ସବୁ କବିତ୍ୱପୂର୍ଣ୍ଣ ଏବଂ ଶକ୍ତିଶାଳୀ । ଏଇ ପରିପ୍ରେକ୍ଷୀରେ 'ପାଶୋର' କବିତାର ଶେଷ ଦୁଇଧାଡ଼ି ଉଦ୍ଧୃତ କରାଯାଇପାରେ :

'ତୁମର ମୁଠାଏ ହସ ମନରେ ମୁଁ କବର କରିଛି/ମୋହର ଦି ଟୋପା ଲୁହ ତା ଉପରେ ଫୁଲପରି ଅଛି' (ଚନ୍ଦ୍ରବିମ୍ବ, ପୃ-୩୯)

ହରିହରଙ୍କ କବିତାରେ ସମସାମୟିକ ସମାଜ ଚିତ୍ର ଖୋଜିଲେ ତାହା କେବଳ ଯେ କାବ୍ୟ ପୁରୁଷର ଅନ୍ତର୍ଦୃଷ୍ଟିରେ ଆଂଶିକ ଭାବେ ପ୍ରତୀକିତ ହେବାର ଦୃଷ୍ଟାନ୍ତ ମିଳେ ତାହା ନୁହେଁ, କେତେକ କବିତାରେ ଅବକ୍ଷୟମାଣ ସଂସ୍କୃତି ଓ ସମାଜର ଚିତ୍ର ଖୁବ୍ ପ୍ରାଞ୍ଜଳ । 'ଗୋବିନ୍ଦ ଚନ୍ଦ୍ର' କବିତାରେ ଆଧୁନିକ ଯୁବଜୀବନର ଲକ୍ଷ୍ୟହୀନତା ପ୍ରତି ସମବେଦନା ଓ ଅପସଂସ୍କୃତି ପ୍ରତି ବ୍ୟଙ୍ଗଦୃଷ୍ଟି ତୀକ୍ଷ୍ଣ ଭାବରେ ବ୍ୟଞ୍ଜିତ ହୋଇଛି ।

'ପୁଅ ରାସ୍ତା ମଝିରେ ସାଙ୍ଗ ମେଳରେ/ବାଟ ମାରଣା ଷଣ୍ଢର ସିଫିଲିସ୍‌ରେ/ଚାନ୍ଦା କରି ମଇଲମ ବୋଳେ/ଗାଈ ପୁଅର କାନ୍ଧ ଚାଟିଦିଏ' (ଅକ୍ଷମ ଦେବତା, ପୃ-୧୦୮)

ତେବେ ସମାଜଧର୍ମୀ ବାସ୍ତବତା ବା ବ୍ୟଙ୍ଗ ହରିହରଙ୍କ କବିତାର ଏକ ଗୌଣ ବିଭାବ । ମୁଖ୍ୟତଃ ତାଙ୍କ କବିତା ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ଏବଂ ମାନବ ସଭ୍ୟତା, ଇତିହାସ ତଥା ବ୍ୟକ୍ତିଗତ ଜୀବନକୁ ଦୋହଲାଇ ଦେଉଥିବା ଅନୁଭୂତି ଉପରେ ପର୍ଯ୍ୟବସିତ । ହୁଏତ ସବୁ କ୍ଷେତ୍ରରେ ସେ ଆବେଗ ସହ ଶୈଳୀର ଅନୁପାତକୁ ସଠିକ୍ ଭାବେ ନିର୍ଣ୍ଣୟ କରିପାରି ନାହାଁନ୍ତି । ତେବେ ସତ୍ୟାନ୍ୱେଷଣରେ କବିର ଏହା ଏକ ଅନ୍ତସ୍ଫୂର୍ତ୍ତ ନିଃସହାୟତା । ଏହି ନିଃସହାୟତାର ସ୍ୱର ହିଁ କବି ପ୍ରାଣର ସ୍ୱର । ପ୍ରାଣର ସ୍ୱର କବିତାର ଶବ୍ଦ ଉପରେ ସମ୍ପୂର୍ଣ୍ଣ ଆଶ୍ରା କରେ ନାହିଁ । ତାହା କବିତାର ସାମଗ୍ରିକ ପ୍ରଭାବରୁ ହିଁ ଆସିଥାଏ । ହରିହର ମଧ କବିତାର ସାମଗ୍ରିକ ସଫଳତାରେ ବିଶ୍ୱାସ କରିଛନ୍ତି । ଅନେକ ଦ୍ୱନ୍ଦ୍ୱ ଏବଂ ବୈପରୀତ୍ୟବୋଧର ଆବେଗିକ ଅବତାରଣା କରି ସେ ଏ ଯୁଗର ଅବକ୍ଷୟ ଓ ଭବିଷ୍ୟତର ଆଶା ଆକାଂକ୍ଷାକୁ ରୂପ ଦେଇଛନ୍ତି । ଚୂଡ଼ାନ୍ତ ଭାବେ ସେ ଜୀବନର କୌଣସି ସତ୍ୟ ନିକଟରେ ଅଟକି ଯାଇ ନାହାଁନ୍ତି ।

କୌଣସି ଦାର୍ଶନିକ ଆଭିମୁଖ୍ୟ ବା ବକ୍ତବ୍ୟକୁ ମୂଳପିଣ୍ଡ କରି ବା ପୌରାଣିକ ସିଦ୍ଧାନ୍ତକୁ ଆଶ୍ରା କରି ସେ ତାଙ୍କ କବିତାକୁ ସଙ୍କୁଚିତ କରିନାହାଁନ୍ତି । ତାଙ୍କ ମତରେ : 'କବିତାରେ କୌଣସି ଚୂଡ଼ାନ୍ତ ବାର୍ତ୍ତା ରହିପାରିବ ନାହିଁ । ପରିବର୍ତ୍ତିତ ଚୈତନ୍ୟରେ ସବୁ କିଛି ଆପେକ୍ଷିକ ସତ୍ୟ । ତଥାପି ସତ୍ୟାନ୍ୱେଷଣର ଆଧାତ୍ମିକ ବେଦନାରୁ ସୃଷ୍ଟି ହୋଇଛି ଚିରନ୍ତନ କବିତାର ଯାତ୍ରାରମ୍ଭ ।'(୪) ଏହି ଦୃଷ୍ଟିରୁ ତାଙ୍କ କବିତା ଭିତରେ ସାଧୁବାକ୍ୟ ବା ସିଦ୍ଧାନ୍ତ ଅପେକ୍ଷା ଉଦ୍‌ବେଳନ ବିଶେଷ ଭାବେ ପରିଲକ୍ଷିତ ହୁଏ ।

ସେ ଉଦ୍‌ବେଳନ ସୃଷ୍ଟି ଓ ସ୍ରଷ୍ଟା ମଧ୍ୟରେ ଥିବା ଏକ ସଂଯୋଗ ସେତୁ, ସେ ଅକ୍ଷମତା ଏକ ମଧ୍ୟବର୍ତ୍ତୀ ଯନ୍ତ୍ରଣାର ଉପାଦାନ । ନିର୍ବାସନ ବା ବିସ୍ଫୋରଣ, ପୁନର୍ଜନ୍ମ ବା ସମର୍ପଣ କେଉଁଟି ଅନ୍ତିମ ରଙ୍ଗ ଜାଣି ହୁଏନା । ବିଗତ ତିନି ଦଶକର କବିତାରେ ଥିବା ଆବେଗ, ଉଦ୍‌ବେଗ, ସଂଶୟ ଓ ଅନ୍ୱେଷା ଏକ ଦ୍ୱନ୍ଦ୍ୱମୟ ଅନୁଭୂତିରେ ବିନ୍ୟସ୍ତ । ହରିହରଙ୍କ କବିତା ସେଥିରୁ ଭିନ୍ନ ନୁହେଁ । ତେବେ ସେହି ଅନୁଭୂତିର କାବ୍ୟିକ ପ୍ରକାଶରେ ସୀତାକାନ୍ତଙ୍କ ପୌରାଣିକତା, ରାଜେନ୍ଦ୍ରଙ୍କ ନୀରବତା, ରମାକାନ୍ତଙ୍କ ରହସ୍ୟମୟତା, ସୌଭାଗ୍ୟଙ୍କ ବାସ୍ତବବାଦୀ ଚିତ୍ରମୟତା ପରି ହରିହରଙ୍କ 'ଆବେଗ ସିଦ୍ଧ ଉତ୍ସ-ମୁଖୀନତା' ଏକ ସମତାଳିକ ଯତିପାତ ।

ଅଧ୍ୟାପକ ଇଂରାଜୀ ବିଭାଗ
ଜୟପୁର, କୋରାପୁଟ

**ସହାୟକ ଗ୍ରନ୍ଥ :**

୧ । ଶ୍ରୀ ସଦାଶିବ ନନ୍ଦ, 'ଶଙ୍ଖନାଭି ଓ କବି ହରିହର ମିଶ୍ର', 'ଇସ୍ତାହାର', ସଂ: ଡଃ ନିତ୍ୟାନନ୍ଦ ଶତପଥୀ, ୧୯୭୯, ପୃ-୧୪୪; ୨/ ଶ୍ରୀଗୋକୁଳ ବିହାରୀ ମହାନ୍ତି, ଝଙ୍କାର-୨୭ ବର୍ଷ, ୯ମ ସଂଖ୍ୟା, ୩/ ଶ୍ରୀ ରାଜେନ୍ଦ୍ର କିଶୋର ପଣ୍ଡା, Fifty years of creativity, Sunday (13-19 April, 1986), P. 53, ୪/ ଶ୍ରୀ ହରିହର ମିଶ୍ର, 'ଆଧୁନିକ କବିତାରେ ''ଆଧୁନିକତା', ସମାବେଶ, ୩୧ ବର୍ଷ, ୩୪୧ ସଂଖ୍ୟା (ଶାରଦୀୟ ୧୯୮୯), ପୃ-୨୮୧ ।

(୧) ବିଶ୍ୱମୁକ୍ତି, (୨) ଅକ୍ଷପାଦରେ ପ୍ରକାଶିତ ।



# ଶଙ୍ଖନାଭି ଓ କବି ହରିହର ମିଶ୍ର

*ସଦାଶିବ ନନ୍ଦ*

ଆଧୁନିକ ଓଡ଼ିଆ କବିତା ରଚନାରେ ନିଜ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିବା ସଚ୍ଚିଦାନନ୍ଦ, ଗୁରୁ ପ୍ରସାଦ, ରମାକାନ୍ତ, ସୀତାକାନ୍ତ ତଥା ସୌଭାଗ୍ୟ ମିଶ୍ରଙ୍କୁ ବାଦ ଦେଲେ ସାମ୍ପ୍ରତିକ କାଳରେ ଯେଉଁ କେତେଜଣ ସ୍ରଷ୍ଟା କବିତା କ୍ଷେତ୍ରରେ ନିଜର ଲେଖନୀ ଚାଳନା କରି ପ୍ରତିଷ୍ଠିତ ହୋଇପାରିଛନ୍ତି, ସେମାନଙ୍କ ମଧ୍ୟରୁ କବି ହରିହର ମିଶ୍ର ଅନ୍ୟତମ । ତାଙ୍କ ସୃଷ୍ଟି ସମ୍ଭାର ବିପୁଳ ନ ହେଲେ ହେଁ ସୀମିତ ସଂଖ୍ୟକ ମଧ୍ୟ ନୁହେଁ । ତାଙ୍କର ପ୍ରକାଶିତ କବିତା ଗ୍ରନ୍ଥ ହେଉଛି 'ଶଙ୍ଖ ନାଭି' ଏଥିରେ ତାଙ୍କର କାବ୍ୟ ଜୀବନକୁ ପ୍ରତିଫଳିତ କରୁଥିବା ବିଭିନ୍ନ ସ୍ୱାଦର ୪୦ ଗୋଟି କବିତା ସ୍ଥାନ ପାଇଛି, ଆକୃତି ଦୃଷ୍ଟିରୁ ଏଥିରେ 'ପତଙ୍ଗ' ପରି କ୍ଷୁଦ୍ର କବିତା ସହିତ 'ଶଙ୍ଖନାଭି' ପରି ଦୀର୍ଘ କବିତା ମଧ୍ୟ ରହିଛି ।

ପୂର୍ବବର୍ତ୍ତୀ କାବ୍ୟ ଚେତନା ଓ କାବ୍ୟ ଶୈଳୀକୁ କବି ଅତି ସାବଧାନତାର ସହିତ ସମୀକ୍ଷା କରି ଏକ ଭିନ୍ନ ଶୈଳୀରେ ନିଜର କୃତିଗୁଡ଼ିକୁ ମଣ୍ଡିତ କରିଛନ୍ତି ତାହା ସଚେତନ ପାଠକ ଉପଲବ୍‌ଧି କରିପାରିବେ । ହରିହରଙ୍କ କବିତାରେ ସ୍ୱ ସଂସ୍କୃତିର ଚେତନା ଯେପରି ରହିଛି ସେହିପରି ରହିଛି ଆଧୁନିକ ସଭ୍ୟ ମନୁଷ୍ୟର ମାନସିକ କ୍ରିୟା ପ୍ରତିକ୍ରିୟାର ସଫଳ ରୂପାୟନ । ହରିହରଙ୍କ ବିଭିନ୍ନ କବିତା ମଧ୍ୟରେ ଆମେ ଖୋଜି ପାଇବା ଗୁରୁ ପ୍ରସାଦଙ୍କର କାବ୍ୟ ପୁରୁଷର ସେଇ ଅସହାୟ ତଥା ଯନ୍ତ୍ରଣା ପିଷ୍ଟ ରୂପକୁ; ଖୋଜିପାଇବା ରମାକାନ୍ତଙ୍କ କାବ୍ୟ ନାୟକର ଆତ୍ମ ଉପଲବ୍‌ଧିମୂଳକ ଦୁଃଖ, ଅନୁଶୋଚନା ତଥା ସର୍ବଗ୍ରାସୀ ମୃତ୍ୟୁର ସ୍ୱରୂପକୁ । ଏହା ବ୍ୟତୀତ ସୀତାକାନ୍ତଙ୍କ କାବ୍ୟର ଭାରତୀୟ ସଂସ୍କୃତି ସଚେତନାର ସ୍ୱରୂପ ମଧ୍ୟ ମିଶ୍ରଙ୍କ କବିତାରେ ସ୍ପଷ୍ଟ । ନିଜ କବିତା ଗୁଡ଼ିକରେ ହରିହର ଏହି ତିନି କବିଙ୍କ କାବ୍ୟ ଚେତନାର ସଫଳ ସମନ୍ୱୟ ଘଟାଇ ପାରିଛନ୍ତି । କବିଙ୍କ କାବ୍ୟ ମାନସଟି, 'ସଚେତନ ଶିକ୍ଷା ସହ ଅଚେତନ ସଂସ୍କାର ତଥା ସଂସ୍କୃତିର ସଂଘର୍ଷରୁ ଆଗତ ଏକ ଆପାତଃ ବିବର୍ତ୍ତନକାଳୀନ ଭାବ ଚୈତନ୍ୟ, ସଙ୍କଟର ଅନ୍ଧକାର ଗୋହିରୀରେ ବାଟବଣା ସ୍ରଷ୍ଟାର ବିଭ୍ରାନ୍ତ ଭୀତ-ମାନସ ଏକ ଶିଶୁ ଭଳି ଅଣ୍ଡାଳି ଖୋଜିଛି ତା'ର ହୃଦ୍ ଚୈତନ୍ୟ, ତା'ର ଜାତୀୟ ଭାବ ମାନସର

ପରମ୍ପରା ସହିତ ଯୋଗସୂତ୍ର ତଥା ସମନ୍ୱୟର ଦ୍ୱାରଟି ।' (୧) ତେଣୁ ତାଙ୍କର କବିତା ଗୁଡ଼ିକରେ ଆଧୁନିକତା ସହିତ ପରମ୍ପରାର ଏକ ମଧୁର ସମନ୍ୱୟ ଘଟିଛି ।

ବର୍ତ୍ତମାନ ଆଲୋଚନାର ସୁବିଧା ଦୃଷ୍ଟିରୁ ପ୍ରଥମେ ଶ୍ରୀ ମିଶ୍ରଙ୍କ କବିତା ଗୁଡ଼ିକର ଭାବ ସମ୍ପଦର ଅବବୋଧ ନିମନ୍ତେ ସାମାନ୍ୟ ଚେଷ୍ଟା କରାଯାଉଛି । କବିତା ('ଶଙ୍ଖନାଭି' ପୁସ୍ତକରୁ) ଗୁଡ଼ିକର ପାରସ୍ପରିକ ଆଲୋଚନା ଦ୍ୱାରା କବି ମାନସର ବିଭିନ୍ନ ଅବସ୍ଥାର ଅବବୋଧ ନିମନ୍ତେ ପ୍ରୟାସ କରାଯାଇଛି । ପ୍ରଥମ କବିତା 'ଶଙ୍ଖନାଭି'ର ସ୍ୱର କବିଙ୍କର ଅନ୍ୟ କେଉଁ କବିତାରେ ଅନୁରଣିତ ତାହାର ସୂଚନା ପାଇଁ 'ଶଙ୍ଖ ନାଭି'ଠାରୁ ହିଁ ଆଲୋଚନା କରାଯିବାର ଚେଷ୍ଟା ହୋଇଛି ।

କବିଙ୍କ କାବ୍ୟ ନାୟକ ମନରେ ରହିଛି ନିଜର ସଂସ୍କୃତିର ଭାବ ଏବଂ ତାରୁଣ୍ୟର ରୋମାଣ୍ଟିକ୍ 'କେତେକା'ର ବ୍ୟତିବ୍ୟସ୍ତ କାଚ ରୁଣୁ ଝୁଣୁ' ଆବେଗ ମଧ୍ୟରେ ବୌଦ୍ଧିକ ସାଲିସ୍‌ପାଇ ସାମର୍ଥ୍ୟହୀନତା ଜନିତ ଯନ୍ତ୍ରଣାର ଏକ ମିଶା ମିଶି ପ୍ରତିକ୍ରିୟା । ସେ ଜାଣେ 'ମୁଁ ନିଶ୍ଚିତ ମରୁ ଓଟ ବେକ ଟେକି ଦେଖୁଅଛି ଦୃଶ୍ୟ/ଆଦର୍ଶର କୁଜ ରଖି ପିଠି ପଟେ ସେମିତିକା ବୁଲୁଅଛି ଖାଲି ।' ତେଣୁ ତା'ର ଚେତନା ଓ ମାନସ ଭୂମିରେ ଅନିଶ୍ଚିତତାର ଅଁଥର୍ବତା । ସେ ଖାଲି ଖୋଜେ ଅନ୍ୟ କାହା ଚାହାଣୀରେ ତାର ପକ୍ଷାଘାତ ହଂସ-ବେକ ମାଲିସ୍ ହୋଇଉଠୁ । ସେ ନିଜେ ନିଜର ଛାଇର ମୁଣ୍ଡରେ ଠିଆ ହୁଏ । ମଦଗ୍ଲାସ୍ ମଧ୍ୟରେ ମନର ନିଶାକୁ ଖୋଜେ । କବିତା ନିଜ ଉପରେ ଲଟେଇଯାଏ । ନିରାଶାର ବେଳାଭୂମିରେ ଆଶାର କୋଣାର୍କ ପାଇଁ ତା' ମନକୁ ଆସେ ବିଭିନ୍ନ ଉପାୟ । ମନ ଲମ୍ବିଯାଏ ସୂଦୂରର ରହସ୍ୟମୟୀ ତନ୍ତ୍ର ନାୟିକା ପାଖକୁ । ପୁଣି ମନ ଚାହେ ଯୋଗର ନାୟିକା କୁଣ୍ଡଳିନୀ ଶକ୍ତିକୁ ଉଠାଇବାକୁ । ତଥାପି ବି ଭଗ୍ନ ସ୍ୱାସ୍ଥ୍ୟ କୋଣାର୍କର ଚୂଳ ମାରିବାପାଇଁ ମନ ଅପେକ୍ଷା ରଖେ ସେଇ ବିଦ୍ୟୁତର ଶିଶୁକୁ ବା ଧର୍ମପଦକୁ । 'ଅଧା ଥିବା ଦେଉଳର ଚୂଳ ମାରିବାକୁ/କେଉଁଠୁ ଆସନ୍ତା ସେଇ ବିଦ୍ୟୁତର ଶିଶୁ/କିଏ ସେ ସହନ୍ତା ମୋର ସମ୍ଭାବନା ଗର୍ଭ ବେଦନାରେ'-(ପୃ,୩) । କାବ୍ୟ ପୁରୁଷ ଏଠି ସମ୍ପୂର୍ଣ୍ଣ ରୂପେ କଳ୍ପନାକୁ ଆଶ୍ରୟ କରି ନିଜର କ୍ରିୟା ଓ ପ୍ରତିକ୍ରିୟା ପ୍ରକାଶ କରିଛି । କ୍ରମଶଃ ତଥାକଥିତ ଧର୍ମର ଆଳୟ ମଠ ମଧ୍ୟରେ କବି ମାନସ ଅତିଷ୍ଠ ହୋଇ ଉଠିଛି । ପାଖର ସମୁଦ୍ରର ଆହ୍ୱାନ ବି ମିଛ ହୋଇଯାଇଛି । ନାୟକ ଜାଣିପାରୁନି ନିଜେ କିପରି ବିଚ୍ଛିନ୍ନ ହୋଇଛି ସମୁଦ୍ରରୁ ଆକାଶରୁ ଏବଂ ଶେଷରେ ଏଇ ପୃଥିବୀରୁ । ସେ ସମସ୍ତଙ୍କ ମେଳରେ ଥାଇ ବି ଏକୁଟିଆ । ମଠର ଚଟାଣରେ 'ଗୋଟି ପୁଅଙ୍କ'ର ନାଚ ଯେପରି ମଠର ଛାତି ଦଳି ଦେଉଛି, ପୋଷିତ ସମସ୍ତ ବଗ, ବଣି, କପୋତ, ଶୁଆ ଓ ସିପେଇ ଏଠି ନିର୍ଜୀବ ସୋଲ । ନାୟକ ଏଠି ରହିଯାଏ କେବଳ ଛଞ୍ଚାଖିଆ ମୁଣ୍ଡିତ ବ୍ରାହ୍ମଣ ହୋଇ । ଯେପରି କେବଳ ଛଞ୍ଚା ହିଁ ତା'ର ପ୍ରାପ୍ୟ ।

ଗୋଟିପୁଅଙ୍କର ନାଚ, ଲା'ରେ ଲା'ପା ଗୀତ ସବୁ କିଛି ସେ ଦେଖେ ଓ ଶୁଣେ ଗୋଟିଏ କଣ୍ଢେଇ ପରି; କୁଢ଼ କୁଢ଼ ବାଲୁକା ସ୍ତୂପର ଉହାଡ଼ରୁ ଯେମିତିକା ବୁଡ଼ି ଯାଉଥିବା ଜହ୍ନ ଦେଖେ ଏ ପୃଥିବୀକୁ ଗୁଡ଼ାଏ ଅତୁଆ ସୂତା ମଧ ଦେଇ । ଏହି ଅସ୍ପଷ୍ଟ ମାନସିକତା ମଧ୍ୟରୁ କବି ନିଜକୁ ପ୍ରକାଶ କରିବାକୁ ଚାହାନ୍ତି । ତେଣୁ ତାଙ୍କର ପ୍ରଶ୍ନ 'ହେ ପ୍ରଭୁ, ବିଚ୍ଛିନ୍ନ ହେଲି କେମିତି ମୁଁ; ଧର୍ମ ଆଉ ତୁମଠାରୁ କହ ।' ଏକା ଏକା ବଞ୍ଚିବାର ଉପାୟ ସେ ଖୋଜୁଛନ୍ତି । ବଞ୍ଚିବାର ଉପାୟ ନାହିଁ । ଗଣିକାର ସାହିରେ ଫୁଲ ତାଙ୍କ କଟେନା । ପାପଗ୍ରସ୍ତ ମନରୁ ପାପ ଛଡ଼ାଇବାକୁ ଚେଷ୍ଟା ହୁଏ ବିଫଳ । ପରମ୍ପରା ଓ ସଂସ୍କୃତିର ସମସ୍ତ ଘଟଣା ତାଙ୍କର ମନରେ ଆଘାତ ଦିଏ । ଏ ସଂସ୍କୃତି ତାଙ୍କର ଏକାନ୍ତ ବ୍ୟକ୍ତିଗତ ମନର । ଅବକ୍ଷୟୀ ଓଡ଼ିଆ ସଂସ୍କୃତିର । ତେଣୁ ହୁଏତ ଏହାର ଆବେଦନ କିଛିଟା ସଙ୍କୁଚିତ ହୋଇଯାଇ ପାରିଥାଏ । ସମାଜର ପୂଜା, ପର୍ବ, ଓଷା, ବ୍ରତ, ରୂପକଥା ପ୍ରତି ତାଙ୍କର ରୋମାଣ୍ଟିକ ମୋହ ଏବଂ ଆଧୁନିକ ମାନସର ତା' ପ୍ରତି ପରାଙ୍ମୁଖତା; ଏହା ମଧ୍ୟରେ ଚେତନା ତାଙ୍କର ଦ୍ୱିଧାଗ୍ରସ୍ତ । ତେଣୁ ସେ କହନ୍ତି 'ମୁଁ ଆସୁଅଛି ଖୋଜି ଖୋଜି ଏଣୁ ତେଣୁ ଅନେକ ଗୋଟାଇ × × × ସ୍ମୃତିର ଗଞ୍ଜପା ଧରି ଖେଳାଉଛି/ ଗଣି ଗଣି ସବୁ ମୁଁ ମୋର ।' (୫ମ ପୃଷ୍ଠା) କବି ମନ ଶେଷରେ ଖୋଜିଛି ସେଇ ପୁରାତନକୁ । ତେଣୁ ଅନୁରୋଧ କରିଛନ୍ତି, 'ଆରେ ତମେ ଗୀତ ଗାଅ ସେ ସବୁର ସଞ୍ଜ ଅନୁରଣ/ଆମେ ସବୁ ସେ ଶବ୍ଦର ମହୁମାଛିଙ୍କର' । (ପୃ.୬) ସଭ୍ୟତାର ଗ୍ରାସରେ କବି ଦେଖିଛନ୍ତି ସବୁ ଚେଷ୍ଟା ବିଫଳ ହୋଇଛି । ତେଣୁ ପୁଣି ଏକ ମଧ୍ୟପର୍ବର ଅପେକ୍ଷାରେ ସେ ସ୍ଥିର ଏବଂ ମାଦଳ ଚେତନା ତାଙ୍କର ଗୁମୁରି ଉଠେ । ତନ୍ୱୀ ମାହାରୀର ନାଚ ଓ ପଖଜ, ଖଞ୍ଜଣି ଓ କୃଷକ ବା ଭୋଇଙ୍କର ସଙ୍ଗୀତ ମୂର୍ଚ୍ଛନାରେ ମିଶିଯିବାକୁ ଚାହାନ୍ତି । ସଂସାରରୁ ପାରିହୋଇ ପ୍ରାଣ ତାଙ୍କର ଶୂନ୍ୟରେ ନୀରବ ହୋଇଯିବାକୁ ବ୍ୟାକୁଳ ହୋଇଉଠେ । ଜନ୍ମଠାରୁ ବର୍ତ୍ତମାନ, ଗ୍ରାମ ପରିବେଶର ସମସ୍ତ ସଂସ୍କାର ଓ କୁସଂସ୍କାରର ପ୍ରଭାବ ସହିତ ବର୍ତ୍ତମାନର ବୁଦ୍ଧିଦୀପ୍ତ ମନର ସଂଘର୍ଷ ତାଙ୍କୁ ବିଚଳିତ କରାଏ । ଶ୍ରୀମନ୍ଦିରର ଚକ୍ର ଓ ପତାକା ଚୂଳହୀନ କୋଣାର୍କ ଓ ଗୌରବର ସମସ୍ତ କାମନା ସତେ ଯେପରି ତାଙ୍କରି ଆଗରେ ଏ ସମୁଦ୍ର ହିଁ ଭିଡ଼ି ନେଇ ସାଇତି ରଖିବ । (୮ପୃ)

ଏଠି କବିଙ୍କର ମନ ଈଶ୍ୱରଙ୍କ ମଧ୍ୟରେ ଓ ନିଜ ମଧ୍ୟରେ ଥିବା ସୂତ୍ରକୁ ସନ୍ଧାନ କରୁଛି । ସବୁ ଘଟଣା ଓ ଦୁର୍ଘଟଣା ଏକ ହୋଇଯାଇଛନ୍ତି । କବିତାରେ କବିଙ୍କର ଏହି ଭାବର ସ୍ୱରୂପ 'ଏ କି ସ୍ୱର... ଏକ ନାଦ × × × ସ୍ତୋତ୍ର ଅବା ମାଳଶ୍ରୀ ଛାନ୍ଦର' (ପୃ-୯) ପଂକ୍ତିରୁ ଜାଣି ହୁଏ । ନୀଳାଚଳର ସମୁଦ୍ର ହିଁ ସବୁ ଘଟଣାର ଶେଷସତ୍ତାର ସାକ୍ଷୀ । ସବୁ ଶବ୍ଦର ଏକମାତ୍ର ଅଭିଧାନ । ତଥାପି ସମନ୍ୱିତ ପ୍ରାର୍ଥନାର ସ୍ୱର ଉପରେ କବିଙ୍କର ସନ୍ଦେହ ହୋଇଛି । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଯୋଗସୂତ୍ର ବିଚ୍ଛିନ୍ନ ହୋଇଥିବାରୁ ବୋଧହୁଏ ଏହି ପ୍ରାର୍ଥନା ସବୁ ହେଉଛି

ବୋଲି କବି ଭାବିଛନ୍ତି । ସମୁଦ୍ର ମଧ୍ୟରୁ ସବୁ ଘଟଣାର ମୂଳ ସୂତ୍ର ଖୋଜା ଯାଇପାରେ ବୋଲି କବିଙ୍କର ଆସ୍ଥା ରହିଛି । ଏ ସମୁଦ୍ର ପାରି ହୋଇ କବି ଆଗେଇଯିବାକୁ ଚାହାନ୍ତି ଅନ୍ୟ ଏକ ପାରିକୁ । ଏ ମାୟା ଆଲୋକ ତାଙ୍କୁ ଆଉ ଅଟକାଇ ରଖି ପାରିବନି ବୋଲି ସେ ଚାହାନ୍ତି । ତେଣୁ ସେ (ବ୍ରାହ୍ମଣ କୁମର) ପାହାଡ଼ର ଜଂଘ ଖୋଲରେ ଥିବା ସୂର୍ଯ୍ୟଙ୍କୁ ନିଜର ତାଳପତ୍ର ଛତାରେ ଘୋଡ଼ାଇ ତା'ର ମାୟା ରଶ୍ମିକୁ ବିଲୁପ୍ତ କରି ଦେଇ ଅନ୍ଧାର ପାଖକୁ ଚାଲିଯିବାକୁ ଚାହାଁନ୍ତି । ଅନ୍ଧାର ସହିତ ଏକାତ୍ମ ହେବା ତାଙ୍କର ଇଚ୍ଛା । ସେ ଅନ୍ଧାର କିନ୍ତୁ ଅନ୍ତହୀନ ମୃତ୍ୟୁ ନୁହେଁ, ସେଠି ଜୀବନର ଅନ୍ତହୀନ ସମ୍ଭାବନା ଅଛି ।

'ମୁଁ ଏକ ଉତପ୍ତ ଅନ୍ଧାର/ମୁଁ ଝରିଛି ଟୋପା ଟୋପା/ସ୍ତନରୁ ତାରାର', ଏ ଟୋପା ଟୋପା ତାରା ତାଙ୍କ ପାଇଁ ଅମୃତ । ଏହା ହିଁ ତାଙ୍କର ଆଲୋକ । ମାତ୍ର ଏ ମାଟିରେ ତାହାର ପରିଣତି ଅନ୍ଧାର ଭିତରେ ବିଡମ୍ବିତ । କିନ୍ତୁ ସେଥିରେ ଅଛି ଉଷ୍ମତା । ଅଛି ଅସ୍ତିତ୍ୱ ।

'କୋରସ' କବିତାରେ ନିଜର ଉଜୁଡ଼ି ଯାଉଥିବା ସଭ୍ୟତାକୁ ଲକ୍ଷ୍ୟ କରି କବି ସେହିପରି ସଂସ୍କୃତିର ରକ୍ଷକ ତଥା ଧର୍ମ ପୁରୋଧାମାନଙ୍କୁ ବ୍ୟଞ୍ଜନା କରି ଲେଖିଛନ୍ତି, 'ବଡ଼ ପଣ୍ଡେ ବଜାଅ ପଖଜ ଧୀରେ/ଶିଶୁଟିଏ ଶୋଇଛି ମୁଁ ସହରର ଶଙ୍ଖନାଭି ତଳେ' ଲକ୍ଷ୍ୟ ଓ ପଥଭ୍ରଷ୍ଟ ପୁରୋଧାମାନେ ହିଁ ସଂସ୍କୃତିର ଅବନତି ପାଇଁ ଦାୟୀ । ଏହି ଘଟଣାରୁ କ୍ଷୋଭଜନିତ ପିପାସାରେ କାବ୍ୟ ନାୟକର ତଣ୍ଟି ଶୁଖିଛି । ଜଳର ସନ୍ଧାନରେ ତାଙ୍କର ପ୍ରଶ୍ନ ହୋଇଛି-'ଆଉ କେତେବେଳେ ଦି' ପହର/ତଣ୍ଟିରେ ଶୁଖିଛି ନଈ... କେତେ ବାଟ ଦିଶେ ନିଶାତଳ' । କବିତାଟିର ବିଭିନ୍ନ ପର୍ଯ୍ୟାୟରେ କବି ଏହି ବୟଃଜ୍ୟେଷ୍ଠ ପୁରୋଧାମାନଙ୍କର କାର୍ଯ୍ୟକଳାପକୁ ନିରୀକ୍ଷଣ କରିବା ସହିତ କିଛି ପରିବର୍ତ୍ତନ ଘଟିବାପାଇଁ ଅନୁରୋଧ କରିଛନ୍ତି ଓ ପୁଣି ନିଜେ କିଛି କରିବା ପାଇଁ ସେମାନଙ୍କ ଠାରୁ ଆଜ୍ଞା ତଥା ବର ଭିକ୍ଷା କରିଛନ୍ତି । ତାଙ୍କ ଭିକ୍ଷା ହେଲା, 'ମତେ ମିଳୁ ଅଷ୍ଟପଦୀ ମୃଗଠାରୁ ଶତକୋଟି ଇନ୍ଦ୍ରିୟର ବଳ' ଫଳରେ ସେ ଚଉଦ ଯୋଜନ ବାଟ ଚାଲିପାରିବେ ସୃଜନ କ୍ଷେତ୍ରରେ କିଛିଟା ପରିବର୍ତ୍ତନ ହୋଇପାରିବ । ତେଣୁ ସେ ଅଘଟଣ ପ୍ରତି ବୋଧହୁଏ କହିଛନ୍ତି :-

'ରହେ କି ରାଜେନ୍ଦ୍ରାସନ ରହେ କି ଫକୀର
ତେଣୁ ଏତେ ବ୍ୟସ୍ତ କିଆଁ ପିନ୍ଧିବାକୁ ବେଶ ।'

ଅନ୍ୟ ଏକ ଆଲୋକର ଓ ଅନ୍ୟ ଏକ ଶକ୍ତିର ସନ୍ଧାନରେ ପଳାୟମାନ ଏହି ସଚେତନ କବି ମାନସଟି ପରମ୍ପରା ଓ ପ୍ରବାସରୁ ଆଗତ ବିଭିନ୍ନ ଜଟିଳ ମାନସିକ ସିଦ୍ଧାନ୍ତ ମଧ୍ୟରେ ଅତି ଅସହାୟ ହୋଇ ଦୋଳାୟିତ ହୋଇଛି । ମାନସ କୁଞ୍ଜରେ ତା'ର ବିଭିନ୍ନ ରାଗର ରାଗିଣୀ, ସେ ସମୀକ୍ଷା କରିବାକୁ ଚାହିଁଛି ନିଜର ଜନ୍ମଦାତ୍ରୀକୁ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ । ମାତ୍ର

ସିଦ୍ଧାନ୍ତରେ ପହଞ୍ଚି ପାରିନାହିଁ । ଚିରନ୍ତନୀ ନାରୀଟି ସେହିପରି ତାଙ୍କ ପାଖରେ ଅବୋଧ । ନିଜେ ସେଠାରେ କାବ୍ୟ ପୁରୁଷ ଏକ ବାଧ ଛୋଟ ଶିଶୁଟିଏ । ସେ ତାଙ୍କ କଣ୍ଢେଇ ହୋଇ ଥେଇ ଥେଇ ନାଚ କରନ୍ତି । ବୋଉ ତାଙ୍କ ଝିଅଟି ଭଳି ହସି ହସି ତଳେ ଲୋଟିଯାନ୍ତି । ଏହି ଘଟଣାର ସ୍ମୃତି ଆଖିରେ ତାଙ୍କର ଲୁହ ଆଣେ । ଅପର ଜିଲ୍ଲାରେ ସୀମାକାଟି ବହି ଯାଉଥିବା ନଈର ତଟରେ ସେ ଉଦାସ ଆଖିରେ ଚାହିଁ ରହିଥାନ୍ତି । କବି ଏ ଚାହାଣୀକୁ ଏକ ଅଦ୍ଭୁତ ଚିତ୍ରକଳ୍ପ ଦେଇ ପ୍ରକାଶ କରିଛନ୍ତି । ଏହି ପଂକ୍ତିଟି ଉଦ୍ଧାର କରାଯାଇପାରେ ।

ଆଣ୍ଠୁ ଭାଙ୍ଗି ପଡ଼ିଥିବା ସେ ନଈର ପଦତଳେ ଓଦା ଓଦା ପଥର ପିଠିରେ
ଝୋଲାମାରି ବହୁକାଳ ଦୁଧଖିଆ ପାଣି ଧଣ୍ଡଟିଏ
ଜୁଳୁ ଜୁଳୁ ହୋଇ ଦେଖେ.... ଉତ୍ତୀର୍ଣ୍ଣ ବର୍ଷାର ଏକ ଶୂନ୍ୟ
ଦି ପହରେ, ଡାକ ଶୁଭେ... ।

(ବେଢ଼ା ପରିକ୍ରମା ବୋଉ ସହିତ)

କବି ମନର ସଚେତନ ମନ୍ଦିର ବେଢ଼ାରେ ଏହି ବିଭିନ୍ନ ଚେତନା ଅଟକି ଯା'ନ୍ତି । ନିଜର ଚିର୍ଜେରାରେ କବି ନିଜେ ଡରିଯାନ୍ତି । ସ୍ୱ ସଂସ୍କୃତିର ଝାମ୍ପରୁ କବି ବାହାରି ପାରିନାହାନ୍ତି । ତେଣୁ ସେ ପ୍ରକାଶ କରିଛନ୍ତି 'ଘ' (ସଂସ୍କୃତିର) ରକ୍ତର ହାନିଲାଭ... ଯାନିଯାତ୍ରା ଆଡ଼ମ୍ବଡ଼ା କଲେ ମୋ ବେଢ଼ାର ଶୂନ୍ୟ ଅଗଣାରେ', (ପୃ-୧୧) କବିଙ୍କର ଏ ପ୍ରକାର ଅନୁଭୂତି ଏକାନ୍ତ ଭାବେ ବ୍ୟକ୍ତିଗତ ହୋଇ ଉଠିଥିବାରୁ ତାହା ବୁଝିବାରେ ଅନ୍ୟ ନିକଟରେ ସାମାନ୍ୟ ଅବୋଧ ହୋଇ ଉଠିଛି, ମାତ୍ର କବିତାର ବ୍ୟଞ୍ଜନାଟି ଯେ କବି 'ବୋଉ'ଙ୍କ ପ୍ରତୀକ ମାଧ୍ୟମରେ ପ୍ରକାଶ କରିଛନ୍ତି ତାହା ଧାରଣା କରିହୁଏ । କବିତାର ଶେଷରେ କବି ଏକ ଅନାକାଙ୍କ୍ଷିତ ପ୍ରଶ୍ନର ଉତ୍ତର ପ୍ରଦାନ କରିଛନ୍ତି । କବିଙ୍କ ପ୍ରଶ୍ନ 'ବୋଉ... ମୁଇଁ ଚିହ୍ନା ତୋ'ର ସବୁ ଇନ୍ଦ୍ରିୟରେ... ଏହି ପ୍ରଶ୍ନର ଉତ୍ତରକୁ 'ବୋଉ' ମୁହଁରେ କବି ଦେଇଛନ୍ତି ଏହିପରି । 'ବାବା, ସ୍ତନ ମୋର ଇନ୍ଦ୍ରିୟ ନୁହଁରେ' । ଏକ ପରମ୍ପରାଚ୍ୟୁତ ଭିନ୍ନ ମାନସ ପ୍ରତି ଏହାଠାରୁ ଆଉ ଅଧିକ ଶ୍ରେଷ୍ଠ ଉତ୍ତର କଣ ଦିଆଯାଇ ପାରିଥାନ୍ତା ? କାବ୍ୟପୁରୁଷ ଏବେ ବି ଦେଖେ ସେହି ନାରୀଟିର 'ଏକପାଦୀ ବୃଷଭର ଲାଞ୍ଜ ତଳେ ତା' ସୁନ୍ଥାର ରକ୍ତ ଜଳୁଅଛି ।'

ପୃଥିବୀର ସମସ୍ତ ଆଧୁନିକ କବିଙ୍କର କାବ୍ୟ ଚେତନାରେ ଯେପରି ମନୁଷ୍ୟର ସ୍ଥିତି ନେଇ ସଂଶୟ ଓ ସ୍ଥିତି ପାଇଁ ସଂଘର୍ଷର ରୂପ ପ୍ରକାଶ ପାଇଛି ଠିକ୍ ସେହିପରି କବି ହରିହର 'ପ୍ରଥମ ଗର୍ଭ' କବିତାରେ ସଂସ୍କୃତି ଓ ନୂତନ ପରମ୍ପରାଚ୍ୟୁତ ଭାବନାକୁ ପରିହାର କରି ନୂଆ ହୋଇ ଜନ୍ମ ନେଇଛନ୍ତି । ଏ ନୂତନ ଜନ୍ମରେ ସେ କେବଳ ବଞ୍ଚିବାକୁ ଚାହିଁଛନ୍ତି ସବୁ

ଅତ୍ୟାଚାର, ଅମଙ୍ଗଳକୁ ସହି ଯାଇ । କବିତାରେ କାବ୍ୟନାୟକ । ନିଜ କଥା କହି ଚାଲିଛନ୍ତି । କୌଣସି ଏକ ଦ୍ୱିତୀୟ ପୁରୁଷ (ସ୍ୱପତ୍ନୀଙ୍କୁ)କୁ । ସେ ଦେଖିଛନ୍ତି ଅନ୍ଧାରକୁ ତଡେଇ ଆଲୋକ ଆସୁଛି । ରାତି ତାଙ୍କ ପାଇଁ ଥିଲା ନିଷ୍ଠୁର । ସ୍ୱପ୍ନରେ ତାଙ୍କରି ଆଗରେ ପାହାଡ଼ରୁ ନଦୀଟିଏ ବୋହିଥିଲା । ମାତ୍ର ସମୁଦ୍ରରେ ହଜିଗଲା । ସେ ଦେଖୁଛନ୍ତି ଢେଉର ଚୋଟରେ ଶାମୁକାର ଝର୍କା ଓ ପ୍ରବାଳର ସ୍ତମ୍ଭ ଭାଙ୍ଗି ଯାଇଛି । ପ୍ରଥମେ ସେ ଖୁବ୍ ଭୟଭୀତ ହୋଇଛନ୍ତି ସତ ମାତ୍ର ସବୁ ସହି ହୋଇଛି ବଞ୍ଚିବାର ପ୍ରବଳ ମୋହ ପାଇଁ । କବିଙ୍କ ଭାଷାରେ 'ମୁଁ ପ୍ରଥମେ ଡରିଥିଲି ଅତ୍ୟାଚାର... ତା'ପରେ ମୁଁ ଅତ୍ୟାଚାର କଲି । ଯମଙ୍କ ଦର୍ଶନ ପରେ ମନେହେଲା ତାଙ୍କୁ ମଧ ଚୁମା ଦେଇହେବ' ଗଲାଦିନର ସରଳ ନିଷ୍ପାପ ଭୟାକୁଳ ମନ ଏବଂ ବର୍ତ୍ତମାନର ବଞ୍ଚିବା ପାଇଁ ଚେଷ୍ଟା କରୁଥିବା ମନ ମଧରେ କବିଙ୍କ ସ୍ମରଣକୁ ନିଜର ପ୍ରିୟାର ଚିନ୍ତା ଆସିଛି । ମାତ୍ର ଏ ରୋମାଣ୍ଟିକ୍ ଚେତନା ସେତେ ବଳିଷ୍ଠ ହୋଇପାରିନି । କବିତାର କଳେବରରେ କବି କେବଳ ବଞ୍ଚିବା ପାଇଁ ବସ୍ତୁଗତ ଦ୍ରବ୍ୟର ପ୍ରାପ୍ତିରେ ଅଭିନିବିଷ୍ଟ, ଅନ୍ୟ ସମସ୍ତ ଆବେଗକୁ ଅବହେଳା କରିଛନ୍ତି । ଏଥିରେ କେବଳ ବଞ୍ଚିବା ପାଇଁ ଆହ୍ୱାନର ରାଗିଣୀ ରହିଛି । ଏହି ଆଶାର ପ୍ରସବ ପାଇଁ ପ୍ରଥମ ଗର୍ଭର ଚିନ୍ତାରେ କବି ବିଭୋର ହୋଇଛନ୍ତି । 'ଆଜିର ସକାଳ ଦେଉ ଭିକାରୀରେ ଦି'ମୁଠା ଚାଉଳ' । ନିଦ ଭାଙ୍ଗିଯାଇଛି କାବ୍ୟ ପୁରୁଷର । କବିତା ଶେଷରେ । ସେ କହି ଉଠିଛି : 'ସେଇଠାରେ ଭୋର ହେଲା ଚେତନାରେ ମୁଁ ତୁମକୁ ଖୋଜିଲି/ହେ ଅଜ୍ଞାନ ନିଦ ମୋର, ତୁମର ଏ ପ୍ରଥମ ଗର୍ଭର/ଦଶ ମାସ ଇତିହାସ... ହଠାତ୍ ମୋର ସତ୍ ସୁକୃତର ।' (ପ୍ରଥମ ଗର୍ଭ)

ପରବର୍ତ୍ତୀ କବିତା 'ତଫାତ'ରେ ପ୍ରେମ ଚେତନାର ଏକ ସ୍ୱତନ୍ତ୍ର ରୂପ ପ୍ରକାଶିତ । ପ୍ରେମ ଜୀବନର ବ୍ୟର୍ଥତାର ସ୍ୱର ଏହି କବିତାରୁ ସ୍ପଷ୍ଟ ହୋଇଉଠେ । ବିଫଳ ପ୍ରେମର ଯନ୍ତ୍ରଣାରେ କବି ଗାଇଛନ୍ତି ପ୍ରିୟା ଉଦ୍ଦେଶ୍ୟରେ, 'ତୁମକୁ ଅପେକ୍ଷା କରି ମଁ ଭୟରେ ଥରୁଅଛି ସାରା କାଲି ରାତି ।' ପ୍ରେମ ଜୀବନର ସଂଘାତ ପରେ କବି ପ୍ରେମିକା ପାଇଁ ଲେଖିଛନ୍ତି, 'ଥରେ ମୁକ୍ତ ମାଆ ଗର୍ଭରୁ ଆଉ ଥରେ ମାଟିର ଜଠରୁ... କିନ୍ତୁ ଯଦି ଏ ଆତ୍ମାରୁ/ମୁକ୍ତ କରି ଦେହ ଆଉ ଏ ଜୀବନ... ଏ ଯୌବନ, କିବା ଲୋଡ଼ା ତୁମର ତେବେ' । ଜୀବନର ସକଳ ଯନ୍ତ୍ରଣାର ଅନ୍ଧାର ମଧରେ କବି ଗାଇ ଉଠିଛନ୍ତି 'ଯଦିଓ ମୁଁ ସବୁବେଳେ ଦାୟୀ ରହେ ପଙ୍କ ଠାରେ ସେହିଭଳି ସୂର୍ଯ୍ୟାସ୍ତ ପାଖରେ ।' ଉଭୟ ହିଁ ତାଙ୍କ ପାଇଁ ଏକା । ମାତ୍ର କବିଙ୍କର ନୂଆ ରୋମାଣ୍ଟିକ ମନର ପରିଣତି ଏତିକିରେ ଶେଷ ହୋଇନାହିଁ । ସେ 'ପତଙ୍ଗ' ଭଳି ଡେଣା ମେଲାଇ ଉଡ଼ି ଚାଲିଛନ୍ତି ଆତ୍ମମୁଗ୍ଧ ପ୍ରେମର ସନ୍ଧାନରେ । ସେ ତେଣୁ ଚାହାନ୍ତି ପଣସ ଗନ୍ଧରେ ବାଟଭୁଲା ରାସ୍ତାର ଏକ ମୁହୂର୍ତ୍ତ ହେବାପାଇଁ ଏବଂ ପୁଣି ହେବାପାଇଁ ପ୍ରେମିକାର

ଅବୁଝା ଆଖିର ଏକ ପଲକ । 'ବୁଢ଼ିଆଣୀ' କବିତାରେ କବି ସେହିପରି ଅତୀତର ପ୍ରେମିକା ପାଇଁ ହୃଦୟର ସ୍ୱୀକାର ପ୍ରକାଶ କରିଛନ୍ତି । କବିତାଟି ପୂର୍ଣ୍ଣ ରୂପେ ରୋମାଣ୍ଟିକ । 'ମେ ମାସ ଓ ପ୍ରଜାପତି' ଏହି ଧର୍ମର ଭିନ୍ନ ଏକ ମର୍ମର କବିତା ଅଟେ । ପ୍ରମତ୍ତ ଋତୁର ଶତ ଉଚ୍ଛୃଙ୍ଖଳତା ସତ୍ତ୍ୱେ କବିଙ୍କର ମନରେ ଉଦାସୀନତା । ମଧ୍ୟାହ୍ନର ସର୍ବବ୍ୟାପୀ ଶୂନ୍ୟତାକୁ କେବଳ ସେ ଅନୁଭବ କରୁଛନ୍ତି । ପ୍ରଜାପତିଟି କେବଳ ଏହି ଶୂନ୍ୟତାକୁ କବି ଓ ମଧ୍ୟାହ୍ନ ସହିତ ଯାହା ଯୋଡ଼ି ଦେଉଛି । କବିଙ୍କର ପ୍ରତୀକ୍ଷା ବିସ୍ତାରିତ ହୋଇଯାଇଛି, ସେ ଆସିବ । ତାକୁ ସେ ଅନୁକୂଳ ଦିନ ଓ ଘଣ୍ଟା ଧରି ଚାହିଁଛନ୍ତି । ଆସିବା ପର ଘଟଣାକୁ କବି ଭିନ୍ନ ଏକ ପରିଣତି ଦେଇ ଘଟଣାକୁ ଟାଣି ନେଇଛନ୍ତି ଅନ୍ୟ ଏକ ସ୍ୱର୍ଗଦ୍ୱାରକୁ । ଏକ ନୂତନ ଆଲୋକର ଗଛରେ ପରିଣତ କରି ବଞ୍ଚାଇ ରଖିବାକୁ । ଜାଗତିକ ସକଳ ଜଞ୍ଜାଳକୁ କବି ଦାହ କରାଇ ସାରି ଅପେକ୍ଷା କରିଛନ୍ତି ମଲ୍ଲୀ, ଯୁଈ ଓ ମାଳତୀ ଫୁଲ ଧରି, ସେ ଆଖିର ସ୍ୱପ୍ନ ସାଜସଜ୍ଜାକୁ ସାଇତି ରଖି ନୂଆ ଲଫାପାରେ ନିମନ୍ତ୍ରଣ ପଠାଇବାକୁ । ମାତ୍ର ଏ ନିମନ୍ତ୍ରଣ କାହାକୁ ? 'ଏକ ପ୍ରାର୍ଥନା ଅପରାହ୍ନର' କବିତାରେ କବିଙ୍କର ଆଧିଭୌତିକ ଚେତନାର ପ୍ରକାଶ ଘଟିଛି । ଏଥିରେ କବିଙ୍କର ଆତ୍ମାର ନିୟନ୍ତ୍ରଣ ଚାଲିଛି ପରମାତ୍ମାଙ୍କ ପାଖକୁ । ସେ ସାଉଁଟିଛନ୍ତି ସହସ୍ର ଜ୍ୟୋତିରିଙ୍ଗଣ, ଶହ ଶହ ନିହାରିକା ସମୁଦ୍ରର ନିମ୍ନ ଚଟାଣରେ । କବି ଏହି କବିତାରେ ବୌଦ୍ଧିକତା ମଧ୍ୟରେ ଆଧ୍ୟାତ୍ମିକତାକୁ ପ୍ରକାଶ କରି ରହସ୍ୟବାଦୀ ହେବାକୁ ଚେଷ୍ଟା କରିଛନ୍ତି, ସେ କହିଛନ୍ତି 'ନିଜକୁ ହଜାଇ ମୁହିଁ ଆସ୍ତେ ଆସ୍ତେ ମିଶେ କେଉଁଠାରେ/ମୋ ଯଜ୍ଞର ଧୂନିଶିଖା କୁହୁଳୁଛି ପୁଣି କେଉଁଠାରେ' ? ଏହିପରି 'ରାତିର ପ୍ରାର୍ଥନା' ଏବଂ 'ଶଙ୍ଖଚୂଳ' କବିତାରେ କବି କିଛି କିଛି ଏହି ଚେତନାର ବିକାଶ କରିଛନ୍ତି । ମାତ୍ର ଏହା ସେପରି ସ୍ପଷ୍ଟ ହୋଇପାରିନାହିଁ । ଘଟଣା ବ୍ୟସ୍ତ ପୃଥିବୀରେ ନିଜର ବିଭିନ୍ନ କାର୍ଯ୍ୟ ଅକାର୍ଯ୍ୟକୁ, ଭଲମନ୍ଦ ସବୁ କିଛିକୁ କବି ଭଗବାନଙ୍କ ପାଖରେ ସମର୍ପି ଦେବାକୁ ଚାହାନ୍ତି ।

'ଶଙ୍ଖଚୂଳ' କବିତାରେ ପ୍ରଥମରୁ ଅମଙ୍ଗଳ, ଧ୍ୱଂସ ଏବଂ ମୃତ୍ୟୁର ପରିବେଶ ମଧ୍ୟରେ ନିଜର ଯନ୍ତ୍ରଣାକୁ କାବ୍ୟ ନାୟକ ପ୍ରକାଶ କରିଛି ସେ କହିଛି ଯେତେ 'ମୋର ଅପମୃତ୍ୟୁ, ଅପଯଶ ଜାକିଜୁକି ରେଜେଇ ଭିତରେ/ମୁଁ ଶୋଇଛି ଡାଳ ଡାଳ ଫୁଲ ଧରି ନିଶ୍ୱାସର କଣ୍ଟାବୁଦା ତଳେ ।' ସବୁ ଅମଙ୍ଗଳ ମଧ୍ୟରେ କବି ତଥାପି ବଞ୍ଚିବାର ଆଶା ରଖିଛନ୍ତି । ସେ ଖାଲି ଚାହିଁଛନ୍ତି 'କି ଭଲ କଟିବ ରାତି... ମୁଁ ଦେଖିବି ମୋ ମୟୂର ସିଂହାସନ ।' ଏକ ଅନିର୍ଦ୍ଦେଶ୍ୟ ଶକ୍ତି ପ୍ରତି ତାଙ୍କ ଚିନ୍ତାରେ ଆସିଛି ଆସକ୍ତି । ତାଙ୍କ ମନର ଶୂନ୍ୟ ଶସ୍ୟଶାଳା ଅବହେଳିତ । ତାଙ୍କର ସଂଗୁପ୍ତ ଶହ ଶହ ପାଣିର ବଖରା ପୋଡ଼ି ଜଳିଯାଏ ମଧ୍ୟାହ୍ନରେ, ଆତ୍ମା ତାଙ୍କର ଛଟପଟ ହୋଇଉଠେ ।

ଏହିପରି ପ୍ରଥମ ପର୍ଯ୍ୟାୟର ବିଭିନ୍ନ କବିତାମାନଙ୍କ ମଧ୍ୟରେ କବିଙ୍କର କାବ୍ୟ ମାନସର ବିକାଶ ଘଟିଛି । ସଂସ୍କୃତିର ମୂଲ୍ୟାୟନ ମାନସିକ ପ୍ରତିକ୍ରିୟାର ଅନୁଚିନ୍ତନ ସହିତ ପ୍ରେମ ତଥା ଆଧ୍ୟାତ୍ମିକତା ଆଦି ଭାବ ଉପରେ କବିଙ୍କର ଆଲୋଚିତ କବିତା ଗୁଡ଼ିକ ଆଧାରିତ । ଆଲୋଚିତ କବିତା ବ୍ୟତୀତ ଅନ୍ୟ କେତେକ କବିତା ମଧ୍ୟ ଏହି ମର୍ମରେ 'ଶଙ୍ଖନାଭି'ରେ ଅଛି । ଏହାଛଡ଼ା ଭିନ୍ନ ମାନସିକତାର କେତେକ କବିତା ମଧ୍ୟରେ ବାସ୍ତବ ଘଟଣାର ଦାର୍ଶନିକ ଅନୁଚିନ୍ତନ ପ୍ରକାଶିତ ହୋଇଛି । ଏହି ଭାବର କେତେକ କବିତା ବର୍ତ୍ତମାନ ଆଲୋଚନା କରାଯାଇପାରେ ।

'କୁହୁଡ଼ି ଜଣେ ଟ୍ରକ ଡ୍ରାଇଭର ଆଖିରେ' କବିତାରେ ସମ୍ପୂର୍ଣ୍ଣ ବ୍ୟକ୍ତିଗତ ଭାବନାର ପରିଚର୍ଯ୍ୟା କରାଯାଇଛି । ଟ୍ରକ ଡ୍ରାଇଭରର ସମସ୍ତ କ୍ଳାନ୍ତି କୁହୁଡ଼ି ହ୍ରଦର ଶୂନ୍ୟ ଶୁଭ୍ର ଅନ୍ଧାରରେ ଲିଭିଯାଏ । ସବୁ ଅନୁଭୂତି ତା' ପାଖରେ ନିର୍ଜୀବ । ରାସ୍ତା କଡ଼ରେ ରେଜାଙ୍କର ରକ୍ତାକ୍ତ ପଣତ ତା' ପାଖରେ ମଧ୍ୟ କପୋଳକଳ୍ପିତ । ଆଖିର ନିଦ ଓ ପିଠିର ପଥର ବୋଝ ତାକୁ ଅସହାୟ କରିଛି । କେବଳ ହର୍ଣ୍ଣ ଦେବା ବ୍ୟତୀତ ଅନ୍ୟ କୌଣସି ଉପାୟରେ ସେ ଦୁର୍ଘଟଣାକୁ ରୋକି ନ ପାରେ । ଦୁର୍ଘଟଣା ଘଟେ, ସେ ହୁଏ ରକ୍ତାକ୍ତ, ତଥାପି ବି ଜୀବନ ପାଇଁ ତାକୁ ଚାଲିବାକୁ ହୁଏ । ମାଲିକ ଆରାମରେ ବଞ୍ଚେ । ଯନ୍ତ୍ରଣାର କୌଣସି ବାଧାର ସ୍ୱପ୍ନ ସୁଦ୍ଧା ସେ ପାଇନଥାଏ । ଏଠାରେ କବି ଶୋଷକ ପ୍ରତି ଶୋଷିତର ଅସହାୟ ପ୍ରତିବାଦକୁ ଜଣାଇଛନ୍ତି । କୌଣସି ନିଶ୍ଚିତ ପ୍ରତିକାର ପ୍ରକାଶ କରିନାହାନ୍ତି । ଏ ସବୁ ସତ୍ତ୍ୱେ ବି କାବ୍ୟ ନାୟକ ଚାଲିଥାଏ । ସେ କହେ :

'ମୁଁ ଯାଏ ଚୁମା ଖାଇ......ଦୁର୍ଘଟନା ଖାଇ
ରାସ୍ତାରେ ହିଁ ଅବରୁଦ୍ଧ......ରାସ୍ତାରେ ହିଁ ମୁକ୍ତି ଅଛି ପଥ ଖୋଜିବାର ।'

କେବଳ ଏତିକି ନୁହେଁ, ନାଟକୀୟ ଭାବରେ ଜୀବନର ବିଭିନ୍ନ ଅନୁଭୂତିର ସେ ସ୍ମୃତି ଚାରଣ କରିଛନ୍ତି । 'ଅଗଭୀରା ନଦୀର ଚାହାଣୀର' ଆହ୍ୱାନକୁ କବି କଳନା କରିଛନ୍ତି 'ପାର୍ବତ୍ୟଶଯ୍ୟା'ରେ ରହି । ସମୁଦ୍ର ଗର୍ଭରୁ ରହି ଚାହିଁଛନ୍ତି ନଦୀର ଗର୍ଭକୁ । ଦେହ ଓ ବିଦେହର ସମସ୍ତ ବିକାର ମିଶି ଏକ ଭୟାବହ ଚେତନା ସୃଷ୍ଟି ହୋଇଛି । ନଦୀ ଏଠାରେ ଜୀବନର ପ୍ରତୀକ ହୋଇଛି । ସମୁଦ୍ର ଜୀବନର ଶେଷପରର ଅବସ୍ଥା । ନଦୀରୁ ସମୁଦ୍ରକୁ ଯିବାର ସମୟ ସୀମା ହିଁ ଜୀବନର ଘଟଣା ବହୁଳ ରାସ୍ତା । ଏହି ସମୟରେ ସୁଖନିଦ୍ରା ସାମ୍ପ୍ରତିକ ଯନ୍ତ୍ରଣାରେ ଭାଙ୍ଗି ଯାଇଛି । ତେଣୁ କବି କହିଛନ୍ତି :

'ମୁଁ ସେଠାରେ ଶୋଇଥିଲି କେବେ
କିଏ ମୋତେ ଅଲଗା କଲା ସେ ଶଯ୍ୟାରୁ, କିଏ ସେ ବ୍ରାହ୍ମଣ' ?

(ପାର୍ବତ୍ୟ ଶଯ୍ୟା)

ଦୁଃଖ ଓ ସୁଖ, ଅମଙ୍ଗଳ ଓ ମଙ୍ଗଳ ଏ ସବୁକୁ ମିଶାଇ କବିଙ୍କର ଚେତନା ତଥାପି କିଛି ଭଲ ଓ କିଛି ପବିତ୍ରତାର ସନ୍ଧାନରେ ସନ୍ଧାନୀ । ତେଣୁ ତାଙ୍କର ଦୃଷ୍ଟିର ଶଙ୍ଖ ଶୁଭ୍ର ହାତ 'ଛୁଇଁଯାଏ ସର୍ବ ଶୀର୍ଷ ପାହାଡ଼କୁ ଆକାଶରେ ମିଶିବା ପର୍ଯ୍ୟନ୍ତ' ମାତ୍ର ଏ ଆଦର୍ଶର.ଆକାଶ ତାଙ୍କ ପାଇଁ 'ମୁଦ୍ରିତ ଆକାଶ' । ଅପେକ୍ଷାରେ ବିତିଯାଏ ଦିନ :

'ସାରା ରାତି ନିହଣର ମୁଗ୍ଧ ଶିହରଣ
କି ଅବା କଠିନ ଏକ ସ୍ୱପ୍ନର ଖୋଦନ
ଦେହରେ କା' ଅପେକ୍ଷାର ଉଲଗ୍ନତା
ଭିତରେ ଜଳର କାନ୍ଦ ବାହାରେ ପଥର'...

ସବୁଠାରେ ଅପ୍ରାପ୍ତିର ଅସହାୟ ସ୍ୱର । ସବୁ କିଛି ଅନାଦୃତ ରହିଯାନ୍ତି । ଆଉ ତିଥିର କାଳିଗାଈଟି ଆସି ଘାସ ଖାଇ ଚାଲିଯାଏ । ମାତ୍ର କେବେହେଲେ କ୍ଷୀର ଦିଏ ନାହିଁ । 'ତଥାପି ଏଇ ହତାଶା ମଧ୍ୟରେ ମାଟିତଳେ ଆକାଶ ଖୋଜିବାରେ କବି ବ୍ୟସ୍ତ ।' 'ନାଟକୀୟ' କବିତାରେ କବି ଜୀବନର ଜଞ୍ଜାଳ ଯନ୍ତ୍ରଣା ତଥା ସାମାଜିକ ଉତ୍ସବ ଜୟନ୍ତୀର ପରୋକ୍ଷ ସମାଲୋଚନା କରିଛନ୍ତି । ଏ ସମସ୍ତ ଜାଗତିକ ଜଞ୍ଜାଳରୁ କବି ମୁକ୍ତି ମାଗି କହିଛନ୍ତି : 'ହେ ସ୍ମାରକ ! ଆଲୋକିତ ଅଛି ମଞ୍ଚ, କର ଆଜି ଏଥିରୁ ଉଦ୍ଧାର ।' କବିତାର ଶେଷ ଭାଗରେ କବି ସେହିପରି ସମସ୍ତ କୃତ୍ୟ ଅକୃତ୍ୟକୁ ସର୍ତ୍ତହୀନ ଭାବରେ ସେହି ସ୍ମାରକଙ୍କ ପାଖରେ ସମର୍ପଣ କରି ବର୍ତ୍ତମାନର ପର୍ଦା ଟାଣି ଅଙ୍କ ଶେଷ କରିବାକୁ କହିଛନ୍ତି ।

'ବିଶ୍ୱବସୁର ଗାଁ' କବିତାରେ କବି ଏକ ନିର୍ଦ୍ଦିଷ୍ଟ ଆହ୍ୱାନ ଜଣାଇଛନ୍ତି । ବର୍ତ୍ତମାନ କାଳର ସମସ୍ତ ବିଷାଦ ଓ ଜୀବନ ସଂଘର୍ଷ ମଧ୍ୟରୁ ଏ ଜୀବକୁ ଦୁଇଟି ଶୂନ୍ୟହାତର ପ୍ରତୀକ ଦେଇ ପ୍ରମାଣ କରାଯାଇଛି । ପୁଣି ଏହାକୁ 'ଅଦ୍ଭୁତ ଏ ନୀଳ ଅପରାହ୍ନ' ମଧ୍ୟ ଦେଇ ନୂତନ ଆଧ୍ୟତ୍ମିକ ଇଲାକାକୁ ପଳାଇବାକୁ ଚେଷ୍ଟା କରିଛନ୍ତି ଏବଂ କହିଛନ୍ତି–'ଶିଆଳି ଲଟାରେ ଦୋଳେ ସେ ପାରିର ଉର୍ଦ୍ଧ ଭାଗେ/ସୂର୍ଯ୍ୟାସ୍ତର ଦର ଦର ହସ... ଓ ବିଦାୟ ବନ୍ଧୁ, ମତେ ଆଉ ଖୋଜିବାକୁ କରିବନି କଷ୍ଟ ।' ସେହି ନଦୀ ତଟରେ ବିଶ୍ୱାବସୁର ଗାଁ । ବର୍ତ୍ତମାନ ମୃତ ଘଟ ସମ ପଡ଼ିରହିଛି । ସେହି ଘଟରେ କବି ନିଜର ନାଁ ଓ ଗାଁର ନାଁ ଲେଖି ଦେବାକୁ ଆଗ୍ରହୀ ।

କେବଳ ଏତିକି ନୁହେଁ ଦାରୁ ବୃକ୍ଷର ଶିରା ପ୍ରଶିରାରେ ଚନ୍ଦନର ବାସ୍ନା ପରି ମିଶିଯିବାକୁ ସେ ଚାହାନ୍ତି । ତେଣୁ ସମସ୍ତଙ୍କୁ ନିର୍ଦ୍ଦେଶ କରିଛନ୍ତି :

'ଦେଖେ ବିସ୍ମୟରେ ଦୂରୁ ଆସେ ଜଣେ କେହି ଠେକା ଭିଡ଼ି ।'

(ରନ୍ତଲେଇ ଗଉଡ଼ ପିଲା କି !)

ଏଇ ଗଉଡ଼ ପିଲାକୁ ଚାହିଁ ପ୍ରତିଟି ମୂହୂର୍ତ୍ତର ସଂଘର୍ଷକୁ ଭୁଲିଯିବାକୁ ସେ ଆଶାୟୀ । ଏହାପରେ, ନିଜର ସମସ୍ତ ଗାରିମା କ୍ଷମା କରିବାକୁ ସେ କହିଛନ୍ତି 'କ୍ଷମାକର, କ୍ଷମାକର ନିରୁଦ୍‌ବେଗ ଶୂନ୍ୟର ସମୁଦ୍ର' (ପୃ-୫୫) ଜୀବନର ସମସ୍ତ ଜଞ୍ଜାଳକୁ ଫୁଲ କରି ସେଇ ମାଳାକୁ ସେ ଭଗବାନଙ୍କ ପାଦରେ ସମର୍ପି ଦେବାକୁ ଯେପରି ଜୀବନ ଦଲିଲ ଉପରେ 'ଏକ ଛୋଟ ଦସ୍ତଖତ'ଟିଏ ଆଙ୍କି ଦେଇଛନ୍ତି । କବିତାରେ ଏହିପରି ନିଜର ଶେଷ ଅବସ୍ଥାକୁ ଭଗବାନଙ୍କ ପାଖରେ ଦାୟ ୍ର ତାଙ୍କର ନିଜର ଧର୍ମ ବିଶ୍ୱାସୀ ମନର ପରିଚୟ ଦେଇଛନ୍ତି । ଏହା ସତ୍ତ୍ୱେ କବିଙ୍କର ଜୀବନ ସଂଗ୍ରାମରେ ବଞ୍ଚିବାପାଇଁ ସ୍ଥିତିବାଦୀ ଚେତନାର ପରିଚୟ ଆମେ ଆଲୋଚିତ କବିତାରେ ପାଉ ।

କେବଳ ଏତିକି ନୁହେଁ କବି 'ତତ୍ତ୍ୱବିଦ୍' ପରି ନିଜର ମନୋଭାବକୁ ତନ୍ନ ତନ୍ନ କରି କବିତାଗୁଡ଼ିକ ମଧ୍ୟରେ ପ୍ରକାଶ କରିଛନ୍ତି । ନିଜ ମନର ପ୍ରତି ପ୍ରାକୃତ ଅପ୍ରାକୃତ ଅବସ୍ଥାର ଚିତ୍ରଗୁଡ଼ିକ କବିତାରେ ପ୍ରକାଶିତ ହୋଇଛି । 'ଏକ ପ୍ରତିଜ୍ଞାର ଭାର' କବିତାରେ କାବ୍ୟପୁରୁଷ ଅସହାୟ ହୋଇ ନିଜ ଉପରେ ଥିବା ସମସ୍ତ ଆଶା ଓ ଭରସାର ଚିହ୍ନକୁ ଲିଭାଇବାକୁ ଚେଷ୍ଟା କରୁଛି । କାରଣ ସେ ଜାଣିପାରୁଛି ସମୟର ଗ୍ରାସରେ ପଡ଼ି ଯେ କୌଣସି ସ୍ୱପ୍ନ ବା ସ୍ନେହର ଉପଯୁକ୍ତ ରୂପାୟନ କରିବାକୁ ସେ ଅକ୍ଷମ । 'ଭୟ ଓ ଅଭିନୟ'ରେ ସେହିପରି ସମୟରୁ ସମୟାନ୍ତରର ଚିତ୍ର ଦିଆଯାଇଛି । ଏଥିରେ କାବ୍ୟ ନାୟକ ଭୟରୁ ନିର୍ଭୟ ଅବସ୍ଥାକୁ ଆସିଛି ସତ ମାତ୍ର ଭଲ ସବୁ ଖରାପରେ ପରିଣତ ହୋଇଛି । ଶସ୍ୟ ଶ୍ୟାମଳ ପୃଥିବୀରେ ମରୁଡ଼ି ଓ ମନ୍ୱନ୍ତର ଆସିଛି । କବି କହିଛନ୍ତି,

'ଘାସର ରକ୍ତରେ ସବୁ ଓଦା କରି ଛାତି ମୋର

ହେ ରାଜନ, ଅଶ୍ୱମେଧ ଯଜ୍ଞ ଲାଗି ଘୋଡ଼ା ତୁମ କର ସଜବାଜ ।'

ଏହାର କାରଣ ରୂପେ ସନ୍ଧାନ କରାଯାଇଛି ଏଇ ମଣିଷକୁ । ତେଣୁ କବି ନିଜକୁ ଶଇତାନ୍ ରୂପେ ସମ୍ବୋଧନ କରି ଲେଖିଛନ୍ତି ।

'ମୁଁ ଦାନବ ମାନୁଛି ନିଜକୁ । ମୁଁ ଭାଙ୍ଗିଛି କୁରାଢ଼ିରେ ଆମ ଗାଁ
ଦେଉଳର ଶିବଲିଙ୍ଗ, ଦେବୀଙ୍କର ବାମପାଦ ଆଙ୍ଗୁଳି ଯେତେକ ।

× × × × ×

ଦେଖ ଦେଖ... ମତେ କାହିଁ ଭୟଙ୍କର ମୋ ଭିତରେ ନାହିଁ ଟିକେ ଭୟ ।'

ଏ କବିତାରେ ସମୟର ଏକ ନିର୍ଦ୍ଦିଷ୍ଟ ଚିତ୍ର ଦିଆଯାଇଛି । 'ତତ୍ତ୍ୱବିତ୍' କବିତାରେ କବି ମନର ଜିଜ୍ଞାସା ଅତି ଯୁକ୍ତ ଯୁକ୍ତ ହୋଇଛି । ଏହି ଜିଜ୍ଞାସାର ସ୍ୱରୂପ ହେଲା 'ମାଆ ମାନେ ଥରେ ତୁମ ସ୍ତନକୁ ପଚାର/ଦେବକୀ, ପୁତନା/ ଦେବକୀ କିବା ହେ ଯଶୋଦା ରାଣୀ ମାତା କାଉରୁ କୋଇଲି ବସା/କାହାକୁ ମୁଁ କରିବି ନିଜର/ବାଲ୍ୟ ଯା'ର ନିଃସହାୟ ନିରାଶ ଜର୍ଜର ।' ତେବେ ଯାହା ହେଉ ତାଙ୍କର ପ୍ରଶ୍ନର ପରିଣତି ଏହିପରି ହୋଇଛି, 'ଅନ୍ଧାର ଆସିଲା ଧୀରେ/ ଚେତା ଆସି ସେମାନଙ୍କୁ କଲା ଏକାକାର ।' କୌଣସିଟିର ସେ ନିଶ୍ଚିତ ସମାଧାନ କରିନାହାଁନ୍ତି । ତାଙ୍କର ବିଭିନ୍ନ ଚେତନା ପୂର୍ଣ୍ଣ ମନୋସରୋବରର ଭାବପଦ୍ମକୁ କେବଳ କଇଁଚ ମାନେ ଖୁମ୍ପି ନଷ୍ଟ କରିଛନ୍ତି । ଭ୍ରମର ମାନେ ସବୁ ମରିଯାଇଛନ୍ତି । ମନ ତାଙ୍କର ଦିଗଭ୍ରଷ୍ଟ ହୋଇ ଅଣଲେଉଟା ବାଟରେ ପାଦ ପକାଇବାକୁ ଚେଷ୍ଟା କରିଛି । ମାତ୍ର 'ଟାଣି ହୋଇ କେଉଁ ସତୀ ନିଃଶ୍ୱାସରେ ମୋର ପୂର୍ବ ଅବସ୍ଥାକୁ' ହିଁ ସେ ପ୍ରାପ୍ତ ହୋଇଛନ୍ତି । (ରାକ୍ଷସର ପ୍ରତ୍ୟାଖ୍ୟାନ ପରେ) 'ଅବତାର' ଓ 'ପଥକ୍ଳାନ୍ତିର ଗୀତ' ଆଦି କବିତାରେ ଅନ୍ୟ ଏକ ଭାବର ଅବତରଣ ହୋଇଛି । ଜୀବନ ପରିଣତିର ଓ ଅନ୍ୟାନ୍ୟ ପାର୍ଥିବ ଘଟଣାର ଦାର୍ଶନିକ ଅନୁଚିନ୍ତନର ଭାବ ଏଥିରେ ପ୍ରସ୍ଫୁଟିତ । 'ଅବତାର' କବିତାରେ କବି ଏକ ଉଚ୍ଚସ୍ତରକୁ ଯିବାପାଇଁ ଆଶାୟୀ, ମାତ୍ର ସେ ନିଜର ସ୍ୱରୂପଟିକୁ କବିତାର ଶେଷରେ ପ୍ରଦାନ କରିଛନ୍ତି ।' 'ଗାଧୁଆ ତୁଠରୁ ମତେ ଦେଖନ୍ତିନି ତଫସିଲ୍‌ଭୁକ୍ତା ନାରୀ ନେଲାବେଳେ ମୁଣ୍ଡିଆରୁ ପାଣି/ଖାଲି ଏକ ସର୍ପ ଉଠେ ମୋ ପାଦରେ କିବା ଦୀର୍ଘ ନିଶ୍ୱାସ ମୋହରି' ଏହା ସତ୍ତ୍ୱେ ବି କବି ଏ ସବୁ ଭାବ ପ୍ରତି ସଚେତନ, କବିଙ୍କର ଏ ଜ୍ଞାନ ମଧ୍ୟ ଅଛି 'କିଛି କେବେ ମିଳେ ନାହିଁ ଜୀବନରେ କିଛି କେବେ ହଜିଯାଏ ନାହିଁ', 'କିଛ ମଧ୍ୟ ଘଟେ ନାହିଁ ଜୀବନରେ ହାରିବାରେ ଅବା ଜିତିବାରେ,' ଜୀବନର ସମସ୍ତ ଘଟଣା, ସୁଖ ଓ ଅଭିଜ୍ଞତାରେ କବି ଜାଣିଛନ୍ତି ପ୍ରଥମରେ ଉତ୍ତେଜନା ମରିଯିବ ଅଗ୍ନିରେ ଦଗ୍‌ଧେ ମୁହଁ ହେବ ଲାଲ ଓ ଚକ୍ଷୁ ହେବ ଜଳକା । ତେଣୁ ବର୍ତ୍ତମାନ 'ସମୁଦ୍ର ଦେଖିବା ଲାଗି ଏହା କିନ୍ତୁ ଉପଯୁକ୍ତ ବେଳ' (ପୃ.୫୮)।

କବିଙ୍କର ଏହି ସମୁଦ୍ର ସଚେତନା କୌଣସି ଏକ ଅଜ୍ଞାତ ସତ୍ତା ପ୍ରତି ଆସକ୍ତିର ସୂଚନା ଦିଏ । ଏହି ଅଜ୍ଞାତ ସତ୍ତା ହିଁ କବିଙ୍କର ପରମ ଆଶ୍ରୟ ସ୍ଥଳ । ଏହା ହିଁ ତାଙ୍କର ଆଧ୍ୟାତ୍ମିକ ଚେତନା । ଏ ପ୍ରକାର ଆଶ୍ରୟ ସନ୍ଧାନର କାରଣ ସମୟର ଯନ୍ତ୍ରଣା ଓ କବିଙ୍କର ଏହି ଯନ୍ତ୍ରଣାର ଉପଲବ୍ଧି ହୋଇପାରେ ।

କବିଙ୍କର ଆଲୋଚିତ ବିଭିନ୍ନ କବିତା ମଧ୍ୟରୁ 'ଜରଦ୍‌ଗବ' କବିତାଟି ଅନ୍ୟ ଏକ ପ୍ରତିନିଧିମୂଳକ କବିତା । କବି ଏଥିରେ ହିତୋପଦେଶର ସେହି ବୃଦ୍ଧଗୃଧ୍ର ଜରଦ୍‌ଗବର ଚିତ୍ରଟିକୁ ମୂଳକରି ସମୟର ବିବର୍ତ୍ତନରେ ପରିବର୍ତ୍ତନର ସ୍ୱରୂପକୁ ଆଙ୍କିଛନ୍ତି । କବି ନିଜର ଯେଉଁ ପୁରୁଣା ମନ ଓ ପରମ୍ପରାର ପରିବାରକୁ ପିତୃବ୍ୟ ଜରଦ୍‌ଗବ ପାଖରେ ସମର୍ପି ଦେଇ ଯାଇଥିଲେ ସାନ୍ତାଳୀ ସହିତ ନୈଶ ବିହାରକୁ, ନିଜର ବହୁ ଦୁଃଖ ଓ ଶୃଙ୍ଖଳା ତଣ୍ଟି ନେଇ ସେ ଫେରିଆସିଛନ୍ତି । ଅବଶ୍ୟ ସେ କିଛି ଦିନ ସବୁ ଭୁଲି ଯାଇଥିଲେ । ଫେରିଆସି ଦେଖିଛନ୍ତି ବସା ତାଙ୍କର ଶୂନ୍ୟ । ତେଣୁ ପଚାରିଛନ୍ତି :—

'ତୁମକୁନା ବସା ଛାଡ଼ି, ଯାଇଥିଲି ନୀଡ଼ ମୋର
ନିଛାଟିଆ କୋରଡ଼ ମୋହର ?'

କବି ମାନସର ସମସ୍ତ ସନ୍ତାନ ସନ୍ତତିଙ୍କର ବିଲୋପ ହୋଇଛି । ସନ୍ଦେହର ଛାଇରେ ଜରଦ୍‌ଗବ କାଳିମା ମୁଣ୍ଡାଇଛି । କବିଙ୍କର ଏବୁ ସ୍ପୃହାହୀନ ମାୟା ଭାଙ୍ଗି ଯାଇଛି । ତେଣୁ ସେ ଅତି କରୁଣ ଭାବେ ଗାଇଛନ୍ତି—

'ମୋ ବାଳୁତ ବାନପ୍ରସ୍ଥ ପରେ ଆଜି କି କରିବି
କି ନେଇ ବଞ୍ଚିବି ଏଇ ଯୌବନର ଦୀର୍ଘ ଅବସର ।'

ଏହି କବିତାଟିରେ ଆଧୁନିକତାର ଓ ଅଭିନବ ରୁଚିର ମୋହ ଜନିତ କାରୁଣ୍ୟର ସ୍ୱର ଅନୁରଣିତ । କବିତାଟି କବି ମାନସର ସଫଳ ପ୍ରତିଫଳନ ।

'ଶଙ୍ଖନାଭି'ର ବିଭିନ୍ନ ୪୦ଟି କବିତା ମଧ୍ୟରୁ ପ୍ରାୟ ଅଧିକାଂଶ କବିତାରେ କବିଙ୍କ ଅନୁଭୂତିର ପ୍ରତିଫଳନ ସ୍ପଷ୍ଟ । ଏଥିମଧ୍ୟରୁ କେତେକ କବିତା ନିର୍ଦ୍ଦିଷ୍ଟ ଏକ ପୃଷ୍ଠଭୂମି ପୁରୀ କ୍ଷେତ୍ର ବା 'ଶଙ୍ଖନାଭି ମଣ୍ଡଳ'କୁ ନେଇ ଲେଖାଯାଇଛି ତ କେତେକ କବିତାର ପଶ୍ଚାଦ୍‌ରେ ପୁରୀର ସାଂସ୍କୃତିକ ପରିବେଶର ଛାୟା ରହିଛି । ଉଦାହରଣ ସ୍ୱରୂପ କବିତା 'ଶଙ୍ଖନାଭି', 'କୋରସ', 'ଅନ୍ୟଦିନ' ଓ 'ପୁନର୍ଜନ୍ମ' ଆଦିକୁ ନିଆଯାଇପାରେ । ଏହି କବିତାଗୁଡ଼ିକରେ କବି ସେପରି କିଛି ଏକ ନିର୍ଦ୍ଦିଷ୍ଟ ସ୍ୱର ବା ଆଦର୍ଶର ଘୋଷଣା କରିନାହାନ୍ତି । କବିତାଗୁଡ଼ିକ ଯାହା କେବଳ କବି ମାନସର ଫଟୋଗ୍ରାଫି ମାତ୍ର । ଏଥିରୁ ଅନେକ କବିତା ଯେ ପାଠକର ମାନସ ପଟରେ କିଛି ଅର୍ଥ ପ୍ରକଟନ କରିବାରେ ଏକାନ୍ତ ଭାବେ ଅକ୍ଷମ ତାହା ସ୍ୱୀକାର୍ଯ୍ୟ । ଉଦାହରଣ ସ୍ୱରୂପ 'ତିନୋଟି ଅଧ୍ୟାୟ' କବିତାକୁ ନିଆଯାଇପାରେ । ଏହି କବିତାଟି କବି ମନୋଭାବନାର ଏକ ଖାପଛଡ଼ା ଝାପ୍‌ସା ଫଟୋଗ୍ରାଫି ବ୍ୟତୀତ ଆଉ କିଛି ହୋଇପାରେ ? 'ଶଙ୍ଖନାଭି' କବିତା ବହିର ଶେଷ ଦୁଇଟି କବିତା ହେଲା—'ସ୍ୱାମୀ ଜୟନ୍ତ ମିଶ୍ର' ଓ 'ମଧୁରାଷ୍ଟକ ଜନ୍ମ ଓ ମୃତ୍ୟୁର ।

ଏହି କବିତା ଦୁଇଟି ମଧ୍ୟରେ ପ୍ରଥମଟିରେ କବି ଏକ ସୁନ୍ଦର ଚରିତ୍ରର ଅବତାରଣା କରି ସେହି ଚରିତ୍ର ମାଧ୍ୟମରେ ଏକ ଦ୍ୱିଧାଯୁକ୍ତ ଦୋଳାୟମାନ ପୌରୁଷର ଚିତ୍ର ଦେଇଛନ୍ତି । ଶେଷ କବିତାଟିରେ ସେହିପରି ସମଗ୍ର ମାନବ ଜଗତର ବୃଦ୍ଧି ଓ ଘଟଣାର ମୂଲ୍ୟାୟନ କରି ନିଜର ଚେତନା ମଧ୍ୟରେ ସେଗୁଡ଼ିକୁ ମଧୁର ଭାବେ ଗ୍ରହଣ କରିଛନ୍ତି । ଆରମ୍ଭ କବିତା 'ଶଙ୍ଖନାଭି' ଏବଂ ଶେଷ କବିତା 'ମଧୁରାଷ୍ଟକ ଜନ୍ମ ଓ ମୃତ୍ୟୁର' ଦୁଇଟି ଯାକ ଦୀର୍ଘ ଅଟେ । ପ୍ରଥମଟିରେ କବି ମନରେ ସଂସ୍କୃତି, ପରମ୍ପରା ଓ ବର୍ତ୍ତମାନର ନଷ୍ଟ ସଭ୍ୟତାର ସଂଘର୍ଷ ଦେଖାଦେଇଛି ଏବଂ ଶେଷରେ ସେ ଅସମାହିତ ସୀମା ମଧ୍ୟରେ ଉତ୍ତପ୍ତ ଅନ୍ଧାରକୁ ହିଁ ଆଦରି ନେଇଛନ୍ତି । ଶେଷ କବିତାଟିରେ ସେହିପରି ସୃଷ୍ଟିର ପ୍ରାକ୍ କାଳରୁ ଆଜି ପର୍ଯ୍ୟନ୍ତ ପୃଥିବୀର ସମସ୍ତ ବ୍ୟଥା ଓ ବେଦନାକୁ ମାନବ ଜାତିର ସମସ୍ତ ସୌଭାଗ୍ୟ ଓ ଦୁର୍ଘଟଣାକୁ ସ୍ୱାଭାବିକ ଭାବ ମଧୁର ଭାବେ ଗ୍ରହଣ କରି ଶିଖିବାର ପ୍ରଚେଷ୍ଟା କରିଛନ୍ତି । କବିତାଟି ସମ୍ପୂର୍ଣ୍ଣ ରାମାୟଣ ମିଥ୍ ଉପରେ ପ୍ରତିଷ୍ଠିତ । ମେଘ ଯେପରି ପାହାଡ଼ର ଫାଙ୍କ ଦେଇ ଶବରୀ ବାଳୀକୁ ଜୁଇ, ମାଳତୀ ଫୁଲ ଉପହାର ଦେଇ ଚାଲିଯାଏ, ଜୟନ୍ତ ମିଶ୍ର ସେହିପରି ବୋଉର ଚୁମ୍ବନ ଦାଗ ପୋଛି ସ୍ତ୍ରୀର ନଖ, ଦନ୍ତ ଚିହ୍ନ ଆଦି ଲିଭାଇ ଦେହରେ ରାମାନନ୍ଦୀ ଲେଖି ମେଘର ବଜ୍ରସ୍ୱର ଭଳି ହରେ ରାମ... ହରେ କୃଷ୍ଣ... ଜୟ ମା ଭବାନୀ ଆଉ ଓଁ ନମଃ ଶିବାୟର ମନ୍ତ୍ର ବୋଲି ଚାଲିଥା'ଏ । ମାତ୍ର ସେ ଚାଲିପାରେନି । ଟାଙ୍ଗର ଭୂଇଁରେ । ବାହୁନି ବାହୁନି ଧାଏଁ; ସଂସାର ଛାଡ଼ି ସେ ହୁଏ ଅସହାୟ । ଶାଗୁଣା ଓ ଶୃଗାଳ ବ୍ୟତୀତ କାନ୍ଦିବାକୁ ତା ଦେହ ଚାରିପାଖରେ କେହି ନ ଥାନ୍ତି । ତେଣୁ ତା ମନରେ ତିନିଗୋଟି ନାଗ-ଛୁଆର ନାଚ । ଚେତନାର ତିନି ସ୍ତରରେ ତାର ବିଭ୍ରାଟ ଘଟେ ।

'ଥକାମନ ଚାଲଯିବା ଚକାନୟନ ଦେଖିବା

ଶଙ୍ଖନାଭି ମଣ୍ଡଳରେ ବେନି ନେତ୍ର ପଖାଳିବା'ର ଉଚ୍ଚାରଣ କଲେ ବି ସମର୍ପିତ ଅସଂଖ୍ୟ ନାରୀର ଉତ୍ତୁଙ୍ଗ ମନ୍ଦିର ଆଡ଼େ ତାର ହାତ ଉତ୍ତୋଳିତ ରହେ । ଏକ ପଟେ 'ବିଜେ କର ଆହେ ନୀଳ ଶଇଳ ମତ୍ତ ବାରଣ/ସେ ଆରତ ପଦ୍ମମାନ କରିବାକୁ ଦଳନ' ଅନ୍ୟ ପଟେ 'ରଜାଙ୍କ ବାଙ୍କିଆ ଚାଲେ ଝୁଲି ଝୁଲି/ସମ୍ବଲପୁରୀ ମାରୱାଡ଼ି ଛିଟ ଫେଟା ଶାଢ଼ୀ ଓ ପଗଡ଼ି' ମଧ୍ୟରେ ବିଚରା ଜୟନ୍ତ ମିଶ୍ର ଅତି ନିଃସହାୟ । ତାର ନା ଅଛି ସାମର୍ଥ୍ୟ, ନା ଅଛି ସମ୍ବଳ । ତେଣୁ ସେ ଅତି ଅସହାୟ ଭାବରେ ସ୍ୱୀକାର କରେ ଦାସତ୍ୱ । ମଠର ବଗଡ଼ା ଖାଏ । 'ହାତ ଦିଏ ସାଧୁଙ୍କର ଜଂଘ ଆଉ ଗଞ୍ଜେଇ ନଳୀରେ' । ଏହିପରି ଭାବରେ ଅତି କାପୁରୁଷ ଅଟେ ଏଇ ଜୟନ୍ତ ମିଶ୍ରଟି । ତା'ର ଘର୍ମାକ୍ତ ମୁଣ୍ଡରେ 'ସୂର୍ଯ୍ୟ ଡିଏଁ... ଘଣ୍ଟ ଧ୍ୱନି... ସ୍ୱରର ଲହଡ଼ି ଡିଏଁ ।' ପ୍ରତିକ୍ରିୟାହୀନ ନିର୍ଜୀବ ଏଇ ଚରିତ୍ରଟିକୁ କବି ଅତି ସଫଳ ଭାବରେ ଆଙ୍କି

ପାରିଛନ୍ତି । ଆଧୁନିକ ଓଡ଼ିଆ କବିତାରେ 'ଗୋବର ଗଣେଶ', 'ଶୁକଦେବ ଜେନା' ପରି ଏହି 'ସ୍ୱାମୀ ଜୟନ୍ତୀ ମିଶ୍ର' ଚରିତ୍ରଟି ମଧ୍ୟ ଏକ ନୂତନ ସ୍ୱରୂପର ।

'ଶଙ୍ଖନାଭି' ପୁସ୍ତକର କବିତା ଗୁଡ଼ିକର ଭାବ ସମ୍ପଦ ଏହିପରି ଭାବରେ ଭିନ୍ନମୁଖୀ । କବି ମାନସର ନୀଳ ତମାଳଟି କେଉଁଠି ମୃତ୍ୟୁର ସେହି ଶ୍ୟାମଘନ ରୂପ ଦେଖିଛି ତ, କେଉଁଠି ସେହି ଶ୍ୟାମଘନ ରୂପରୁ ବଞ୍ଚିବାର ନୂତନ ସ୍ୱାଦ ଆସ୍ୱାଦନ କରିଛି । ନିମ୍ନଲିଖିତ କେତୋଟି ପଂକ୍ତିରୁ ତାଙ୍କର ମୃତ୍ୟୁ ଚେତନାର ସ୍ୱରୂପକୁ ଲକ୍ଷ୍ୟ କରାଯାଇପାରେ –

(୧) 'ଯେତେବେଳେ ଯେ ଯୁଆଡ଼େ ବାଣ୍ଟିନେଲେ ରାତିଟିକୁ ତାଟି ଓ କବାଟ
କିଳି ଭାରି ମୋତେ ଭୟ ହେଲା ରେଜେଇ ଭିତରେ ।'

(୨) 'ସେମାନଙ୍କ ସ୍ୱର ସବୁ ନିଶବ୍ଦ ରାତିରେ
ଅନେକ ଉଦ୍‌ବିଗ୍ନ ବନ୍ୟ ମଇଁଷିଙ୍କ କାନରେ ବାଜୁଛି'

(୩) 'ମୋ କୋକେଇ ନଉଚି ମୁଁ ପ୍ରତିଦିନ ସିଂହଦ୍ୱାରୁ
ସ୍ୱର୍ଗଦ୍ୱାର ଯାଏଁ ଛ ଖଣ୍ଡି ସିଗେରେଟ, ଛ ଖଣ୍ଡି
ଡିଆସିଲ କାଠି ନେଇ ଜାଳେ ତାକୁ ଜହ୍ନର ନିଆଁରେ ।'

ଏହା ବ୍ୟତୀତ କବିଙ୍କର ନିଃସଙ୍ଗତା ଓ ଆଦର୍ଶର ନଷ୍ଟରୂପର ଭାବନା ଏହିପରି ।

'ମୁଁ ନିଶ୍ଚିତ ମରୁ ଓଟ ବେକ ଟେକି ଦେଖୁଅଛି ଦୃଶ୍ୟ
ଆଦର୍ଶର କୁଜ ରଖି ପିଠି ପଟେ ସେମିତିକା ବୁଲୁଅଛି ଖାଲି' ।

ସେହିପରି ଉପମା ଓ ଚିତ୍ର କଳ୍ପର ପ୍ରୟୋଗରେ କବିଙ୍କର ମୌଳିକତା ଫୁଟି ଉଠିଛି ।

ଯଥା– 'ପକ୍ଷାଘାତ ହଂସ ବେକ ମୋର' (ପୃ-୨)
'କାଗଜ କଦମ୍ବ ଆଉ କାଠସଖୀ ବାର୍ଣ୍ଣିସର ହସ' (ପୃ-୩)
'ଦୁଇଗୋଟି ପାରଦର ଶୂନ୍ୟହାତ' (ପୃ-୩୭)
'ଚଟାଣ ଉପରେ/ଶୁଖିଲା ଝରଣାର ଦାଗ ଭଳି ଖରା ପଡ଼ିଛି ।' (ପୃ-୬୫)
'ଆକାଶର ଥମ ଥମ ନେଳି' (ପୃ-୩୮)
'ଟେରେଲିନ୍ ପକ୍ଷୀ ସବୁ' (ପୃ-୪୯)

ଆଲୋଚନାରେ ଉଦ୍ଧୃତ ବିଭିନ୍ନ ପଦ୍ୟ ଅଂଶରୁ କବିଙ୍କର ବିଭିନ୍ନ ପ୍ରୟୋଗର ସୁନ୍ଦର ପରିଚୟ ମିଳେ । 'ମଧୁରାଷ୍ଟକ ଜନ୍ମ ଓ ମୃତ୍ୟୁ'ର କବିତାରୁ ଉଦ୍ଧୃତ ନିମ୍ନ ପଦ ମାନଙ୍କରୁ ତାଙ୍କର ଚମତ୍କାର ପ୍ରୟୋଗର ସ୍ୱରୂପ ଲକ୍ଷ୍ୟ କରାଯାଇପାରେ ।

(୧) 'ଏକ କ୍ଷୁବ୍‌ଧ ପ୍ରତିବାଦ
କ୍ଷୀଣମଗ୍ନସ୍ୱର ବାଲ୍ମୀକର
ମୁଁ ଜୀର୍ଣ୍ଣ ସମାଧି ?'

(୨) 'ହେ ବନଗିରି ହେ ଲତା ଗିରି/କାହାପାଇଁ ଗଲି କହ ମାୟା ମୃଗ ମାରି ।'

(୩) 'ହେ ଶବର ! ଏ କି କଲ/ଗୋଟିକୁ ଦୁଇଟି କଲ ।'

(୪) 'ପ୍ରଳୟ ପୟୋଧି ଜଳେ... ଶିଶୁ ବଟ ପତ୍ରେ
ଅସହାୟ ବର୍ତ୍ତମାନ ଭାସୁଅଛି ଭବଜଳେ ।'

(୫) 'ଦିନେ ସୀତା ଲିପୁଥିଲେ ଘର/କୋଠି ଘର, ଧନୁଘର ଖଳା ଓ ଖମାର ।'

ନିମ୍ନ କବିତାରୁ କବିଙ୍କର ବର୍ଣ୍ଣନା ଶୈଳୀର ଉଦାହରଣ ମଧ୍ୟ ଦିଆଯାଇପାରେ । ଯଥା:—

(କ) 'ମୁଁ ମହାପାତକୀ ରାମ
ରମଣୀର ବିଚ୍ଛେଦ ମୋର ରମଣର ମଧୁଲଗ୍ନ ।'

(ଖ) 'ଦେଖ...ଦେଖ
ବୁଡ଼ିଯାଏ ସୂର୍ଯ୍ୟବଂଶ ଲୋହିତ ଅନ୍ଧାରେ
ତୀକ୍ଷ୍ଣ ବଡ଼ଭୀର ଛାଇ ବିଦ୍ଧ କରେ ଅସ୍ତାଚଳ
ସରଜୁ ନଈରେ...'

ଭାବ ବସ୍ତୁ ଓ କାବ୍ୟ ଶୈଳୀ ଉଭୟ ଦୃଷ୍ଟିରୁ ବିଚାର କଲେ 'ହରିହରଙ୍କ କୃତି ପରମ୍ପରା ସହ ଆଧୁନିକତାର ଏ ସାର୍ଥକ ସେତୁରେ ନିର୍ମିତ ଓ ସାମାଜିକ ପରିବର୍ତ୍ତନର ହେତୁ ବର୍ଣ୍ଣିତ କାବ୍ୟ ସଂସ୍କୃତି ହିଁ ଶଙ୍ଖନାଦ ।'

୧୯୭୭ ମସିହାରେ 'ଇସ୍ତାହାର'ରେ ପ୍ରକାଶିତ ।



# ଚନ୍ଦ୍ରବିମ୍ବ ଓ କବି ହରିହର

*ଅଶ୍ୱିନୀ କୁମାର ମିଶ୍ର*

ପୁସ୍ତକଟିର ପ୍ରଚ୍ଛଦ ପଟରୁ ହିଁ ରହସ୍ୟମୟତାର ସୃଷ୍ଟି । ଯେଉଁ ରହସ୍ୟ ଜାଗରୁକ ବିଶ୍ୱର କୌଣସି ନା କୌଣସି ପାର୍ଥିବ ଅନୁଭୂତିକୁ ନେଇ ହିଁ ସଙ୍ଗଠିତ । ଏଠି ଶିଳ୍ପୀ ଜଣକ ପ୍ରାରମ୍ଭରୁ ହିଁ ମେଲି ଦେଇଛନ୍ତି ଭୌତିକ ଉପଖ୍ୟାନଟିଏ । ପିଲିସଜ ଉପରେ ଜଳନ୍ତା ମହମବତୀ ଖଣ୍ଡେ । ପବନରେ ଫଡ଼ ଫଡ଼ ହେଉଛି- ତାରି ଧାପେ ସରିକି ଶିଖାଟିଏ । କିନ୍ତୁ ସେତିକିରେ କଥା ସରିଯାଇନାହିଁ । ତା ଭିତରେ ଦଗ୍ଧୀଭୂତ ନ ହୋଇ ଲାଖି ରହିଛି ସୁନ୍ଦରୀ ନାୟିକାଟିଏ । ଯେମିତି ଶିଖା ଖଣ୍ଡିକ ତାରି ରୂପ ଲାବଣ୍ୟକୁ ତେଜୀୟାନ୍ କରିବା ଦିଗରେ ସାମର୍ଥ୍ୟ ଦେଉଛି ସିନା, ବାଡ଼୍‌ବାନଳର ଲେହନରେ ଧ୍ୱଂସ କରିଦେବାର ସୂଚନା କିଛି ମିଳୁନାହିଁ । ଏଇ ଚିର ରହସ୍ୟ କଥା ଭୌତିକ ସାଜସଜ୍ଜାର ବିଦ୍ଧାଣୀ ଶଂସିତ କବି ହରିହର ମିଶ୍ର । ଯାର ଅର୍ଥ ନୁହେଁ ସେ ବାସ୍ତବତାଠୁ ନିଜକୁ ଆତ୍ମଗୋପନ କରାନ୍ତି । କୋଳାଗ୍ରତ କଳାବେଳକୁ ସେ ହୁଏତ ଆପଣା ସ୍ୱେଚ୍ଛାରେ ଚାହିଁ ରହନ୍ତି ଆଧିଭୌତିକ ଦିଗ୍‌ବଳୟକୁ । ମାନସିକ କେଦାରରେ ପ୍ରସ୍ଫୁଟିତ ହୁଏ ପାରତ୍ରିକ ଜୀବନର ଅପାରମ୍ପରିକ ଅଶ୍ରୁତପୂର୍ବ ଘଟଣାବଳୀ । ଯାହାକୁ ଇତିହାସ ବୈଜ୍ଞାନିକ ଚିନ୍ତନ ଆଳରେ ଆଲୋଚନାର ପରିସରରୁ ଏଡ଼ାଇ ଦେଇପାରେ, କିନ୍ତୁ ଶିଳ୍ପୀଙ୍କର ମାନସ ପଟରେ କାଳ୍ପନିକ ବିଷୟ ବସ୍ତୁର ଅବତାରଣା ଭିନେ ଧରଣର । 'ଚନ୍ଦ୍ର ବିମ୍ବ' ବିଭିନ୍ନ କାଳ୍ପନିକ ଉଦ୍‌ଗମ ଭିତରେ ହିଁ ନିଜର ବୈଭବ ଜାହିର କରିବାକୁ ଶପଥ ନେଇଛି । କାବ୍ୟ ନାୟିକା ଅଥବା ପ୍ରଣୟିନୀର ସ୍ମୃତିରେ ଉଜ୍ଜୀବିତ କେଇଧାଡ଼ି ଯେଉଁଠି ସମସ୍ୟା ବହୁଳ ପାର୍ଥିବ ଭୂଚିତ୍ରର ସବିଶେଷ ଉତ୍ତୋଳନ ଅଥଚ ହଜିଯାଇନି ମାନସ ପଟର ଛମ୍ ଛମ୍ ଭାବ, ରୂପେଲି ଜୀବନର ସନ୍ତୁଷ୍ଟ ପଦାବଳୀ । ତେଣୁ ହିଁ ନିମ୍ନୋକ୍ତ ଉକ୍ତି –

'ସାତରଙ୍ଗ ସାତ ସ୍ୱାଦ ସମୁଦ୍ରର ଅନେକ ପାଖୁଡ଼ା
ରହସ୍ୟ ଏ ପୃଥିବୀର ଗର୍ଭକୋଷ ସଜେଇ ରଖିଛି
ଅଣଚାଶ ପବନରେ ବିସ୍ମୟ ତା ଆଶ୍ଚର୍ଯ୍ୟ ସୁବାସ
ଆକାଶ ଆକାଶ ଘେରି ଉଡୁଛନ୍ତି ଜହ୍ନ ଆଉ ତାରା ମହୁମାଛି ।'

ଆକାଶ ଓ ସମୁଦ୍ରର ବ୍ୟାପ୍ତି ହିଁ କବିତାର ଆଲେଖ୍ୟ, କବି ହରିହର ମିଶ୍ରଙ୍କ । ସାମୁଦ୍ରିକ ଚେତନା ତଥା ଆକାଶର ଦିଗନ୍ତ ବ୍ୟାପି ମାଧୁରିମାରେ ଅନୁରଣିତ ତାଙ୍କ ପଂକ୍ତି ସମୂହ । ଆଶାବାଦର ସୁନେଲି ଝଲକ ନିୟନ୍ତିତ କରେ କବିତ୍ୱର ସୂକ୍ଷ୍ମତନ୍ତ୍ରୀ ଗୁଡ଼ିକୁ 'ତମେ ସବୁ ଆସୁଥିବ ନଈକୂଳେ ସଭାଶେଷ କରି ଯେଉଁଠିକି କେତେଗୁଡ଼େ ବାସଚ୍ୟୁତ କର୍ମଚାରୀ ଶରଣାର୍ଥୀ ଦଳ, ଏ ପୃଥିବୀ ଏ ମାଟିରେ କିଛି କିଛି ହରିତ୍ ଆଶା ଧରି, ସେମାନେ କରନ୍ତି ତାଙ୍କ ଲହୁ ଲୁହ ମାଂସର ସଂଗ୍ରାମ' ଇତ୍ୟାଦି । 'ହରିତ୍ ଆଶା' ସୁନ୍ଦର ବିଶେଷଣଟିଏ । ଜିଇଁବାର ପୁଲକିତ ଉଚ୍ଚାରଣ । ସଂଗ୍ରାମୀ ଜୀବନର ଗତିପଥରେ ଏକ ପୁଷ୍ପିତ ଅନୁରାଗ । ସମଗ୍ର ପୃଥିବୀକୁ ଅନ୍ଧାରର କଳାପର୍ଦ୍ଦା ଘୋଡ଼େଇ ଦେବାକୁ ବସିଥିଲା ବେଳେ କେବଳ ଜୁଳୁ ଜୁଳୁ କରୁଛି ଖଦ୍ୟୋତ ରୂପୀ ଶିଳ୍ପୀ-ମାନସ । କାବ୍ୟିକ ସତ୍ୟତାର ଧୂରୀଣ ଯୋଜନାଟିଏ ଏଠି ସଫଳତାର ଚାବିକାଠି ଛୁଇଁଛି । ଗ୍ରହ ତାରା ଫିଉଜ୍ ହୋଇଗଲା ପରେ ବି ଶିଳ୍ପୀମାନସ ମନ ମତାଣିଆ ନିଜସ୍ୱ ଉଚ୍ଛ୍ୱାସରେ ଜୁଡ଼ୁବୁଡୁ ।

'ଏ ପୃଥିବୀ ଜଳମଗ୍ନ ହୁଏ ଅବା ଗ୍ରହତାରା ଫିଉଜ୍ ହୋଇଯାଏ
ନିଷ୍ପ୍ରଦୀପ ଅନ୍ଧାରରେ ଅଭିଭୂତ ମନ ପଡ଼ି ରହେ
ଏତେବେଳେ ଉଠିବି ମୁଁ ଉଚ୍ଛ୍ୱାସର ସର୍ବୋଚ୍ଚ ଜୁଆରେ
ଗାଇବାକୁ ପ୍ରାଣଭରି ଯନ୍ତ୍ରଣାର ଅବୋଧ ବୀଣାରେ । ('ପୂର୍ବାଶା')

ଅତ୍ୟଧିକ ଭାବସାନ୍ଦ୍ରତା, ଛାୟାବାଦ ଏବଂ ସମୟ ବିଶେଷରେ ସ୍ୱୈରବାଦୀ ମେହଫିଲ୍‌ର ରଙ୍ଗୀନ ସଂଳାପ ତଥା ମାନସିଂ ପ୍ରଣୋଦିତ କାବ୍ୟିକ ଚେତନାର ସବୁଜ ଡାଳରେ ସମୟ ଜାଣି ଶୁଭିଯାଏ ଅନାବନା ଚଢ଼େଇଙ୍କ ଅସୁମାରି ରାଗ ସଙ୍ଗୀତ । ଏଇ ପ୍ରବାହର ଗତି ପଥ ଧୂସର ପଡ଼ି ଆସୁଥିଲା ବେଳେ କବି ତାକୁ ଉଜ୍ଜୀବିତ କରିବାର ଦାୟିତ୍ୱ ନେଇଛନ୍ତି । ଯଥା:-'ହଜେଇ ଦେବନି ସେଇ ଟିକକର ସିନିହ, ସୋହାଗ, ପାଦଚିହ୍ନ, ଥିବ ଆମ କଅଁଳ ସେ ସ୍ମୃତିର ବାଲିରେ, ଜୋଛନା ଆସିବ ନିତି ଫୁଲ ଧରି ତାକୁ ସଜାଇବ, ଶିଶିର ଧୋଇବ ତାକୁ... ମାଜିବି ମୁଁ ସପନ ରଙ୍ଗରେ ।' କବିତାର ନିଗୂଢ଼ ବିଶ୍ଳେଷଣ ଭିତରେ ଭରି ଯାଇଛି ମାୟାଜାଲର ଆସ୍ତରଣ । ତେଣୁ ଶବ୍ଦାର୍ଥ ପ୍ରକରଣ ଭିତରେ କୌଣସି ପାଠକ ତାର ମାନସକୁ ଅନୁଗୃହୀତ କଲାଭଳି ବୋଧବ୍ୟଞ୍ଜକ ଭାବରାଶି ନ ପାଇଲେ ହରିହର ମିଶ୍ରଙ୍କୁ ଦୋଷ ନ ଦେବାକୁ ମୁଁ ଆଗତୁରା ଜଣେଇ ଦେଉଛି । କାରଣ କବିଙ୍କ ନିଜସ୍ୱ ଅବଲୀଳା ଏଇଭଳି କ୍ଲାସରୁମୀୟ ସଂଯୋଜନାକୁ ବହୁଳ ଭାବରେ ଉପେକ୍ଷା କରି ଚାଲିଛି । ବୁଝି ହେଉଥିଲା ଭଳି ଅର୍ଥ ବୟାନ ଦିଗରେ ତାଙ୍କ କବିତାଗୁଡ଼ିକ ସବୁଦିନ ନିଷ୍ପୃହ ଓ ଉଦାସୀନ । ହରିବାବୁ ଜଣେ ଉଚ୍ଚତର ଚେତନାର ମହନୀୟ ଶିଳ୍ପୀ । ଏଇ ଚେତନା କେବେ କେବେ

କାଳ୍ପନିକ ଆଉ କେବେ କେବେ ଜୀବନଠୁ ଆହୁରି ବାସ୍ତବମୟ । ତେଣୁ ସେ କେତେବେଳେ ଲାଖି ଯାଇଛନ୍ତି କେଉଁ ତୁଙ୍ଗ ଶିଖରୀର ଚୂଡ଼ାରେ ଆଉ କେତେବେଳେ ବିଧୌତ ନଈ ପଠାର ନିର୍ଜନ ବେଳାରେ । କେବେ କେବେ ପାଉଁରୁଟି ଦୁଧବାଲାର ଟିଣି ଟିଣି ଡାକରେ ଆଉ କେବେ ସଦର ମଫସଲର ଯୌଗିକ ଅପମିଶ୍ରଣର ଅଧୁନା ଆବଭାବରେ । ମନ ଯେତେବେଳେ ଯେଉଁଠିକି ଚାହୁଁଛି, ସେଇଠିକି ହୁଁ ଉତ୍ତୀର୍ଣ୍ଣ ହେଉଛି । ରୋକା ଯାଉନି ତାକୁ । ବଲ୍‌ଗାହୀନ ଅଭିପ୍‌ସା ହିଁ ତାଙ୍କ ମୂର୍ତ୍ତିମନ୍ତ କାବ୍ୟରୀତିର ଅସଲ ରହସ୍ୟ । ତେଣୁ ସକଳ ଜ୍ଞାନ ଗୁଞ୍ଜରଣ ଭିତରେ ସେ ମାୟାବାଦର ଜଣେ ଅସଲ ପୁରୋଧା । ଆଧୁନିକତା ଓ ପରମ୍ପରାର ଲୋଭନୀୟ ଉନ୍ମେଷ ଭିତରେ ହିଁ ହରିହର ମିଶ୍ରଙ୍କ କାବ୍ୟିକ ବ୍ୟକ୍ତିତ୍ୱ ଦଣ୍ଡାୟମାନ । ଏହା ତାଙ୍କର ଅନ୍ୟ କବିତା ସଙ୍କଳନ ଯଥା- 'ଅକ୍ଷମ ଦେବତା' 'ଲାଲ କଢ଼ର ତପସ୍ୟା' ପାଇଁ ମଧ ପ୍ରଯୁଜ୍ୟ । ସମାଜର ପୂଜା, ପର୍ବ, ଓଷା, ବ୍ରତ, ରୂପକଥା ପ୍ରତି ତାଙ୍କର ରୋମାଣ୍ଟିକ୍ ମୋହ ଏବଂ ବର୍ତ୍ତମାନର ଆଧୁନିକ ମାନସର ତା' ପ୍ରତି ପରାଙ୍ମୁଖତା, ଏହା ମଧରେ ତାଙ୍କର ଚେତନା ଦ୍ୱିଧାଗ୍ରସ୍ତ । ହିପୋକ୍ରେସୀ ଭିତରେ ମଣିଷ କେଉଁ ଭଳି ସତ୍ତ୍ୱେ, ତା'ରି ଦୃଷ୍ଟାନ୍ତ 'ଅପୂଜା ଗୋଲାପ' କବିତାଟିରେ। ଗୋଲାପଟିକୁ ଦେବତାକୁ ନ ଦେଇ ପ୍ରେମିକାକୁ ଦିଅନ୍ତି ।

ତୁମେ କଣ ଭଗବାନ ବୁଝି ନାହଁ,
ଯୌବନର ନଦୀ ବୁକେ ବିପରୀତ ସ୍ରୋତେ
ଉଚ୍ଛୃଙ୍ଖଳ ସମାଜର ପିତା ମାତା ଥିବା ସତ୍ତ୍ୱେ
ଏକ ଲକ୍ଷ୍ୟ ........... ଏକ ଆବେଗରେ
ଅନ୍ୟ ଏକ ଉଦ୍ଦେଶ୍ୟରେ
ଭାସିଯାଏ ସମର୍ପିତ ପ୍ରାଣେ
ତୁମ ପାଇଁ ନୁହେଁ ତାହା ହେ ଦେବତା !

ତୋଫାନ୍‌ର ରାଗିଣୀ, ଭାବ ମୁଗ୍‌ଧ ମୂର୍ଚ୍ଛନା, ଶବ୍ଦର ଓଁ କାର, ଆତ୍ମାର ଛନ୍ଦମୟ ଉକ୍ତି ଓ ପୋଖରୀ ତୁଠର ନିଘଞ୍ଚ ଭାସମାନ ମୁହୂର୍ତ୍ତ, ଏଇ ସବୁ ହିଁ କବିଙ୍କ କବିତାମାଳାରେ ପୌନଃ ପୌନିକ ଭାବେ ସଙ୍ଗଠିତ ହୋଇ ଆସିଅଛି । ରୂପକଳ୍ପ ଓ ଚିତ୍ରକଳ୍ପର ଆବିର୍ଭାବ କବିତା ସମୂହରେ ଅବିରଳ ନୁହେଁ । ଯଥା- 'ଭୁଆସୁଣୀ ରତୁ ହସୁଥିବ ଶାଳଗଛ ଉହାଡ଼ରେ ଉଗ୍ର ମଧ୍ୟାହ୍ନରେ', 'ଖରାର ସଫେଦ୍ ଚର୍ବି ତା ମୁହଁରେ ଯାଇଥିବ ସିଝି', 'ସମୁଦ୍ର ଯେ ଜଳୁଥିଲା ଅବା ସେଇ ଗନ୍ଧକର ଜହ୍ନ, ଚାରିପଟେ ତାଳିମାରି ଜଗୁଥିଲେ ଦଳ ଦଳ ନୋଳିଆ ମେଘର', 'ବାରମ୍ବାର ବିଦ୍ଧ ହୁଏ ଦୃଷ୍ଟି କ୍ରୁଶେ କଅଁଳ ମୋ ହୃଦୟର ଯୀଶୁ', 'ପାହାଡ଼ରୁ ଗଡୁଥିବା

ସାପପରି ମତେ ଦେଖ୍ ତୁମ ଛାତି ଲୁଗା ଖସୁଅଛି' ଇତ୍ୟାଦି କବିଙ୍କ ଇଙ୍ଗିତଧର୍ମୀ ବୟାନକୁ ସମ୍ମାନ ଜଣାଉଚି । ପୁନଶ୍ଚ ବାସିଫୁଲ ଏ ଭଳି ପରାକାଷ୍ଠାର ବ୍ୟାପ୍ତିରେ ଆହୁରି ଝଲମଲ, ଯଥା-'ମୋହରି ପାତଳ ଦେହେ ତୁମେ ଏକ କୋହଲିଆ ପାଗ' କିମ୍ବା ସେଇ କବିତାର ଅନ୍ୟ ଏକ ପଂକ୍ତି 'ତୁମରି ବ୍ଲାଉଜ୍ ତଳେ ଗୁପ୍ତ ଏକ ଚିଠି ପରି ମୁହିଁ' ଓଠର ଝୁମୁକାରେ ନିଜକୁ ବିସର୍ଜନ କରୁଛି । ଦେହରୁ ଦେହାତୀତ, ଶୂନ୍ୟରୁ ଶୂନ୍ୟାତୀତ ଚେତନାକୁ ଗମନ କଲାବେଳେ ଇନ୍ଦ୍ରିୟୋତ୍ତର କାବ୍ୟାନୁଭବ ଭିତରେ କବିଙ୍କୁ ବଞ୍ଚି ରହିବାକୁ ପଡୁଛି । ଜନ୍ ଡନ୍ ଏଇଭଳି କାବ୍ୟିକ ଅନୁଗାମୀ ହୋଇ ସପ୍ତମ ଶତାବ୍ଦୀର ଇଂରେଜୀ କବିତାକୁ ଋଦ୍ଧିମନ୍ତ କରିଥିଲେ । ଲରେନ୍ସ ଶାରୀରିକ ଅନୁଭବ ଭିତରେ ହିଁ ନିର୍ବାଣର ଶୁଭ ସୂଚନା ଦେଖିଥିଲେ, "Immortality, the heaven, is only a projection of this strange but actual fulfilment here in the flesh." ସାଧାରଣ ଆଦିବାସୀ ଜନ ଜୀବନରେ କିନ୍ତୁ ଏହାରି ଉଦ୍ଧୃତି ଆହୁରି ଉଚ୍ଚାଟ ଓ ସ୍ପଷ୍ଟ । କନ୍ଧ କବିତାର ଏକ ଇଂରେଜ ଅନୁବାଦ କବି ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କର ଏକ ସଙ୍କଳନରୁ "He saw ripe lemons on her tree. How could he control his hunger, ଏଭଳି ନିର୍ଭୀକ ଉଚ୍ଚାରଣ ଅନ୍ୟ କୌଣସି ମଧ୍ୟବିତ୍ତ ଶ୍ରେଣୀ ସମ୍ଭୂତ କବି ଦ୍ୱାରା ହୋଇ ନ ପାରେ, ଆଉ ହରିହର ମିଶ୍ର ବା ବାଦ୍ ଯିବେ କିପରି ? ନଗରାଭିମୁଖୀ ସଭ୍ୟତା ପଛରେ ପକେଇ ଦେଇଛି କୃଷିଭିତ୍ତିକ ସଭ୍ୟତାକୁ । ଗଳିତ ଜରାଜୀର୍ଣ୍ଣ ସଭ୍ୟତାର ମୁହଁରେ ଉଷର ଜୀବନର ମରୁଝଡ଼ । ଅପରାହ୍ନ ଏଠି ଯାନ୍ତ୍ରିକ ଅଧୋଗତିର ପୋଷାକରେ ହିଁ ଅବତୀର୍ଣ୍ଣ ।

ମଡ଼ର୍ଣ୍ଣ କାଫେର ଟେବୁଲ୍ ସାମ୍ନାରେ
ଆସେ ଏ ପୃଥିବୀ ଯେବେ ଆହତା ପତିତା ପରି
ଆଖି ତଳେ ବିଷାକ୍ତ ଧୂଆଁର ଚିହ୍ନ
ଛାତିରେ ବିସ୍ଫୋରଣର ଦୁଃସ୍ୱପ୍ନ ଧରି
ଅପରାହ୍ନର ଧୂମ ଶିଖା ଦିଗନ୍ତ ଲିଭେଇ ଆସେ । (ଅପରାହ୍ନ)

ଉପରୋକ୍ତ କବିତାର ଅନ୍ୟ ଦୁଇ ପଂକ୍ତି 'କଳା ଭଅଁରର କାର୍‌ଟିଏ ଉଡ଼ିଯାଏ କୋଳ କରି ପାଖୁଡ଼ାର ମୁହଁଟିଏ' ପ୍ରତୀକାତ୍ମକ ବୈଭବରେ ଗରୀୟାନ । ଶିଳ୍ପୋନ୍ନତ ସଭ୍ୟତା ତାର ଆସୁରିକ ବାହୁ ବିସ୍ତାର ଭିତରେ ଗିଳି ପାରିନି ପ୍ରକୃତିର ଅମାୟିକ ପ୍ରଲୁବ୍ଧତାକୁ । ଏଇ ପ୍ରତିନିବିଷ୍ଟ ଉଚ୍ଚାରଣରୁ କେଇ ଧାଡ଼ି,

ପବନ ହରାଇ ନାହିଁ ଆଜି ଯାଏଁ ପ୍ରାଣ ସାଙ୍ଗେ ସମ୍ପର୍କ ତାହାର
ପବନ ହଜାଇ ନାହିଁ ପତ୍ର ସାଙ୍ଗେ ତାଳ ଲୟ ଛନ୍ଦର ମର୍ମର
ବୁଲ୍‌ଡୋଜର୍ ଭାଙ୍ଗି ନାହିଁ ଶୋଇଥିବା ନିଦ ଏ ପକ୍ଷୀର ('ଐରାବତ')

ସବୁଜ ପତ୍ର ସହିତ ପବନର ସମ୍ପର୍କ ତୁଟୁଗୁଲି ଯାଇନି ଏବଂ ସେଇ ପରିପ୍ରେକ୍ଷୀରେ ବୁଲ୍‌ଡୋଜର୍‌ର ଯାନ୍ତବ ଚିତ୍କାର ଶୋଇଲା ପକ୍ଷୀର ନିଦକୁ ଭାଙ୍ଗି ପାରିନି । କବି ନିଜସ୍ୱ ସମୃଦ୍ଧମୟୀ କଳ୍ପନାରେ ଅଟଳ ଓ ଏଇ ବୈଷୟିକ ଉପସ୍ଥାପନା ହିଁ କବିଙ୍କର କାବ୍ୟିକ ଉତ୍ତରଣର ଅସଲ ମଞ୍ଚ । ତେବେ ଆଉ କେଉଁଠି ହରିବାବୁ କ୍ଳିଷ୍ଟତାର ଅନୁବ୍ରତୀ । ବହୁ ଚେଷ୍ଟା ସତ୍ୱେ ଯେଉଁ କେତୋଟି ଧାଡ଼ିରୁ କିଛି ବୁଝିବା କଷ୍ଟପ୍ରଦ ହୁଏ ଓ ସେଇ ହିସାବରେ ଆଧୁନିକ କବିତାର ଦୁର୍ବୋଧତା ତଥା ପାଠକର ଆଡ଼ରୁଷା ଭାବ ଉଭୟଙ୍କ ପାଥେୟ କରିବାକୁ ହୁଏ, ଯଥା:- 'ପାହାଡ଼ର ଅର୍ଦ୍ଧେକରେ ଚା' କପ୍ ଫିଙ୍ଗି ଦେଇ ରେଷ୍ଟୋରାଁ ଭିତରେ ଶୁଣୁ ଅଛି ସେମାନଙ୍କ ସାହସ ଓ ଚଟାଣରେ ପଡ଼ିଥିବା ସର୍ପର ମହିମା ରକ୍ତାକ୍ତ ଗୋଖର ଏକ... ଦୁର୍ଘଟଣା ପଶୁ ପଶୁ ରେଷ୍ଟୋରାଁ ଭିତରେ... ଦିନରେ ନିଭିଲା ଦୀପ' ଇତ୍ୟାଦି ପଂକ୍ତି ଗୁଡ଼ିକର ଅନ୍ତର୍ନିହିତ ଜିଜ୍ଞାସା ସ୍ପଷ୍ଟ ନ ହୋଇ ଦୁର୍ବୋଧତାର ବାହକ ହୋଇଛି । ଏହା ଅନ୍ୟ ଅର୍ଥରେ କବିଙ୍କ ଦୁର୍ବଳ ଦିଗର ସୂଚନା ଦେଉଛି ।

ମଣିଷର ସ୍ଥିତିକୁ ନେଇ ସାମ୍ପ୍ରତିକ ଜୀବନରେ ଯେଉଁ ସଂଶୟ ଓ ଦ୍ୱନ୍ଦ୍ୱ, ଆଧୁନିକ କବିତା ତାକୁ ଉଣା ଅଧିକେ ନିଜର କଳେବର ଭିତରେ, ପୀଡ଼ିତ ମାନବାତ୍ମାର ଉଚ୍ଚାରଣ ସ୍ୱରୂପ, ଆଲେଖ୍ୟ ଅଙ୍କନରେ ବ୍ରତୀ । କିନ୍ତୁ ଏ ଅଙ୍କନରେ ମଧ୍ୟ ନିଜ ଅବଚେତନ ମନର ସମ୍ପୂର୍ଣ୍ଣ ପ୍ରତିଫଳନ ହୋଇପାରୁନାହିଁ । କନ୍ଧ ଯୁଆଙ୍ଗ କବିତାଗୁଡ଼ିକର କବିମାନେ ପ୍ରତୀକ-ଧର୍ମୀତାର ଆଶ୍ରୟ ନେଲେ ସୁଦ୍ଧା ନିହାତି ସ୍ପଷ୍ଟ ଭାବରେ ନିଜର ମାନସିକ ଚିନ୍ତାକୁ ଫୁଟେଇ କହି ପାରୁଛନ୍ତି କିନ୍ତୁ ଆମ କବିମାନଙ୍କୁ ଭଦ୍ରାମି ହିଁ ଘାରୁଛି । ଇଂରେଜୀ ସମାଲୋଚକ ଏଲ୍ ଭାରେଇ୍ଙ୍କ ଭାଷାରେ "A disesase so often found in English culture is gentiliy, a belief that life is always more or less orderly, People always more or less polite, their emotions and habits more or less descent and more or less controllable that God, in short, is more or less good. ଅବଶ୍ୟ ଓଡ଼ିଆ କବି ହିସାବରେ ହରିହର ମିଶ୍ରଙ୍କୁ ଯେ ଏ ସବୁ ଘାରୁଛି, ମୁଁ ତାହା କହୁନାହିଁ, ତେବେ ନିଜକୁ ଆହୁରି ମୁକ୍ତ ଓ ସ୍ପଷ୍ଟ ଭାବରେ ଉଚ୍ଚାରିତ କରିବାର ଥିଲେ ଜଣେ କବିଙ୍କୁ ଆହୁରି ସତର୍କ ଓ ଶାଣିତ ହେବାକୁ ପଡ଼ିବ ।

ହରିବାବୁଙ୍କ ନିମିଳିତ ଆକ୍ଷିପତା ଦୁଇଟିରେ ରହସ୍ୟଭାବର ଯେଉଁ ଗୋପନ କାରସାଦି, ବୋଧେ ଅନେକଙ୍କୁ ଅଛପା ରହିନାହିଁ। ସେ ଲେଖି ଚାଲନ୍ତି କେଉଁ ଐନ୍ଦ୍ରଜାଲିକ ମାୟାରେ, ସ୍ୱପ୍ନର କୁଟିକମ ବୁଣି ବୁଣି। କିରଣ ଓ କୁହୁଡ଼ିର ଯୁଗ୍ମ ମାୟା ଭିତରେ ଦିବ୍ୟ ମୂର୍ତ୍ତିଟିଏ ତାରି ସଜଳ ସ୍ନିଗ୍ଧ ଦୃଶ୍ୟରାଜିକୁ ପହଁରେଇ ନିଏ ଯଥା :-'ସେ ଆଉଜି ବସେ ଶୀତ କୁହୁଡ଼ିକୁ। ଧ୍ୟାନ ମଣ୍ଡଳରେ ଦିଶେ, ସେ ଚତୁର ରାଜହଂସ ପରି। କିରଣ ଓ କୁହୁଡ଼ି ଭିତରେ, ଅନେକ ସକାଳ ତା'ର ଡିନ୍ତିଯାଏ ରାତିର ଲୁହରେ ଓ ସେ ପଠାଏ ଶହ ଶହ ଦେହ ମନ ଜହ୍ନର ପାଖକୁ ଆମ୍ବୁଲାନ୍‌ସ ଅନେକ ମେଘରେ', ବିତାଇଦିଏ ମିଷ୍ଟିକାଲ୍ ବଚ଼ନ ଭଙ୍ଗୀର ଅବଶୋଷକୁ। ଖାଣ୍ଟି ଓଡ଼ିଆତ୍ୱ ତଥା ନିଛକ ସଂସ୍କୃତିପ୍ରାଣତା ଭିତରେ ଏ ମାଟିର ପାଣି ପବନରେ ପରିଶୋଭିତ ହୁଅନ୍ତି ତାଙ୍କ କବିତାଚାରୀ ବୃନ୍ଦ। ତେଣୁ ମାଟିର ଅନୁରକ୍ତି ହିଁ ତାଙ୍କ ଶୈଳ୍ପିକ ରହସ୍ୟର ଅନ୍ୟତମ ଯାଦୁକରୀ। ବସ୍ତୁତଃ ପଚାଶଟି ଯାକ କବିତା ମନଛୁଆଁ ନ ହେଲେ ସୁଦ୍ଧା ଅର୍ଦ୍ଧାଧିକ କବିତା ସମ୍ଭାବ୍ୟ ରହସ୍ୟମୟ ଉଚ୍ଚାଟନରେ, ଜାଗରୁକ ପୃଥିବୀର ଭାବ ବିନିମୟରେ ଦାର୍ଶନିକ ତଥା ଅନନ୍ୟ ଭାବରାଶିର ଅବବୋଧରେ କବିଙ୍କୁ ଓଡ଼ିଆ କବିତା ରାଜ୍ୟରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ କରେଇପାରିଛି। ହରିହର ମିଶ୍ର ସେଇ ଦୃଷ୍ଟିରୁ ଏକ ସଫଳ କବିତା ଗ୍ରନ୍ଥର ପ୍ରଣେତା ଓ ଏଇ ପରିପ୍ରେକ୍ଷୀରେ ସାମ୍ପ୍ରତିକ କାବ୍ୟଶିଳ୍ପୀ ସମୂହ ତାଙ୍କ ଅଧିସର ଜୀବନଚର୍ଯ୍ୟାରୁ କିଞ୍ଚିତ୍ ନିଜସ୍ୱ ଚଳଣି ପାଇଁ ସାଇତି ରଖିଲେ ଏ ସମାଲୋଚନା ଲେଖିବାର ସାର୍ଥକତା ବଳେ ପାଇଯିବି ବୋଲି ମୋର ଆଶା ଓ ବିଶ୍ୱାସ। ମୁଁ ସଙ୍କଳନଟିର ବହୁଳ ପ୍ରସାର କାମନା କରୁଛି।

**ସଂପାଦକ**
ଓଡ଼ିଆ ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର
(ସମାସ ଓ ସ୍ଫଟିକ କାବ୍ୟାଲୋକରେ ସ୍ଥାନିତ)



# ଦେବତାର ଅକ୍ଷମତା

*ବାଳକୃଷ୍ଣ ମହାପାତ୍ର*

ଭାରତୀୟ ସଂସ୍କୃତିରେ ଜରାବ୍ୟାଧି-ଦୈନ୍ୟ-ନିପୀଡ଼ନ-ଗ୍ରସ୍ତ ଅସହାୟ ମଣିଷଟି ନିଜର ପ୍ରତିଟି ପଦକ୍ଷେପରେ ଅପେକ୍ଷା ରଖି ଆସିଛି ସେହି ଏକ ପରମ କାରଣର, ଅଦୃଶ୍ୟ ନଟର ଯେ ତାର ସବୁ କିଛିକୁ ନିୟନ୍ତ୍ରଣ କରେ, ନିର୍ଦ୍ଦେଶ କରେ । ସେଥିପାଇଁ ଈଶ୍ୱର ସର୍ବଶକ୍ତିମାନ । ମାତ୍ର ଏଇ ମଣିଷର ସୁଖ-ଦୁଃଖରେ ସେ ଅଂଶୀଦାର । ସେଇଥିପାଇଁ ଏଇ ମଣିଷର ଅସୀମ କଳ୍ପନାରେ ଅନନ୍ତ ଶକ୍ତିର ଆଧାର ସସୀମ ମଣିଷ ଭିତରେ ଆତ୍ମପ୍ରକାଶ କରନ୍ତି । ସେ ତେଣୁ ନିଜକୁ ଉର୍ଦ୍ଧ୍ୱସ୍ଥିତିକୁ ଉନ୍ନୀତ କରାଇବାକୁ ସତତ ଚେଷ୍ଟିତ । ସେ ଜାଣେ ତା'ର ସୀମିତତା, ଅସହାୟତା । ମାତ୍ର ଦେବତ୍ୱ ଲାଭର କାମନା ପ୍ରାବଲ୍ୟ ତା' ମନରୁ ଲିଭି ଯାଏନା । ସେଇଥିପାଇଁ ତା'ର ବହୁ ଉପାୟ, ଅଜସ୍ର ପଥ । ତାରି ଭିତରେ ସେ ମଧ୍ୟ ଚାହେଁ ନିଜ ଭିତରକୁ ନିଠେଇ ନିଠେଇ । ଆତ୍ମାରେ ପରମାତ୍ମା, ବିନ୍ଦୁରେ ସିନ୍ଧୁ, ବ୍ୟକ୍ତିରେ ବିଶ୍ୱକୁ ବି ସେ ଦେଖେ । ସବୁ କିଛି ଭିନ୍ନ ସତ୍ତା ଏକାକାର ହୋଇ ମିଳେଇ ଯାଆନ୍ତି ସେଇ ପରମ-ସତ୍ତା-ଚିନ୍ତନରେ । ମାତ୍ର ସେଇ ଅଦୂର ଗୋଲକରୁ, ଐଶ୍ୱର୍ଯ୍ୟର ପରମ ଧାମରୁ ଦେବତା ବି ଓହ୍ଲାଇ ଆସନ୍ତି ମଣିଷ ନିକଟକୁ ତା'ର ହା ହୁତାଶ ଅପନୋଦନ ପାଇଁ, ତାଙ୍କ ପାଦ ବି ଧୂଳି ଧୂସରିତ ହୁଏ ସାଧାରଣ ମଣିଷ ପରି । ଯାହାର ଇଙ୍ଗିତରେ ଏଠି କଣ୍ଢେଇ ନାଚ ହୁଏ, ଯେ ସର୍ବଶକ୍ତିମାନ ସେ ବି କିଂ କର୍ତ୍ତବ୍ୟ ବିମୂଢ଼ ହୋଇଯାଏ, ସ୍ଥାଣୁ ପାଲଟି ଯାଏ, ମୂକ ହୋଇଯାଏ, ହୋଇଯାଏ ସେ 'ଅକ୍ଷମ ଦେବତା' । ଚକା ଚକା ଡୋଳା ବିସ୍ତାରିତ ହୋଇ ସବୁ ଦେଖେ ସିନା ମାତ୍ର ହାତ ତାର ଶୃଙ୍ଖଳାବଦ୍ଧ । ସ୍ମିତହସଟିଏ ଲାଗି ରହିଥାଏ ସିନା ଓଷ୍ଠ ପୁଟରେ ମାତ୍ର ଚାରିପଟେ ଅନେକ ଭଙ୍ଗାରୁଜାର କାରୁଣ୍ୟ । ପ୍ରଚ୍ଛଦରେ ଦିବ୍ୟମାଲ୍ୟାମ୍ବରଧର ଦେବତାର ପାଦରେ ଇତଃସ୍ତତଃ ବିକ୍ଷିପ୍ତ ଫୁଲ କେତୋଟି ବି ସେ ଅକ୍ଷମତାର ସଙ୍କେତ ଦେଉଥାନ୍ତି । ପଛରେ ଏତେଦିନର ସନାତନ ପରମ୍ପରା, ଆଗରେ ଦିଗ୍‌ବଳୟ ପର୍ଯ୍ୟନ୍ତ ବିଲମ୍ବିତ ପ୍ରଶ୍ନବାଚୀ ମାଳା ଏବଂ ଚତୁର୍ଦ୍ଦିଗରେ ଅସହାୟ, ବିକ୍ଷୁବ୍ଧ ହା ହା କାର । ତା'ରି ଭିତରେ ଝୁଲି ରହିଥାଏ ବିଚରା ମଣିଷଟିଏ । କବିଟି, ମନରେ ତାର ସେଇ ପୁରୁଣା ମାତ୍ର ନୂଆ ପ୍ରଶ୍ନ 'ନିରାପଦ ନୁହେଁ କ'ଣ ନାଭିଚ୍ଛେଦ ହେଲାପରେ/ସ୍ଥିତି ମୋର ? ବଞ୍ଚିଛି କିପରି ତେବେ ?/ଚରମ ବିଚ୍ଛେଦ ପରେ

ଜଗତରୁ... ।' ସେ ପଚାରି ବସେ, ନିଜକୁ, ପ୍ରେମିକାକୁ ଠାକୁରକୁ 'କାହିଁ କାହିଁ ? ଏଠି କାହିଁ ?/ମଣିଷର କଥା କାହିଁ ?' । ଏଠି କ'ଣ କେବଳ 'ଯାଏ, ଆସେ ସାରାଟା ଜୀବନ ଖାଲି/କେଇ ଖଣ୍ଡ ବାଉଁଶ ଓ କାନ୍ଧ ଟିକେ ଲଗାଇବା ନେଇ ।' (ନାଭିଚ୍ଛେଦ) 'ଶଙ୍ଖନାଭି' ସଙ୍କଳନ ପରେ 'ଅକ୍ଷମ ଦେବତା' ସଙ୍କଳନର ପ୍ରଥମ କବିତା ଏ 'ନାଭିଚ୍ଛେଦ' ଶୀର୍ଷକ ଦୃଷ୍ଟିରୁ ତାତ୍ପର୍ଯ୍ୟପୂର୍ଣ୍ଣ । କବି ହରିହର ମିଶ୍ର ସାମ୍ପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ ବେଶ୍ ସୁପରିଚିତ ନାଁ ଟିଏ । ପଛରେ ତାଙ୍କର 'ଆଦର୍ଶର କୁଜ' ଅପସଂସ୍କୃତିର ସବାର, ଶଙ୍ଖନାଭି ମଣ୍ଡଳର ସଂସ୍କାର, ବ୍ରାହ୍ମଣ ସନ୍ତାନର ବ୍ୟକ୍ତିତ୍ୱ । ଭିତରେ ଶିକ୍ଷା ଓ ପାରିବେଶିକ ପ୍ରଭାବ ଏବଂ ଉଦାସ ଅଥଚ ଗଭୀର ଚକ୍ଷୁ ସମଗ୍ର ବିଶ୍ୱକୁ ଦେଖି, ପରଖି ଅସୀମ ଆକାଶ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଆଉ ପରିଚୟରେ ଭାବଭୋଳା ନିଛକ କବିଟିଏ ସେ, ସେଇଥିପାଇଁ ବୋଧେ ତାଙ୍କ କବିତା ସମାଜ-ସଂସ୍କୃତି ସଚେତନ ଅଥଚ ଏକାନ୍ତ ଭାବେ ବୟକ୍ତିକ । ସେ ସବୁ ଚିହ୍ନା ଅଚିହ୍ନା । ବାଉନଟି କବିତାର ସଙ୍କଳିତ ରୂପ ନେଇ 'ଅକ୍ଷମ ଦେବତା' କବିତାର ନିଜସ୍ୱ ପରିଚୟଟିକୁ ପ୍ରକାଶିତ କରେ ।

'ନାଭିଚ୍ଛେଦ' ଠାରୁ 'ଅନାମ ସହର' ପର୍ଯ୍ୟନ୍ତ ପରିବ୍ୟାପ୍ତ 'ଅକ୍ଷମ ଦେବତା' । କବିତାଗୁଡ଼ିକ ବିଭିନ୍ନ ସମୟର ଏକକ ସୃଷ୍ଟି । ବିଷୟ ଓ ଶୈଳୀର ବୈଭିନ୍ନ୍ୟ ସ୍ୱାଭାବିକ, ମାତ୍ର କାବ୍ୟ ପୁରୁଷଟିର ସ୍ୱରୂପଟି ଧରି ହୋଇଯାଏ । କବିଙ୍କର ନିଜସ୍ୱ ସଂସ୍କୃତି ସଚେତନଉଲବ୍ଧ ଜ୍ଞାନ ତଥା ପାରିବେଶିକ ପ୍ରଭାବ ମାଧ୍ୟମରେ କାବ୍ୟପୁରୁଷ ରୂପ ନେଇଛି । ଅଧୁନାତନ ସମାଜର ଅବକ୍ଷୟ, ଅସଂଲଗ୍ନ, ଅସଂସ୍କୃତ, ପରମ୍ପରାହୀନ ସ୍ଥିତି ଭିତରେ ସେ ଘୂରି ବୁଲୁଚି ଏ ବିନ୍ଦୁରୁ ସେ ବିନ୍ଦୁକୁ ସ୍ଥିରତା ପାଇଁ । ଖୋଜୁଛି ଜୀବନଟିଏ । ନିଛକ ମଣିଷଟିଏ । ସେଇ ସେ କାଳର ମଣିଷଟିଏ । ଯେ 'ଶହେଟି ହାତରେ ସାଉଁଟି ନିଅ/ସହସ୍ର ହାତରେ ବାଣ୍ଟି ଦିଅ' ନିଜକୁ । (୪-ସୁକ୍ତ ଶତକ : ଶ୍ରୀ ହରିହର ମିଶ୍ର) । ସେ ତେଣୁ ପଚାରେ 'କେମିତି ବା ଗ୍ରହଣ ମୁଁ କରିନେବି ସେଇ ଜୀବନକୁ/ବୃକ୍ଷଠାରୁ ବାଦ୍ ଦେଇ- ଫୁଲ ଆଉ ସବୁଜ ପତ୍ରକୁ/ବୟସରୁ ବାଦ୍ ଦେଇ ଯୌବନ ଓ ସ୍ୱପ୍ନାନ୍ତ ପ୍ରେମକୁ ।' ମାତ୍ର ପର ମୁହୂର୍ତ୍ତରେ ସେ ମନକୁ ବୁଝେଇ ନିଏ ତା'ର । ସେ ଦେଖେ ଏ ସବୁ ଅସମାଧିତ ପ୍ରଶ୍ନ । ପ୍ରଶ୍ନ ପରେ ପ୍ରଶ୍ନ ସିନା ଲମ୍ୱିଯିବ- ମାତ୍ର ଉତ୍ତର ମିଳିବନି । ସେଥିପାଇଁ ସେ କହେ 'ଫୁଲ ଅବା କାହିଁ ଏଠି ଯୌବନର ମହକ ବା କାହିଁ/ସବୁଜ ପତ୍ର ବା କାହିଁ ଘୂର୍ଣ୍ଣି ଆଉ ଝାଞ୍ଜିଯାଏ ବହି ।' (ନିଶ୍ୱାସର ତାଳପତ୍ର ଓ ପକ୍ଷୀ) ତଥାପି ତା'ର ଖୋଜିବାର ଅନ୍ତ ନାହିଁ । ସେ ଚିନ୍ତା କରିଛନ୍ତି କ'ଣ 'ଆମର ଚରମ କର୍ତ୍ତବ୍ୟ, ପରମ ପ୍ରଶ୍ନ, ବ୍ୟାକୁଳ ସନ୍ଧାନ ଓ ବାଞ୍ଛିତ ପ୍ରାପ୍ତି' ? ସେ ତେଣୁ ଧର୍ମ-କର୍ମ-ପ୍ରେମ, ଯୁଦ୍ଧ ଗାର୍ହସ୍ଥ୍ୟ-ସନ୍ନ୍ୟାସ, ସଂଶୟ-ଭକ୍ତି-ଜ୍ଞାନ ସବୁ ଭିତରେ ଖୋଜି ଚାଲିଛନ୍ତି ଏହାର ଉତ୍ତର । ତଥାପି ବି ସେ ସନ୍ଦିହାନ 'ପରମ ଉତ୍ତରଟି ମିଳିନାହିଁ ନା ମିଳିଛି କେଜାଣି ଏବଂ ସେତେବେଳେ 'ଅକ୍ଷମ

ଦେବତା', ଯାହା 'ମଣିଷ ଓ ମଣିଷ, ମଣିଷ ଓ ଈଶ୍ୱରଙ୍କ ମଧ୍ୟରେ ସମ୍ପର୍କର' କଥା କହିଛି ତାକୁ ମନେ ପକାଇଛନ୍ତି । ତାଙ୍କ ଚିନ୍ତାରେ ଏ କବିତା 'ଇହସ୍ଥିତିକୁ ଘେରି ରହିଥିବା ବିଶ୍ୱୋନ୍ମୁଖୀ ଏକ ଅଦ୍ଭୁତ ଅହମତାରୁ ମୁକ୍ତି ଅଛି କି ନାହିଁ, ଏ ପରି ଚିନ୍ତାର କବିତା । ତହିଁରେ ଜାଗରଣ ପରି କିଛି ଆସେ, ଦିଶେ ଶୁଭଙ୍କର ବିପ୍ଳବର ଏକ ସମ୍ଭାବନା । କିନ୍ତୁ ନା ପ୍ରେମରେ ନା ହିଂସାରେ ଏକ ହୋଇ ପାରନ୍ତି ମଣିଷମାନେ, ଶୋଷକ ଓ ଶୋଷିତ ଉଭୟେ ଅଥର୍ବ ହୋଇଯାଆନ୍ତି । ମଣିଷର ଅକ୍ଷମତା ଏକୀଭୂତ ହୋଇଯାଏ ଦେବତାର ଅକ୍ଷମତାରେ, ସହନଶୀଳ କାଠ ପଥରର ପ୍ରତିମା, କେବଳ ମହାଧ୍ୱଂସର ଭୟରେ ବଞ୍ଚାଇ ରଖେ ଏକ ଅସମଞ୍ଜସ ସୃଷ୍ଟିକୁ ।' 'ଆଖି କାନ ନ ଥିବା ଦିଅଁ/ହାତ ଗୋଡ଼ ନ ଥିବା ମହାତ୍ମା x x ତା'ର ମାଦଳ ଦେହକୁ/କୁଣ୍ଢାଇ ପକାଏ ପତିତ/କେବେ ଯଦି ପାଏ/ଅକ୍ଷମ ଠାକୁର/ଓଠ ନ ଥିଲେ ବି ଥାଏ ହସ/ହାତ ନ ଥିଲେ ବି ଦିଏ ଦାନ/ପାଦ ନ ଥିଲେ ବି ତାର/କଣ୍ଟାଥାଏ, କାଚଥାଏ, ମାଛଆଖି ଥାଏ/ଛୁରୀ ଥାଏ, ଶବ ଥାଏ, ରକ୍ତ ଥାଏ/ତାର ପେଟ ନ ଥିଲେ ବି ସେଠି ବିଷ ଥାଏ/ତାକୁ କୁଣ୍ଢାଇବା ଲୋକ ଜାଣେ ତାର/ଯନ୍ତ୍ରଣା, ଉତ୍ତାପ ଜ୍ୱାଳା, ହା ହା କାର ।' (ଅକ୍ଷମ ଦେବତା)

ଜିଗୀଷା, ଜିଘାଂସାର ପରମାଣବିକ ରେରେକାର ଭିତରେ ଜୀବନ ଧାରାର ସହଜ, ସରଳ ସ୍ରୋତଟି କ୍ରମଶଃ ସଙ୍କୁଚିତ ହୋଇଆସିଛି । ଅନେକ ସଂଶୟ, ସନ୍ଦେହର ପ୍ରଶ୍ନବାଚୀରେ ସମାକୁଳ ମଣିଷର ମନ ସଂନ୍ତ୍ରସ୍ତ, ନିଃସଙ୍ଗ । ସେ ଭାବୁଚି 'କିଏ ଜାଣେ ସେଠି ମଧ୍ୟ/ଏ ଯୁଗର ଜାରଜ ଜନ୍ମ ହେବ ନାହିଁ ?' (କାଳିଜାଇ) ତେଣୁ ତା ଆଗରେ 'ପ୍ରତି ମୁହୂର୍ତ୍ତରେ ଭବିଷ୍ୟତର ପ୍ରଶ୍ନ, ଉତ୍ତର ଦାୟିତ୍ୱ...' ଏବଂ ତାର ଆକୁଳ ପ୍ରାର୍ଥନା 'ତୋତେ ହିଁ ତୁ, ରକ୍ଷା କର/ଉଠୁ ଗୋବର୍ଦ୍ଧନ' । ଶୂନଃ ଶେପର କଣ୍ଠରେ ସେ ବି ପଚାରୁଚି '...ଯାଜ୍ଞିକ ଅମ୍ବରୀଶଙ୍କୁ/ଯେଉଁ ସ୍ୱପ୍ନ, ଯେଉଁ ଆକର୍ଷଣ/ଏ ଜୀବନର, ପାର୍ଶ୍ୱ ଜଗତର/ଅଭାବ ପୂରଣ କରୁଥିବା ଫୁଲଗୁଡ଼ିକର/ କ'ଣ ହେବ କ'ଣ ହେବ/କ'ଣ ହେବ ସେ ସମସ୍ତ/ତୁମ ହାତେ/ଅଜସ୍ର ପ୍ରତ୍ୟାଖ୍ୟାନ ସତ୍ୱେ/ ଶିଶୁଟିର ସଂକଳ୍ପିତ ରକ୍ତପାଟ/ମନ୍ଦାର ମାଳର ?'

ପରମ୍ପରାର ଉତ୍ତରାଧିକାରତ୍ୱ ତଥା ପରିସ୍ଥିତି ଓ ପରିବେଶର ଅପ୍ରତିହତ ପ୍ରଭାବ ମଧ୍ୟରେ 'ନ ଯଯୌ ନ ତସ୍ଥୌ' ଅବସ୍ଥାରେ, ପଡ଼ିଥିବା କିଂକର୍ତ୍ତବ୍ୟବିମୂଢ଼ ବିଚରା କଳ ମଣିଷଟି 'ଜେମା ଦେଇ କାନ୍ଦ' ରେ ପୁଚ୍ଛା କରେ 'ସତ୍ୟ କ'ଣ ? ଯାହା ଆମେ ଚାହୁଁ/ଯାହା ଜାଣୁ ଯାହା ଅନୁଭବ କରୁ/କିମ୍ବା ଆମ ଉପରେ ଲଦି ଦିଆଯାଇଥିବା/ପ୍ରତିଷ୍ଠିତ ସମସ୍ତ ବ୍ୟବସ୍ଥା ଯାହା ସବୁ/ଆମଠୁ ଅଜଣା ହୋଇ ଜନ୍ମମୃତ୍ୟୁ ଭଳି,/ସତ୍ୟ କିବା ଓ ସବୁଠୁ ଡେଇଁ ଏକ ଆଶ୍ୱାସନା...' । ନିଜ ବୟସକୁ ପରିକ୍ରମା କରି 'ଦେହର ବଗିରେ ନିଜ ଶବାଧାର ନେଇ' ନିଜେ ପୁଣି ସଇସ ସାଜି ଶୀଘ୍ର ଶୀଘ୍ର ପଥ ପାର ହେଉ ହେଉ ସେ ଉପଲବ୍ଧି କରେ'

ଏହା ଯଦି ପରିଣତି କ୍ଷତି କ'ଣ ?/ଏମାନେ ବି ସହୃଦୟ ବନ୍ଧୁ ମୋର,/ଏମାନଙ୍କୁ ବାଛନ୍ଦ କରିଛ କିଆଁ, ?...'' ତେଣୁ ସେ 'ଯନ୍ତ୍ରଣାର ଶରଶଯ୍ୟାରେ/ଶେଷ ଶ୍ଳୋକ ପାରାୟଣ'କୁ ହିଁ ଆଦରି ନିଏ । (ପରିଚିତ ରାସ୍ତା ଭୁଲି ଚାଲୁଥିବା ଲୋକର ସ୍ୱର୍ଗପ୍ରାପ୍ତି ଓ ସ୍ୱର୍ଗ ହରାଇବାର ଗାଥା) ବିଚରାଟି ନାବିକ ହୋଇ ଅଝାଳ ଉଡ଼େଇ ଯାତ୍ରାରମ୍ଭ କରିଚି ଅଥଳ ସମୁଦ୍ରରେ ବନ୍ଧୁ-ଜ୍ଞାତି ପରିଜନ ପରିତ୍ୟକ୍ତ ହୋଇ । ସ୍ୱାର୍ଥ କୈନ୍ଦ୍ରିକତା, ଈର୍ଷା, ପରଶ୍ରୀକାତରତା, ଛଳନା, ପ୍ରତାରଣା ଭିତରେ ପାଦରେ ଗୁପ୍ତ ଛୁରୀକା ରଖି ପ୍ରିୟ ସାହାଯ୍ୟକାରୀଟିର କାନ୍ଧ ଦେଇ ପ୍ରାଚୀର ଅତିକ୍ରମ କରିବା ଏବଂ ତାକୁ ଆଘାତ କରି ଧାଇଁ ଯାଇଥିବା ନିଜ ଲୋକ 'ଆଜି ତାକୁ ଠେଲିଛନ୍ତି ସମୁଦ୍ରକୁ/ ନିଃଶେଷ ହେବାକୁ/ତଥାପି ବଞ୍ଚିବାକୁ ସେ ଭାବିଛି/ଏ ମଣିଷ ଏକା ହେଲେ ସୁଦ୍ଧା/ଖାତିର ନ କରି ସବୁ ସହିପାରେ/କାଟି ଦେଇ ସବୁ କିଛି ଧୋକା । ସେ ତେଣୁ ପରାଜୟର ଗ୍ଲାନିରେ ମ୍ରିୟମାଣ ହୋଇ ନ ପଡ଼ି ନିଜ ଉପରେ ଆସ୍ଥାବାନ ହୋଇପଡ଼େ, ନିଜ ସ୍ଥିତିକୁ ନିଜେ ନିର୍ଦ୍ଧାରିତ କରିନିଏ । '...ଏ ଦୁଇହାତ ଗୋଟିଏ ଆହୁଲା/ଅସଂଖ୍ୟ ଢେଉର ଯେତେ ବାଧାହୀନ ବ୍ୟାକୁଳତା/ଡେଇଁଆସେ ସେ ମଣିଷ...' (ନାବିକର ଶେଷ ଜମାନବନ୍ଦୀ) ଏହା ହିଁ ଯଦି ଶେଷ କଥା ତେବେ ଗୋପବନ୍ଧୁଙ୍କ ପରି କାବ୍ୟ ପୁରୁଷ ଜିଜ୍ଞାସା କରେ "କ'ଣ କିଛି ନାହିଁ ? କିଛି ନାହିଁ ? କିଛି ଆଦୌ ନାହିଁ ?/ଅନ୍ୟ ପାଇଁ ଅନ୍ୟ ପାଇଁ ଅନ୍ୟ ପାଇଁ ସବୁ ଅନ୍ୟ ପାଇଁ ?' (ସାର୍ବିକ କରୁଣା) ସବୁବେଳେ ଶୂନ୍ୟତାରୁ ଶୂନ୍ୟତାର ସୃଷ୍ଟିକୁ ସେ ଗ୍ରହଣ କରିନେଇପାରେ ନାହିଁ । ହୁଏତ କିଛି ସୃଷ୍ଟି ହୋଇପାରେ ନ ହୋଇ ବି ପାରେର ଦ୍ୱନ୍ଦ୍ୱରେ ନିପତିତ ସେ । ତା ପାଇଁ ସାକ୍ଷାତ ଓ ବିଚ୍ଛେଦ ପ୍ରବେଶ ଶୂନ୍ୟ ହୋଇପଡ଼ନ୍ତି । ଶହ ଶହ ଆକସ୍ମିକ ଦୁର୍ଘଟଣା ପ୍ରବଳ ଭିଡ଼ରେ/ଓ ପରଦିନ/ସକାଳ ଆଣିବ/ସହସ୍ର ଆତ୍ମୀୟଙ୍କର ସାକ୍ଷାତ.../...ହୋଇପାରେ ଏକତ୍ର ବିଚ୍ଛେଦ ।' (ଦେବୀ ଦଳନ) ତେଣୁ ସେ 'ମୁଖ୍ୟ' ଭାବେ ଧରିନିଏ 'ଏତେ ସବୁ ଦରକାର କ'ଣ ପାଇଁ/ × × ନିଜର ପ୍ରୟୋଜନ ନାହିଁ ଅଥଚ/ ଆୟୋଜନ ଭବିଷ୍ୟତ ପାଇଁ । ତାର ମାନସ ହଂସ ତେଣୁ ଶ୍ୱାସରୁଦ୍ଧ । ଗତି ତାର ଅନିର୍ଦ୍ଦିଷ୍ଟ । ସାମ୍ନାରେ ତାର ଆତତାୟୀ । ଭୀରୁ ପରି ଆତ୍ମଗୋପନ କରି କେତେ ଦିନ ବା ବଞ୍ଚିପାରେ- 'ଯେଉଁଠି ବନ୍ଧୁତା ନାହିଁ/ନିଜଠି ନିଜର/କେଉଁ ବୁଝମଣା ମତେ ଆଣିଦେବ ମୈତ୍ରୀ ଅନ୍ୟର ।' ବୃତ୍ତପଥରେ ସେ କେବଳ ଘୂରିବୁଲେ । ତାର ସମସ୍ତ ଅନୁସନ୍ଧିତ୍ସା, ଆଟୋପ, ଅଭିନୟ 'ସବୁ ଦୀର୍ଘ' ପୁନରାବୃତ୍ତି ଯାର ବିରତି ନାହିଁ ।' (ବୃତ୍ତ ପଥ) ହରି ଲୁଟ, ବନ୍ଦ, କର୍ଫ୍ୟୁ, ଧାରଣା ଭିତରେ ସାମାଜିକ ସହାବସ୍ଥାନ, ଉନ୍ନତ, ସଭ୍ୟ ହେବାର ଛଳନାରେ ଏକ 'କିମ୍ଭୂତ ମୈତ୍ରୀର ଡୋରିରେ' ସେ ବାନ୍ଧି ହୋଇ ଅବ୍ୟକ୍ତ, ଅଚିହ୍ନା, ଅବୁଝା ପରିବେଶ ଭିତରେ ରହିଯାଇଚି । ସେଠି... 'ସମ୍ପର୍କ ରହୁନି ମୋଟେ ବାପାଙ୍କର, ମା'ଙ୍କର, ଭାଇନା, ଭଉଣୀ, ଭାଇ ଶିଶୁଙ୍କ ଭିତରେ/ଏବଂ କାହାର କଥା ବୁଝିପାରୁନାହିଁ କେହିଁ/ × × × ପ୍ରତିନିଧି କିଏ ସେ କାହାର' ? (ଧର୍ମଘଟ) ନିଜ ଛାଇର ଜାଲ ଘେରି ହୋଇ ସେ କିଏ କାହା ଲାଗି ତାହା ଜାଣିବାକୁ ସେ

ଖୋଜି ଚାଲିଚି । ଘୋଡ଼ା ତା'ର କେଉଁଆଡୁ ଆସି/ଝପଟିବ କେଉଁଆଡ଼େ,... ଗାର୍ହସ୍ଥ୍ୟରୁ ବାନପ୍ରସ୍ଥ/ବୃତ୍ତାକାର ଗତି ପଥ' ? ଏବଂ 'ଲୁହକୁ ସତ କରି/ହସକୁ ମିଛ କରି' ଶେଷରେ କ'ଣ ସେ ଛତୁଟିଏ ହୋଇ କାହା 'ଆଞ୍ଜୁଳା ଓ ଅଣ୍ଟିରେ/ବୁହା ହୋଇଯିବ' ଏବଂ ସ୍କୁଲର ଶେଷ ଘଣ୍ଟା ବାଜିଯିବା ପରେ 'ଫମ୍ପା ତାର ଖୁଣ୍ଟି ପରି/ଠିଆ ହୋଇ ରାତି ରାତି/କେଉଁ ଶୀତ ରାତି ତୁଷାର ଝଡ଼ର/ବଂଶୀ ହୋଇ ....'

ମାତ୍ର କବିଙ୍କର କାବ୍ୟ ପୁରୁଷଟି ନିଜ ଲକ୍ଷ୍ୟପଥରୁ ବିଚ୍ୟୁତ ହୋଇନାହିଁ । ଥମି ଯାଇନାହିଁ ତା'ର ଗତି । ଏହି ମହାକାନ୍ତାରରେ ଖଣ୍ଡିତ ସମୟ ଭିତରେ ସହବାସ, ମହାସୁଖ, ସୀମିତ ଆୟୁଷ ସବୁ କିନ୍ତୁ ଅନ୍ଧାରରେ ନିଶ୍ଚିହ୍ନ ହୋଇଯାଇଥିଲେ ବି ସେ ଯେ ଚକ୍ରବତ ଘୂରି ଲାଗିଛି ଏହା ତା'ର ବିସ୍ମରଣ ହୋଇନାହିଁ । ତେଣୁ ସମୁଦ୍ର ତା ପାଇଁ ଯେଉଁ କୁଢ଼ କୁଢ଼ ବାଲିର ପାହାଡ଼ ଜମାକରି ରଖିଚି ତା ସହିତ ମିଶିଯିବା ପାଇଁ ସେ ଚାହିଁଚି ସେଠି ଏକ ହୋଇଯିବାପାଇଁ । ସେ ତେଣୁ କହିଚି 'ସେ ମୋର ନିର୍ଜନ ଦେଶ ଯେଉଁଠି ମୁଁ ବାରମ୍ବାର/ଫେରିଆସେ ମୋ ରତିର ପ୍ରତି ବିରତିରେ/ହତୋଚ୍ଛ୍ୱାସ ହୋଇ କେବେ ଉର୍ଦ୍ଧ୍ୱଶ୍ୱାସ ହୋଇ/ମୁଁ ଦେଖେ ଆଗକୁ ଯେତେ ବାଲି ଆଉ ବାଲି.../ଏହାଠାରୁ ସତ୍ୟ ଆଉ ନିରାଟ ସତ୍ୟ କ'ଣ ଅଛି ?'' (ମହାକାନ୍ତର) ତେଣୁ 'ପରଲୋକଗତ ସହରର ବୃଦ୍ଧ ଲୋକମାନେ' 'କାଠ ଜଳା ହେବା ଓ କାଠରେ ନନ୍ଦିଘୋଷ ରଥ ତିଆରିବା/ଏକା ଅଟେ ଉଭୟର ପ୍ରୟୋଜନୀୟତା'କୁ ଗ୍ରହଣ କରିନେଇ ପ୍ରାର୍ଥନା କରନ୍ତି, 'ହେ ଆର୍ତତ୍ରାଣ ! ନିରାଶ ତ କରିନାହଁ କାହାରିକୁ କେବେ' ଏବଂ ଆଶା କରନ୍ତି ସେମାନେ 'ବହୁଦିନୁ ଗଲେଣି ଏ ସହରରୁ/ଖୋଜିବାକୁ ଅନ୍ୟ ସହରକୁ/ ଫେରିବେ ହୁଏତ ଆମପରେ ବିବର୍ତ୍ତିତ ପ୍ରଜାପତି ପରି ।' ସକଳ ଦୁଃସହ ସ୍ଥିତି ମଧ୍ୟରେ, ସକଳ ଦ୍ୱନ୍ଦ୍ୱ, ଘାତ, ପ୍ରତିଘାତର ଉର୍ଦ୍ଧ୍ୱରେ ଓ 'ଥିବା ସତ୍ତ୍ୱେ ଅତି ଦୈନ୍ୟ ମାନବ ଜୀବନ' 'ଅଜସ୍ର ଝରଣା/ତମ ମାଆ କାନ୍ଦ କାନ୍ଦ ସ୍ୱର ପରି ଥରୁଅଛି... ବାରମ୍ବାର ଚେଷ୍ଟା କରି/ଉଡ଼ି ଉଡ଼ି ଆସିବାକୁ ଆକାଶ ଓ ଅନ୍ଧାର ବିଦାରି ।' (ତିନୋଟି ମଙ୍ଗଳ ଗୀତି) ଏବଂ ତା ପରେ 'କ୍ରାନ୍ତିର ସହସ୍ର ହାତ ପ୍ରସାରିତ/କ୍ଳାନ୍ତ ଅଧିର ଓଠ... କୋଟି କଳ୍ପନାର ବଟଧାନ/ଶେଷ ପତନର ଶବ୍ଦ ପତ୍ରର/ବୀଜୋତ୍ପନ୍ନ ଶ୍ରୀ କ୍ଷେତ୍ରର ।' (ଦୀର୍ଘତମା)

ଉତ୍ତରଣ ପଥରେ କାବ୍ୟ ପୁରୁଷ ମୁହାଁଇଚି ସମସ୍ତ ପ୍ରତିକୂଳତାକୁ ଲଙ୍ଘନ କରି ଇପ୍‌ସିତ ସ୍ଥାନ ଦିଗରେ– 'ଅନାମ ସହର' ଦିଗରେ । 'ଉଦ୍‌କ୍ରାନ୍ତ ହ୍ରଦର ଢେଉ/ ଆକ୍ରାନ୍ତ ଆକାଶ/ କର୍ଦ୍ଦମାକ୍ତ କାଳିନ୍ଦୀ...' ମଧ୍ୟରେ ଏ ବିଚ୍ଛେଦ, ଏ ଦୁର୍ଦ୍ଦିନ, ଏ ବର୍ଷାର କଟାଳ, ଏ ଶନ୍ ଶନ୍ ବିଜୁଳୀର ପ୍ରକୋପ ଭିତରେ 'ଚିହ୍ନିନେବା ଆପଣାର ଲୋକ କିଏ/ ଚିହ୍ନା କିଏ ଅଚିହ୍ନା ବା କିଏ' ? ଏବଂ ସ୍ଥିତି ପାଇଁ, ସଂସ୍ଥିତି ପାଇଁ, ଜୀବନ ପାଇଁ 'ଆମେ ସବୁ ବରଂ ଏକାଠି...' ହୋଇ 'ଗିରିବାମ କରେଧରି ଘେରିଯିବା.../ ଅନ୍ଧାରରେ ଗୋବର୍ଦ୍ଧନ,/ ଧନଜନ, ମାନ,

ମନ ଧାରଣରେ ସିଦ୍ଧହସ୍ତୀ ବୁକୁର ଗହ୍ୱରେ/ ଜାଳିବା ଦେହର ଦୀପ... ଜ୍ୱାଳା ଅନ୍ଧାରର/ ଉଡ଼ାଇବା ଶାଢ଼ୀ, ନେତ, ଚିରିଦେବା/ ସାୟା/ ଗଛ, ବୃଛ ମାଟି ଧୂଳି ବୋଲିହେବା/ ଏକାକାର କରି ବର୍ଷା, ଖରା, ଶରତ, ବସନ୍ତ.../ଏବଂ ପରିଶେଷରେ 'ଲୋଡ଼ିବା ସମାଜ', ହେଉ/ ପଳାୟିତ ଦୁର୍ଦ୍ଦିନ ରାତିର... ହେଉ/ ଅତିକ୍ରାନ୍ତ ଜରା, ବ୍ୟାଧି, ଶୋକ ବିଚ୍ଛେଦର/ ହେଉ ଅବା ଗୃହହୀନ, ବେଦୁଇନ୍/ ସେ ଏକ ପ୍ରୀତିର ସହର ।' (ଅନାମ ସହର)

ଏତଦ୍ ବ୍ୟତୀତ ସଂସ୍କୃତି ସଚେତନ କବିଙ୍କର 'ତିନୋଟି ମଙ୍ଗଳ ଗୀତ'ରେ ଆମ ସଂସ୍କୃତିର ଜ୍ୱାଳାମୂକ ସ୍ୱରୂପ ଯେପରି ପ୍ରକଟିତ ସେହିପରି ସାଂପ୍ରତିକ ମଣିଷର ପ୍ରେମ, କ୍ଷୁଧା ହିଂସା, ଜାନ୍ତବତା 'ପରସ୍ମୈପଦୀ', 'ଅଗମାଗମ' ପ୍ରଭୃତିରେ ମଧ୍ୟ ରୂପାୟିତ । କବି ନିଜର ମୌଳିକତାକୁ ବଞ୍ଚାଇ ବେଶ୍ କିଛି ବର୍ଷ କାବ୍ୟ ସାଧନା କରି ଆସୁଛନ୍ତି ଯାହା ସାଂପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ ଖୁବ କମ୍ କବିଙ୍କ ଠାରେ ଦେଖାଯାଏ । ଗତାନୁଗତିକତାକୁ ବର୍ଜନ କରିବାରେ ଏକ ସାହସିକ ପଦକ୍ଷେପ ନେଇଥିବାରୁ କେତୋଟି କବିତାରେ ଗଦ୍ୟାୟିତ – ପଦ୍ୟ ଶୈଳରେ ପ୍ରୟୋଗ ଦେଖାଯାଏ । ବେଳେ ବେଳେ ପଠନ ଓ ଉପଲବ୍ଧି ପ୍ରତିବନ୍ଧକ ହୁଏ ତଥାପି 'ନୀଳ ଷ୍ଟେନଲେସର ବିଜୁଳି', 'ବର୍ଷିୟସୀ ମହିଳାର ଦୃଷ୍ଟିଭଳି ବର୍ଷୁକୀ ଶୃଙ୍ଗ', 'ମେଘର ଫିମ୍ପିବସା ଆଙ୍ଗୁଳିର ଚିହ୍ନ' ପରି ଭାବନାକୁଳ ପ୍ରକାଶ ଶୈଳୀ ଓ ପ୍ରୟୋଗ କୌଶଳରେ ଏ ସଂକଳନ ସାଂପ୍ରତିକ ଓଡ଼ିଆ କବିତାକୁ ନିଜସ୍ୱ ବୈଶିଷ୍ଟ୍ୟ ମାଧ୍ୟମରେ ଋଦ୍ଧିମନ୍ତ କରପାରିଛି ।

ଆଧୁନିକ ଓଡ଼ିଆ କବିତାର ପାଠକ ପାଠିକା ମାନଙ୍କୁ ଶ୍ରୀ ମିଶ୍ରଙ୍କର ଏହି ମନୋଜ୍ଞ ସଂକଳନଟି ଉପହାର ଦେଇ 'ଅଗଦୂତ ପ୍ରକାଶନୀ' ଧନ୍ୟବାଦାର୍ହ ହୋଇଛନ୍ତି । ସର୍ବୋପରି ଇଂପ୍ରେସନିଷ୍ଟକ୍ ଚିତ୍ରଶୈଳୀର 'ଅକ୍ଷମ ଦେବତା'ର ସ୍ୱରୂପକୁ ରଙ୍ଗ ଓ ତୁଳୀ ମାଧ୍ୟମରେ ରୂପାୟିତ କରି ଚିତ୍ରଶିଳ୍ପର ଯାଦୁକର ଶ୍ରୀ ଅସିତ ମୁଖାର୍ଜୀ ପାଠକକୁ ସଙ୍କଳନସ୍ଥ କବିତା ଗୁଡ଼ିକର ଉପଲବ୍ଧି ପାଇଁ ଯଥେଷ୍ଟ ସୂଚନା ଦେଇ ପ୍ରଶଂସାର ପାତ୍ର ହୋଇଛନ୍ତି ।

ଅଧ୍ୟାପକ, ଓଡ଼ିଆ ବିଭାଗ
ରେଭେନ୍ସା କଲେଜ, କଟକ
'ସମାସ'ରେ ପ୍ରକାଶିତ



# ଦୁଇଟି କାବ୍ୟ- କୃତି ଓ କବି ହରିହର
# : ଏକ ନିକଟ ନିରୀକ୍ଷା

*ହୃଷିକେଶ ମଲ୍ଲିକ*

## ।।୧।। ଭଙ୍ଗା ଅଇନା : ବିଭଙ୍ଗ ଦୃଶ୍ୟ...

ମନେହୁଏ ଲେଖନ୍ତି ନାହିଁ ଯଦି ପ୍ରେମରେ ପଡ଼ି ନଥାନ୍ତି,
ଯଦି ବନ୍ଧୁମାନେ ଭେଟନ୍ତେ ନାହିଁ ଯଦି ନଥାନ୍ତା ପ୍ରକୃତିର ବିସ୍ମୟ,
ନ ଥାନ୍ତା ଯଦି ଏକ ତୃତୀୟ ଶକ୍ତିର ଅଜ୍ଞାତ ଯନ୍ତ୍ରଣା
ନ ଥାନ୍ତା ଯଦି ଦେଶ ଓ ବିପୁଳ ଜନତା ।

[ 'ନିଜ ସମ୍ପର୍କରେ' : 'ଲାଲ କଢ଼ର ତପସ୍ୟା'– ପୃ.- ୧୧୪ ]

କବି ଶ୍ରୀ ମିଶ୍ରଙ୍କର 'ଲାଲ କଢ଼ର ତପସ୍ୟା' ପ୍ରକାଶ ପାଏ ୧୯୮୨ ମସିହାରେ । ଖୁବ୍ ସମ୍ଭବତଃ ଏହି ସଙ୍କଳନରେ ସନ୍ନିବିଷ୍ଟ କବିତାଗୁଡ଼ିକ କବିଙ୍କର ସତୁରୀ ପରବର୍ତ୍ତୀ ଲେଖା । କବିଙ୍କର ଯୌନ-କୈନ୍ଦ୍ରିକ କାବ୍ୟ–ଚେତନା ଗ୍ରନ୍ଥସ୍ଥ ବହୁ କବିତାରେ ଏକ ଆର୍କିଟାଇପିକାଲ୍ ଇମେଜ୍‌ର ମାଧ୍ୟମରେ ଅର୍ଦ୍ଧସ୍ପଷ୍ଟ ଓ ଅର୍ଦ୍ଧ ଅସ୍ପଷ୍ଟ ଭାବେ ଆତ୍ମ ପ୍ରକାଶ କରନ୍ତି । ଦୈନନ୍ଦିନର ଆବେଗାନୁଭୂତି ସହ ଯୌନାବେଗର ତୀବ୍ର ଓ ଅକପଟ ପରିପ୍ରକାଶରେ ସଚେତନ ଲୁଚକାଳି ପାଠକର ଅବଦମିତ କୌତୁହଳକୁ ଧୀରେ ଧୀରେ ଅନବଗୁଣ୍ଠିତ କରିଥାଏ ବହୁ କବିତାର ଉଜ୍ଜ୍ୱଳ ଛତ୍ରମାନଙ୍କରେ । 'ଆଣ୍ଠୁମାଡ଼ି ବସିଥିବା ପାଟହାତୀ ଉପରେ ଓହ୍ଲାଉଥାନ୍ତି 'ସରସ୍ୱତୀ ଓ ବୀଣା ହୋଇଥାଏ 'ମଗର' ('ରାଣୀଗୁମ୍ଫା' : ପୃ - ୧) । 'ଦିବ୍ୟନାରୀ' ଏଠି 'ମୃଗ' । ତାର ଶିକାର ଲକ୍ଷ୍ୟରେ ବାର ବାର ଧନୁରେ ତୀର ଯୋଖୁଥାଏ କାବ୍ୟ ପୁରୁଷ । 'ମଧ୍ୟରାତ୍ର', 'ନଦୀର ଗଣ୍ଡ', 'ପାଉଁଶିଆ ପାହାଡ଼ଙ୍କ ବିବର୍ଣ୍ଣ ସତ୍ତା', 'ପଥର ବୃଷଭ', 'ନିଆଁ', 'ଚଲାକ୍ ମାଛ', 'ଢ଼େଉର ତୈଳାକ୍ତ ଓଠ', 'ରକ୍ତର ଅପରାହ୍ନ ରଙ୍ଗ', 'ଅମାବାସ୍ୟାର ଅନ୍ଧାର', 'ବାସନାର କଦର୍ଯ୍ୟ ଋତୁ', 'ଅନ୍ଧାର', ଇତ୍ୟାଦି ରାଶି ରାଶି ଶବ୍ଦ ପ୍ରତିମା

ମାଧ୍ୟମରେ ହରିହରଙ୍କ ଶାବ୍ଦିକ ତପସ୍ୟାର ମିଜାଜକୁ ଲକ୍ଷ୍ୟ କରିହୁଏ । 'ସର୍ପ'କୁ ସ୍ୱକୀୟ କାବ୍ୟ ଚେତନାର ଶାଣିତ ବାହନ କରି କବି ତାଙ୍କର କାବ୍ୟ ବଳୟରେ ପରିପୋଷଣ କରିଥାନ୍ତି । 'ଫୁଲ ଓ ସଙ୍ଗୀତର ମୁହାଁମୁହିଁ ହେଇ ରହିଥାଏ 'ଉଦ୍ୟତ ସର୍ପର ଫଣା' ଓ ସେହି 'ସର୍ପର ମଧୁବିଷ ('ପ୍ରାତଃ ଭ୍ରମଣ') ପବନର ଆଶ୍ରାରେ ସମୁଦ୍ର କୂଳରେ ପଡ଼ିଥିବା ସାପ ଦୈହିକ କ୍ଷୁଧାର ସମାନ୍ତରାଳତା ସୃଷ୍ଟି କରେ । ('ବେତାଳ' : ପୃ-୩୨) ଦୁଆର ବନ୍ଧରେ କଳସୀ ଓ ତା' ଭିତରେ ମାଛ ଭଳି ସନ୍ତରଣର ଆମିଷି ପ୍ରୟାସ କବିଙ୍କ କାବ୍ୟ-ମାନସିକତାକୁ ବୁଝାଇବାରେ କମ୍ ମଧସ୍ଥି କରେ ନାହିଁ । 'ସ୍ଖଳିତ ମହମବତୀ' 'ସ୍ଖଳିତ ରେତ'ର ଓ 'ତମସାର ଗର୍ଭ', 'ଯୋନି'ର ସ୍ମରଣ ଆଣେ । ('ଇନ୍ଦ୍ରଭୂତି' - ପୃ. ୪୨) । ତଳିପା'ଠୁ ଆଖି ପତା ଯାଏ ଖୁନ୍ଦି ଯୋଇଯାଏ ଦୈହିକତା । ସୁପ୍ତ କୁଣ୍ଡଳିନୀ ଅପେକ୍ଷା ରଖୁଥାଏ ଜାଗରଣର । 'କୁଳବୃଦ୍ଧ ସୁନାସିଂହ'ର ଲାଞ୍ଜ ପିଟିବା ଓ କଣ୍ଟା ସିଝୁ, କାକ୍‌ଟସ ଭଳି କାବ୍ୟିକ ପ୍ରତିମାନ ଭିତରେ ଛପି ରହିଥାଏ ହରିହରଙ୍କ କାବ୍ୟୋବ୍ୟମର ଛଦ୍ମ ଶୃଙ୍ଗାରିକତା, ଫୁଲରେ ସୁଗନ୍ଧ, ରମଣରେ ହିଂସ୍ରତା ପରି ଉହ୍ୟ ।

ହରିହରଙ୍କ କବିତା ଗୁଡ଼ିକ ପଢ଼ି ଏଇ ଆଲୋଚକର ମନେହୁଏ ଯେ, ତାଙ୍କ କବିତା 'ପୂର୍ଣ୍ଣ-ଦର୍ପଣ'ରେ ବିମ୍ବିତ ଅନୁଭୂତିର ସାମୁଦାୟିକ ରୂପ ନୁହେଁ ; ବରଂ ଏଗୁଡ଼ିକ 'ଚୂନା ଆଇନା'ର ବିଭକ୍ତ ଟୁକୁରାରେ ଝଟକୁଥିବା ଓ ଅର୍ଥଗତ ବହୁ ଭିନ୍ନତାର ସ୍ପର୍ଦ୍ଧା ରଖୁଥିବା ଏକଏକ ସ୍ୱତନ୍ତ୍ର ପ୍ରତିବିମ୍ବନ । କବି ଶବ୍ଦମାନଙ୍କୁ ନିଆରା ଏକ କାପାଳିକ ପରି ନୀରବତା ଓ ଅନୁଭୂତିର ଗହୀରି ଅନ୍ଧାରରେ ସାଧୁଥା'ନ୍ତି ଓ ଏହି କାରଣରୁ ବୋଧହୁଏ ସେ ତାଙ୍କ ପୂର୍ବବର୍ତ୍ତୀ ଓ ସମକାଳୀନ ଅନ୍ୟ କବିତା ପରି ନିଜର କାବ୍ୟିକ ଉଚ୍ଚାରଣକୁ 'ହାରାହାରି ଆବେଗ'ର ତୁଚ୍ଛା ଜମାନବନ୍ଦୀ (statement) କରି ନିଜକୁ ନିରସ୍ତ୍ର ରଖିପାରନ୍ତି ନାହିଁ । ଷାଠିଏ ଦଶକର ନାନା ଜଟିଳ ଓ ଦ୍ୱିରୁକ୍ତି ପୂର୍ଣ୍ଣ ସାରସ୍ୱତ – ଏକୁଡ଼ିରୁ ସମ୍ଭୁତ ହରିହରଙ୍କର କାବ୍ୟ ଅବବୋଧ ହିଁ କେବଳ ବୁଝିଥାଏ ଯେ ଶବ୍ଦ ସତ ନୁହେଁ କି ସଫଳ ବି ନୁହେଁ; ଆଂଶିକ ସଫଳ (ଲାଲ କଢ଼ର ତପସ୍ୟା) । ଶବ୍ଦ ମାତ୍ରେଇ 'ଭ୍ରାନ୍ତି' (Illusion) – ଏପରି ଧାରଣାର ଗହନତାକୁ ଅମଳ ନକରି ହରିହରଙ୍କ କବିତାରେ ଅବଗାହନ ପାଇଁ ଯେ କୌଣସି ଉଦ୍ୟମ ଓ ଆତୁରତା ପାଠକୀୟ ଧୃଷ୍ଟତା ବା ଔଦ୍ଧତ୍ୟ ମାତ୍ର । ଏତଦ୍ୱାରା ପଠିତ କବିତାକୁ ଭୁଲ୍ ବୁଝିବାର ଆଶଙ୍କା ହିଁ କେବଳ ବଳବତ୍ତର ହୋଇଥାଏ । 'କ୍ଷିପ୍ରମନ' ଓ 'ଉତକ୍ଷିପ୍ତ ହୃଦୟ' ନେଇ ଶବ୍ଦର ଅନୁଗୁମ୍ଫିତ, ତଥାପି ଅପ୍ରକଟିତ ବହୁ ଗୋପନୀୟ ଉତ୍ତାପକୁ ଉଦ୍‌ଘାଟିତ କରିବାର ଶାଣିତ ପ୍ରୟାସ ରଖିଥିବା ଓ କୌଣସି ଏକ ନିର୍ଦ୍ଦିଷ୍ଟ ଆବିଷ୍କାରରେ ସ୍ଥାଣୁ ହୋଇ ନଯାଇ ବାରମ୍ବାର ବିବର୍ତ୍ତିତ ହୋଇ ଚାଲିଥିବା କବି ହରିହରଙ୍କର ଏ 'ନୂତନ ସତ୍ତାକୁ' ତାଙ୍କ କବିତାରୁ ଚିହ୍ନଟ କରିବାକୁ ହେଲେ କାବ୍ୟ ମନନର ଯେଉଁ ନୂତନ ମାନଦଣ୍ଡ ଲୋଡ଼ା, ତାକୁ ଆୟତ୍ତ ନକରି

ତାଙ୍କ କବିତା ପାଠରେ ଘାଣ୍ଟି ହେବା ଅର୍ଥ ବୃଥାରେ କେବଳ ପାଣି ଗୋଳିଆ କରିବା ଛଡ଼ା ଅନ୍ୟ କିଛି ନୁହେଁ । 'ଲାଲ କଢ଼ର ତପସ୍ୟା'ର ବହୁ ସଫଳ କବିତା (ମୋ ଦୃଷ୍ଟିରେ) ମଧ୍ୟରୁ ଗୋଟିଏ କବିତା 'ଲକ୍ଷ୍ମୀଙ୍କରା' କୁ ଏହି ପ୍ରସଙ୍ଗରେ ବ୍ୟବଚ୍ଛେଦ କରାଯାଉ । 'ଉତ୍ତୋଳିତ ଦୁଇସ୍ତନର ସ୍ଫୀତ ବକ୍ଷରେ', 'ରୌଦ୍ର ଆଚ଼ମନ', 'କବରୀ ଖୋଲି ଦେଲେ କାକଳି/ ଅଚାନକ ଭାସିଯାଏ ଧାଡ଼ିଏ ପକ୍ଷୀରେ' 'ଭଜନମଗ୍ନ ଦୁଇ ଆଖି, ଲକ୍ଷ୍ମୀଙ୍କର ।'/ 'ଉଲଗ୍ନ ମୂର୍ତ୍ତିମାନଙ୍କ ପୁରୁଷାଙ୍ଗ ପ୍ରତି/ ଲୋଳ ଜିହ୍ୱ ଅଗ୍ନିର ପାଷାଣୀ', 'ରକ୍ତଦୀପ – ତରଳ ଅନ୍ଧାରେ/ କୁଣ୍ଡଳିନୀ ଧୂମଶିଖା ହାଡ଼ର ପାଚେରୀ ଡ଼େଇଁ/ ଉଠେ ନିଥରରେ', 'କାନ୍ଧର ତା ଲାଲ୍ ପର ଲୋମର କଦମ୍ବ/ ରାଣୀର ନିର୍ଲିପ୍ତ ମୁହଁ ଶାନ୍ତ ସ୍ମିତ ସୁଦୂର ନକ୍ଷତ୍ର', 'ପଳାତକି ବୋଇତର ଲାଲ ଝର୍କା', ବିଳପିତ ସମୁଦ୍ରରେ ମାଂସର ଉଚ୍ଚାଟ ଲହର/ ଭାଙ୍ଗିଦିଏ ବାରମ୍ବାର ବାଲିର ଜଡ଼ତା' ଇତ୍ୟାଦି ମାଳମାଳ ଅର୍ଥୋଚ୍ଚାଟିତ ଉଚ୍ଚାରଣ ଗୁଡ଼ିକ ଭିତରେ 'ଆଶ୍ଳେଷର ସିଂହାସନେ ବିଜେ ଲକ୍ଷ୍ମୀଙ୍କରା' ଙ୍କୁ ଯେପରି କବି ଅନୁଦ୍‌ଘାଟିତ କରିବାର ତପସ୍ୟା କରନ୍ତି । ଏହାଠାରୁ ଅଧିକ ଦାୟିତ୍ୱ ବା ଆଉ କେଉଁ କବିତା କି ଭଳି ବହନ କରନ୍ତା ? ରାଶି ରାଶି ଘଷରା ଶବ୍ଦର ପୌନଃ ପୌନିକତାରୁ କବିତାର ସ୍ପୃହଣୀୟ ପରିତ୍ରାଣର ଯେଉଁ ସୂଚନାତ୍ମକ ଶିଳାନ୍ୟାସ କବି ହରିହର ଅନ୍ତତଃ 'ଲକ୍ଷ୍ମୀଙ୍କରା' ଭଳି କବିତାରେ କରିଛନ୍ତି, ତାର ପଟାନ୍ତର ତାଙ୍କ ସମକାଳୀନ ଓଡ଼ିଆ କବିତାରେ କ୍ୱଚିତ୍ ପରିଦୃଷ୍ଟ । ଇପ୍‌ସିତ ଦୃଶ୍ୟ ସହିତ ପାଠକର ଅଭିଳଷିତ ବହୁ ଅତିରିକ୍ତ ଦୃଶ୍ୟ ସମ୍ମିଳିତ ଭାବେ ମିଶିଯାନ୍ତି 'ତରଳ ଅନ୍ଧାର'ରେ କବି ଢ଼ାଳି ଦେଇଥିବା ଗୋଟିଏ ମାତ୍ର ଭାରି ଛୋଟ 'ରକ୍ତ ଦୀପ' ରେ ଦାଣ୍ଡ ଆଗର ତୁଳସୀ ଚଉଁରା ମୂଳ ବା ପୁରୀ ବଡ଼ ଦେଉଳରେ ଲିଭି ଲିଭି ଜଳୁଥିବା ଓ ଜଳି ଜଳି ଲିଭୁଥିବା ଟିକି 'ମାଟିଦୀପ'ର ତୀବ୍ର ସାଙ୍କେତିକତାକୁ ମନଶୀଳତାର ଏକାନ୍ତ ଲାଳନ ଦେଇ ପ୍ରାପ୍ତ ବୟସ୍କର ତୀବ୍ର ଦେହାନୁଭୂତିକୁ ଉତ୍ତୀର୍ଣ୍ଣ କରିବା 'ପ୍ରତିଭା'ର କିଛି କମ୍ 'ଉନ୍ମେଷଂ କୁ' ସୂଚାଏ ନାହିଁ । ହରିହରଙ୍କ କବିତାର ନିର୍ଯ୍ୟାସକୁ କବିତାସ୍ଥ ବହୁ ବାହ୍ୟ ଓ ଆପାତଃ ଦୃଷ୍ଟ ଶୈଳ୍ପିକ ବିଶୃଙ୍ଖଳତା ମଧ୍ୟରୁ ସମର୍ଥାନୁରୂପେ ଠାବ କରିବାର କୌଶଳକୁ ଥରେ କରାୟତ୍ତ କରିନେଲେ, ତେଣିକି ଆଉ ଝୁଣ୍ଟି ହେବାର ତିଳାର୍ଦ୍ଧେ ଭୟ ନଥାଏ । କନା ବିଣ୍ଡା ଥପେଇ ବାଲି ଗୋଡ଼ିରୁ ଧାନ ବାଛିବା ପରି ଘେନିବାକୁ ହେବ ହରିହରଙ୍କ କବିତାକୁ । ଦୃଶ୍ୟ ଦେଖିବା ଯଦି ଅବଧାର୍ଯ୍ୟ, ଆଖିରେ ବନ୍ଧା ଥାଉ ପଟି, ନିଷ୍କପଟ ଚତୁରତା 'ସୋରିଷ ବୁଣା'ରେ 'ପଥ ଚିହ୍ନିବାର ଭବିତବ୍ୟକୁ ଜିଆଇ ରଖିବାର ଦାୟଟିତ କେବଳ 'ଦୃଶ୍ୟ ଦେଖାଳି' (ପାଠକ ।)ର । ହୁଅନ୍ତୁ କୋଉ ଲଳିତା ବା କବିତା ସନ୍ଧାନୀ ସେ ବିଦ୍ୟାପତି, ସବୁ ବିଦ୍ୟାପତିମାନଙ୍କୁ ଶିଳ୍ପ-ପରିଶୀଳନର ଏଇ ସର୍ବନିମ୍ନ ନାନ୍ଦନିକ ଦାୟିତ୍ୱଟିକୁ ଯେ ବୁଝିବାକୁ ପଡ଼ିଥାଏ, ଏହା ପୁନର୍ବାର କହିବା ବାହୁଲ୍ୟ ମାତ୍ର ।

'ଲାଲ କଢ଼ର ତପସ୍ୟା'ରେ କବି ହରିହରଙ୍କ କାବ୍ୟାନୁଭୂତିର ତୀବ୍ରତା ଓ ଅନ୍ତରୀଣତାକୁ ତାଙ୍କ ଅଗଣିତ ପାଠକଙ୍କ ସମ୍ମୁଖରେ ସ୍ପଷ୍ଟ କରିବା ଅଭିପ୍ରାୟରେ ନିମ୍ନୋକ୍ତ କୋଡ଼ୋଟି କାବ୍ୟ ପଂକ୍ତିର ଉଲ୍ଲେଖ କଦାପି ଅବାନ୍ତର ମନେ ହେବ ନାହିଁ।

(୧) 'ଦୂରରେ ଦିବାଲି ରାତିର ଫୋଟକା ଶବ୍ଦ ପରି
ଚିହ୍ନା ସ୍ୱର ଅଚିହ୍ନା ହୁଏ...' (ଅନାମ ସୁନ୍ଦରୀ : ପୃ-୬)

(୨) 'ଜହ୍ନ ଯେବେ ପାର ହୁଏ/ ଏ ଗାଁକୁ ଫିଙ୍ଗି ହାଡ଼ ପରି/
ସେମାନେ ରହନ୍ତି ଧରି/ ଶୂନ୍ୟ କୋଳ... ଦୋଳି ଆଉ ଦରବୋଲା ଲୋରି'
(କିଞ୍ଚିତ୍ କମ୍ପନର ସ୍ପର୍ଶ - ପୃ.-୧୧)

(୩) 'ମାଇ ସଞ୍ଜ କାଳି ଅନ୍ଧାରରେ ଲମ୍ବ ଲମ୍ବ ଦୁଇ ଧାର ଲୁହ ଭଳି
ଜକ ଜକ ଯୁଗଳ ମୂର୍ତ୍ତିର ଛାଇ ଝୁଲୁଛନ୍ତି...' (କେଳୁଣି : ପୃ - ୧୪)

(୪) 'ନୌକାଭଳି/ ଯୋନିର ମିନାକରା ନୀଳ ପଥରରେ ରସ କିମ୍ବା
ହଳଦୀର ପାତନସିଦ୍ଧ ଗହ୍ୱରର ପୂତ ରସାୟନେ ପୂର୍ଣ୍ଣ କମଣ୍ଡଳୁ/
ମହର୍ଷି ଋଷ୍ୟ ଶୃଙ୍ଗ...
(ଫାଲଗୁନର ବିଷାଦ ଯୋଗ; ପୃ. - ୧୭)

(୫) 'ମାଲପୁଆ ପରି ଛାତି ଆକ୍ଷି ଦିଶେ ତେଜପତ୍ର ପରି
/ ଅର୍ଦ୍ଧରାତ୍ରି ଅନ୍ତଟାଣି ଭୈରବୀ ମନ୍ତ୍ରରେ ଗୀତଗାଇ
/ ଘୂରେ ଗ୍ରହ ଗ୍ରହାନ୍ତରେ, ମୃତ ଆତ୍ମା ଘେରା
ଏକ ଝୁଣାଦିଆ ଦେବ ସମାଧିରେ।' (ବିଧବା କାଳୀ - ପୃ. - ୨୧)

(୬) 'ସ୍ୱାଧୀନତାର ସ୍ମରଣ ଦିଏ ପୋଲିସଙ୍କ ମାର୍ଚ୍ଚ୍ ପାଷ୍ଟ୍
ଓ ଡ୍ରିଲ୍ ଅଭ୍ୟାସ କରୁଥିବା ଯୁବକଙ୍କର/ ଉତ୍ତେଜିତ ବୁଟ୍ ଶବ୍ଦ...
(ଘଣ୍ଟ ଧ୍ୱନି : ପୃ. - ୨୩)

(୭) 'କୈଶୋର/ ପୋଷ୍ଟର୍ ନାୟିକାର ଶିଥିଳ ସ୍ତନରେ
ହୋଲିର କଳା ହାତଛାପ। (ବହୁ ରୂପାର ବର୍ଣ୍ଣ : ପୃ.-୨୬)

(୮) 'ଯେମିତି ଦୁଇ ଆଖି ପତାର ଶାମୁକାରେ ବନ୍ଦ ହୁଏ
ଆକସ୍ମିକ ବସ୍- ଝର୍କାରେ ଦେଖା/ ଏକ ରୂପସୀ ବଧୂର ମୁହଁ,
ହୁଏ ଚନ୍ଦ୍ର... ହୁଏ ଶଙ୍ଖ... ସର୍ପ... (ବହୁ ରୂପାର ବର୍ଣ୍ଣ : ପୃ.-୨୭)

(୯) 'ତମରି ଆଙ୍ଗୁଠି ମୋ ଶସ୍ୟର ଲକ୍ଷ୍ମୀ ଦେଉଳରେ
ଅଣ୍ଡାଳିରେ ଚୋରି ହେଲା ଭଳି ଲାଗେ... (ବେତାଳ : ପୃ. - ୩୩)

(୧୦) 'ଘୁଷୁରି ପରି ଶୁଙ୍ଘି ଶୁଙ୍ଘି ଆସେ ମେଘପଲ
ଦେଖୁ ଦେଖୁ ଚାଲିଯାଏ' (ନାମ ଶୂନ୍ୟ ଗ୍ରାମ ଘାଟ : ପୃ. - ୬୦)

L/(୧୧) 'ସୂର୍ଯ୍ୟାସ୍ତ ଓ ସୂର୍ଯ୍ୟୋଦୟ ରଙ୍ଗ ପ୍ରାୟ ଏକାଭଳି ଦିଶେ
ତଫାତ୍ ଏତିକି ଖାଲି ପକ୍ଷୀଙ୍କର ଯିବା ଫେରିବାରେ...
(ନାମ ଶୂନ୍ୟ ଗ୍ରାମ ଘାଟ : ପୃ.-୬୧)

(୧୨) 'ତାର ଦୁଇଗୋଟି ସ୍ତନ ଛୋଟ ଛୋଟ ପକ୍ଷୀପରି ଝାଡ଼ି ଝୁଡ଼ି ହୋଇ
ମୋ' ଆଡ଼କୁ ଥଣ୍ଟ ଦେଖାଇଲା...' (ବିଜୁଳି : ପୃ. ୬୩)

L/(୧୩) 'ତା' ସାଙ୍ଗେ ଦିନା କେତେ ଯୋଡ଼ିଥିଲେ ରିପୁ ଭଳି
'ଛ' ଗୋଟି ଋତୁମାନେ ମତେ/ ଓ ଛାଡ଼ି ଚାଲିଗଲେ ପୁଣି ଏକା କରି
(ଧ୍ୱଜ ଭଙ୍ଗ ରଜାଟିକୁ ଛାଡ଼ି ଚାଲିଗଲାପରି ତାର ନୂଆ ପାଟରାଣୀ)
(ଗଡ଼ଜାତ, ଭୟଙ୍କର ଋତୁମାନଙ୍କର- ପୃ. ୬୫)

(୧୪) 'ସେ ମାଡ଼୍ରୋଇ ମାଇକିନା ହାଡ଼ରେ କି କିମିୟା ରଖିଛି କେଜାଣି
ତିବ୍ବତରୁ ଆସାମ ଓ ବଙ୍ଗଦେଶ/ ଘୂରି ଘୂରି
ଏକା ଏକାମତେ ଗୋଡ଼ଉଛି । ('ଅପଭ୍ରଂଶ : ପୃ- ୮୦)

(୧୫) 'ଧୁଡୁ ଧୁଡୁ ଘୁଡୁକି ଭଳି/ ବାଜୁଥିବା ସ୍ତନର/ ବି ପ୍ରାଣ ଅଛି
ଅନୁଭବ ଅଛି/ ଗୋଟାଏ ଚୁମ୍ବନ ଯେ
କନ୍ୟା ପ୍ରିୟା ମା ସବୁଗୋଟିଏ କରିଛି ।' (ନିକଟ ପାହାଡ଼ : ପୃ. - ୯୧)

(୧୬) 'ନାଗ ଫେଣିର ଶେଯରେ/ରାତିରେ ଫୁଲ/ ବିଛେଇ ଦେଲ ତମେ
ଗୀତ ଦେଲ ବ୍ୟାଘ୍ରର ଜିଭରେ...' (ସୁଭଦ୍ରାର ଦୁଇହାତ : ପୃ. - ୯୬)

L/(୧୭) 'ବର୍ଷା ପାଗରେ ସମଲିଙ୍ଗୀମନେ ବସି ଗପସପ ହେବେ
ଝଡ଼କୁ ପଛ କରି ମନ୍ଦିରର ଲାଖ ଅବା ମହମ ମୂର୍ତ୍ତିମାନଙ୍କୁ ଚାହିଁ
('ପ୍ରଥମ ବର୍ଷା' : ପୃ.-୯୯)

L/(୧୮) 'ସଦ୍ୟ ସନ୍ତାନ ହରା ମାଆର ଅଭୁକ୍ତ ସ୍ତନ ଭଳି ପର୍ବତ ଏକ
ବ୍ୟଥାତୁର ପ୍ରାଚୀନ କାଳରୁ ଖୋଜୁଥିଲା ଅନ୍ଧାରର ସ୍ତନନ୍ଧୟ ନକ୍ଷତ୍ରମାନଙ୍କୁ/
ମହାକାଶର' (ନୂଆ ବର୍ଷ : ଏକ ପୁରାତନ ପର୍ବତର - ପୃ. ୧୦୧)

ଉପରୋକ୍ତ ଉଦ୍ଧୃତି ଗୁଡ଼ିକରେ କବିତ୍ୱର ଯେଉଁ ସଂଯତ ସମ୍ଭ୍ରମ ଅନ୍ତର୍ମୁଦ୍ରିତ, ତାହା ବାହାରେ ଖାଣ୍ଟି କବିତା ଖୋଜିବା ଚିତ୍ତବୃତ୍ତିର ଅପଚୟ ଭିନ୍ନ କ'ଣ ବା ହୋଇପାରେ ? କେତେ ଖରା ତରା, କଣ୍ଟା ଝଣ୍ଟା, କେତେ ଦୂରତା ଓ ପ୍ରତିରୋଧର ମୁକାବିଲା କରି କରି ଏହିସବୁ ଦୁର୍ଲ୍ଲଭ କାବ୍ୟିକ ଧାଡ଼ିଗୁଡ଼ିକର ଶୀତଳ ଛତ୍ର ତଳେ ଠିଆ ହୋଇଗଲେ ତୃପ୍ତିରେ ମନ ଭରିଯାଏ । ମନ୍ଦିରର ବାହ୍ୟିକତା ଭକ୍ତର ସଂଯମ ଓ ଧୈର୍ଯ୍ୟ ପରଖେ ଓ ଏହି ପରୀକ୍ଷାରେ ଥରେ ଉତ୍ତୀର୍ଣ୍ଣ ହୋଇଗଲେ ସୃଷ୍ଟି ଆଉ ଦୂରଧିଗମ୍ୟ ରହେ ନାହିଁ ।

'ଲାଲ କଙ୍କର ତପସ୍ୟା'ରେ କବି ହରିହର 'ସମୟ'ର ଯେଉଁ ଅଦୃଷ୍ଟପୂର୍ବ ଅନନୁଭୂତ ଛବି ଆଙ୍କନ୍ତି, ତାହା କବି ଭାବେ ତାଙ୍କର ବିଚକ୍ଷଣ ଦ୍ରଷ୍ଟାତ୍ୱକୁ ହିଁ ସୂଚିତ କରିଥାଏ । ନିମ୍ନୋକ୍ତ ଉଦ୍ଧୃତିଟିକୁ ଲକ୍ଷ୍ୟ କରାଯାଉ :

ଏ ସମୟଅନୁଗତ କରିନାହିଁ ମତେ/ x x/ ଯେମିତି ଦୁଇଗୋଟି ଚଳନ୍ତା ଗାଡ଼ି
ପରସ୍ପର ଦ୍ରୁତ... ବିପରୀତ ଚାଲିଥାନ୍ତି/ ସଚେତନ ବର୍ତ୍ତମାନ ଭାସିଯାଏ
ଅନ୍ୟ ଏକ ଷ୍ଟେସନରେ/ ପହଞ୍ଚିବା ଆଗୁ... କିଏ ଗଲା, କିଏ ଥିଲା
ଜଣାପଡ଼େ ନାହିଁ । ଉଭୟେ ସମ୍ମୁଖକୁ/ ଗତିକରି
ଖସିଯାନ୍ତି ଉଭୟଙ୍କ ଅତୀତକୁ.../ ଯାହା ଅବଶ୍ୟମ୍ଭାବୀ (ବିବି : ପୃ-୫୦)

ଏଲିୟଟ୍‌ଙ୍କ ପରି ହରିହରଙ୍କ ଚେତନାରେ ସମୟ- ଅତୀତ ଓ ସମୟ- ଭବିଷ୍ୟତ ସମୟ- ବର୍ତ୍ତମାନରେ କେବଳ ବିଲୀନ ହୋଇଯାଆନ୍ତି ନାହିଁ; ଅଧିକନ୍ତୁ ସଭିଏଁ ସଭିଙ୍କ ସହ ଧକ୍କା ଖାଇ ନିଜ ନିଜକୁ ଧ୍ୱସ୍ତ ବିଧ୍ୱସ୍ତ କରିଦିଅନ୍ତି । ସଚେତନ ବର୍ତ୍ତମାନଟି ତାଙ୍କ ଦୃଷ୍ଟିରେ ସଦାସର୍ବଦା ଚଳଚଞ୍ଚଳ, ସ୍ଥିର ନୁହଁ; ଭାସି ଯାଉଥାଏ ବରାବର ଅନ୍ୟ ଏକ ଷ୍ଟେସନ (ବା ସ୍ଥିରତା) ରେ ପହଞ୍ଚିବା ପୂର୍ବରୁ । ଦୁଇଟି ବିପରୀତ ମୁଖୀ ଦ୍ରୁତ ଟ୍ରେନପରି ସମୟର ବିରୋଧାଭାସ ସମ୍ମୁଖକୁ ମୁହଁ କରିଥିବା ସତ୍ତ୍ୱେ ଖସିଯାଉଥାନ୍ତି ନିଜ ନିଜର ଅତୀତକୁ । ଗତିଶୀଳ ସମୟର ଏପରି ଦ୍ରୁତତା କବି (ମଣିଷ)କୁ ବଶୀଭୂତ କରିପାରେ ନାହିଁ କି ପୁରାପୂରି ନିଶ୍ଚିହ୍ନ ମଧ କରିଦେଇ ପାରେ ନାହିଁ । ସମୟର ମୁହୂର୍ମୁହୁଃ ବିବର୍ତ୍ତିତ ଶାଶ୍ୱତତାକୁ ଚିହ୍ନଟ କରିବା ଓ ଏପରି ଏକ ନିତ୍ୟ ଅଥଚ ଚଳମାନ ସ୍ଥିତିରେ ଜୀବନ ଓ ଜଗତକୁ ଦେଖିବାର ଆସ୍ପର୍ଦ୍ଧା କରିବାରେ

ରହିଛି କବି ହରିହରଙ୍କ ଦୃଷ୍ଟିଗତ ଭିନ୍ନତାର ବିସ୍ମୟ । ଯଦି ଆଧାର ସ୍ଥିର ନୁହେଁ, ତେବେ ଦୃଶ୍ୟ ବା ସ୍ଥିର ହେବ କିପରି ? ଏଣୁ ସବୁ ଝାପ୍‌ସା (କେ ଗଲା, କେ ଥିଲା ଜଣାପଡ଼େ ନାହିଁ - (ବିବି : ପୃ.- ୫୦) । 'ସମୟ' ପରି 'ଶବ୍ଦ' ଓ 'ସ୍ମୃତି' ବି । ପାହାଡ଼ ତଳର ଭୂକମ୍ପନ ପରି 'ସତ୍ୟ'କୁ ଘେରି ରହିଥାଏ 'ଅସ୍ୱଚ୍ଛତା' । ମେଘାଚ୍ଛାଦିତ ଚନ୍ଦ୍ରବିମ୍ବର ଦୂରତ୍ୱ ପରି । କବିତାରେ ସୃଜନଶୀଳତାର ଏ ଗୂଢ଼ତା ହୁଏତ ବୁଝିହୁଏ, କିନ୍ତୁ ବୁଝାଇହୁଏ କ୍ୱଚିତ୍ । କବି ହରିହରଙ୍କ 'ଲାଲ କଢ଼ର ତପସ୍ୟା'ର ଅନେକ କବିତା ଗଭୀର, ରହସ୍ୟମୟ ଓ ଘୂର୍ଣ୍ଣାୟମାନ ସୃଷ୍ଟିଶୀଳତାର ପ୍ରାମାଣିକତାକୁ ବହନ କରେ । ସତ୍ୟ ଯଦିଓ ଆବର୍ତ୍ତିତ, ତଥାପି ସ୍ଥିର ଓ ଶୃଙ୍ଖଳିତ । ଏହି ପ୍ରତ୍ୟୟର ସାକ୍ଷୀ ହରିହରଙ୍କ କବିତା । ସୃଷ୍ଟି ପ୍ରକ୍ରିୟାର ଏପରି ମନନଶୀଳତା ହିଁ ଭବିତବ୍ୟର ନିରର୍ଥକତାକୁ ବୁଝେ ଅଧିକଗୁଣା ପାରମ୍ପରିକ କବି ପ୍ରତ୍ୟୟ ଠାରୁ ବୁଝେ 'ଜୀବନ ବଞ୍ଚିବା' କିପରି ଦିନକୁ ଦିନ ଅନ୍ୟ କିଛି ନୁହେଁ, ସେହି ଅସାରତା, ନିଜଠାରୁ ସେହି ଚିରାଚରିତ ନିରୁଦ୍ଦିଷ୍ଟତା ('ଆଗକୁ କିଛି ନାହିଁ/ ନିରର୍ଥକ ହେବାଠାରୁ, ହଜିଯିବା ଠାରୁ ନିଜଠାରୁ' (ଉନ୍ମୁକ୍ତ ଚକଡ଼ା - ପୃ : ୫୫)

ପ୍ରତ୍ୟେକ ମଣିଷ ବା କବି କଦାପି କୌଣସି ପୂର୍ଣତାର ଅଭିବକ୍ତା ନୁହନ୍ତି, ପରନ୍ତୁ ବିଭକ୍ତ ସତ୍ତାମାନଙ୍କର ପୃଥକ୍ ପୃଥକ୍ ପରିଭାଷକ ମାତ୍ର । ବିଭକ୍ତ ସତ୍ତାରେ କବିର ବିଭକ୍ତ ସ୍ଥିତି ଯୋଗୁ କବିତାର ସ୍ୱରରେ ଛାଁ ଆସିଯାଏ ପୃଥକତା, ଯେଉଁ ସ୍ୱର ଧରି ରଖେ' ଶ୍ରମିକ ତରୁଣୀଙ୍କର ଗୀତରେ/ ଟ୍ରକର ଡାଲା ଭରିଦେବି' (ରଙ୍ଗଶାଳା : ପୃ-୫୬) ପରି ଆବେଗର ଉଷ୍ମ ଉଚ୍ଚାରଣ, ସେଇ ସ୍ୱର ବି ଏକ ଭିନ୍ନ ସ୍ଥିତିରେ ଧରି ରଖେ 'ପ୍ରବଳ କ୍ରୋଧରେ ମୋର ଦାନ୍ତ ସବୁ ପଶିଛନ୍ତି ତକିଆ ଭିତରେ' (ଘଣ୍ଟ ଧ୍ୱନି : ପୃ-୨୪) ଭଳି ଅନୁଭୂତିର ନିକାଞ୍ଚନ ଦୁରୂହତାକୁ । ତେଣୁ ଏକା ହରିମିଶ୍ର ଅଲଗା ଅଲଗା କବିତାରେ ନୁହେଁ, ଏକା କବିତାର ଅଲଗା ଅଲଗା ଛତ୍ରରେ, ବିଭିନ୍ନ, ଗୋଟିଏ ଗୋଟିଏ କବିତାର ଧାଡ଼ି ଧାଡ଼ି ଶବ୍ଦ । ଶବ୍ଦ ଓ ଛତ୍ର ଛତ୍ର ମଧ୍ୟରେ ଯେଉଁ ଆଖି ଠରାଠରି (ସଲା ସୁତୁରା) ଓ ଛାଇ/ପତାପତି (ବାଦ ବୁଦିଆ) ଖେଳ ଅହରହ ଚାଲିଥାଏ; ତାହା ହରିହରଙ୍କ କବିତାର ବିଶେଷତ୍ୱକୁ ସାବ୍ୟସ୍ତ କରେ । ଯଦି କେହି ମୋତେ ପଚାରେ ହରିହରଙ୍କ ସବୁଠାରୁ ସଫଳତା ଓ ବିଫଳତା କ'ଣ ବୋଲି, ତେବେ ତାର ଉତ୍ତରରେ ମୁଁ କେବଳ ଏହାଁ ହିଁ କହିବି । ଅନ୍ୟ ଭାଷାରେ କହିଲେ ଅନୁଭୂତିର 'ଛବି' ନୁହେଁ, 'ବିଭଙ୍ଗ - ଛବି'କୁ ଉତ୍ତୋଳିତ କରୁଛନ୍ତି କବି ହରିହର ତାଙ୍କ ଶବ୍ଦର ପ୍ରତିଟି ଫ୍ଲାସ୍‌ରେ ('ଫ୍ଲାସ୍ ମାତ୍ରେ ମୂର୍ତ୍ତିର ବିଭଙ୍ଗ ଛବି ଉତ୍ତୋଳିତ') ରଙ୍ଗଶାଳା : ପୃ.-୫୭) ।

କବି ହରିହରଙ୍କର କବିତାରେ ଠାଏ ଠାଏ ଶୈଳୀଗତ ଫାଜିଲାମି ଯେ ନାହିଁ, ଏ କଥା କହିହେବ ନାହିଁ । 'ବର୍ଣ୍ଣବୋଧର ଚିତ୍ରଲିପି', 'ଶ୍ୱେତପତ୍ରର ଲିପି', 'କ୍ରନ୍ଦନ ଏକ ଯୁଗଳ ବନ୍ଦୀ'

ଭଳି କବିତା ଗୁଡ଼ିକୁ ତାର ସୃଷ୍ଟି କର୍ମର ଲଘୁ - ବିରତି ବୋଲି ମନେକରା ଯାଇପାରେ । ଚୂଡ଼ାନ୍ତ ଲକ୍ଷ୍ୟଭେଦ ପୂର୍ବରୁ ବିଫଳ କିଛି ଶର ସନ୍ଧାନର ନଜିର୍ ଭାବେ ଏସବୁ କବିତାକୁ ଗ୍ରହଣକରି 'ଲାଲକଢ଼ର ତପସ୍ୟା'କୁ ପାଠ କରାଯାଇପାରେ ।

ଗ୍ରନ୍ଥସ୍ଥ କବିତାମାନଙ୍କରେ ଶବ୍ଦ ପ୍ରୟୋଗକୁ ନେଇ ହରିହର ବେଶ ମୁକ୍ତ ଓ ବେପରୁଆ । ଅଚାବୁଆ ଓ ଉତିଆଣି ଭଳି ପ୍ରାଚୀନ ଶବ୍ଦ ସହ ମୁଲାକାତ୍ ଓ ଦସ୍ତାନା ଭଳି ଶବ୍ଦଙ୍କୁ ଏକତ୍ର ସ୍ୱଚ୍ଛନ୍ଦରେ ଭେଟି ହୁଏ ତାଙ୍କ କବିତାରେ । କିଲିବିଲି, ଶିରିକାପଡ଼ା ଓ ଭାଡ଼ିଶୁଆ ପରି ଲୌକିକ ଶବ୍ଦର ହାତଧରି ଏକା ଧାଡ଼ିରେ ଚାଲିଯାନ୍ତି ଜାଫେରୀ ଓ ରେଲିଙ୍ଗ୍ ଭଳି ବୈଦେଶିକ ଶବ୍ଦ ହରିହରଙ୍କ କବିତାରେ, ଝୁଣ୍ଟି ନ ପଡ଼ି । 'ଅଘୋର ରାତ୍ରିର ଅଘରି' କବିମାନେ ହିଁ କେବଳ କାହିଁ କଥା ନେଇ କାହିଁରେ ଯୋଡ଼ି ଦେଇପାରନ୍ତି । କାହିଁ ନୀଳ ମେଘ ଛୁଇଁ ଉଡ଼ିଯାଉଥିବା ଶଙ୍ଖଚିଲ, କାହିଁ ନିଟୋଳ ତଳର ନିଟୋଳ ସ୍ତନ- ପଲକରେ ଯୋଡ଼ି ହୋଇଥାଏ' 'ଘରୁଆ' ସଂସ୍କୃତିର 'ଅଘରି' କବି ହରିହରଙ୍କ ଲେଖନୀରେ । ଗୋହିରୀର ବାଉଁଶ ବଣରେ ଦିନରେ ଅନ୍ଧାର ଦେଖୁଥିବା ବନ୍ଧୁମାନଙ୍କ କାନ୍ଧରେ ହାତ ରଖି ଚାଲୁ ଚାଲୁ ତାଙ୍କୁ ଦିଶିଯାଏ ଛୁଟିଦିନ ବାଳିକାଙ୍କ ମୁଣ୍ଡବାଳ, ଦୂର ଅଦୃଷ୍ଟ ରହିଯାଏ, 'ଲାଲ କଢ଼ର ତପସ୍ୟା' ନ ପଢ଼ି ଏ କଥା ହୃଦ୍‌ବୋଧ କରିହୁଏ କ୍ୱଚିତ୍ । 'ଲାଲକଢ଼ର ତପସ୍ୟା'ର ଏକ କବିତାରେ କବି କହନ୍ତି : 'ଯାହା କେବେ ନାହିଁ/ ତାକୁ ଲେଖିବାକୁ ପଡୁଛି ଏ ପର୍ଯ୍ୟନ୍ତ/ ବାରମ୍ବାର ବିଫଳତା ସତ୍ତ୍ୱେହିଁ/' (ନିଜ ସମ୍ପର୍କରେ ପୃ-୧୧୪) । ଚୂଡ଼ାନ୍ତ ସତ୍ୟ ବୋଲି କିଛି ନାହିଁ । ଯାହା ସତ୍ୟଭାବେ ପ୍ରତୀତ; ତାହା ସତ୍ୟ ନୁହେଁ ଆପାତଃ ସତ୍ୟ ମାତ୍ର । 'ସତ୍ୟର'ର ଏଇ 'ମିଥ୍ୟାତ୍ୱ'କୁ ହିଁ ଲେଖି ଚାଲିଥାଏ କବି, ତା'ର ସମଗ୍ର ଜୀବଦ୍ଦଶାରେ ବାରମ୍ବାର ବିଫଳ ହୋଇ ।

## ।। ୭ ।। ଚିଲ, ମାଛ ଓ ପାଣି ନଥିବା ଚବକା...

'ସୃଷ୍ଟି ଚାହେଁ କରିବାକୁ କୋଳାଗ୍ରତ/ ସ୍ରଷ୍ଟାକୁ ନିଜର
ସ୍ରଷ୍ଟା ଚାହେଁ ତା ରୁଚିର, ତା ଈପ୍‌ସିତ
ସୃଜନ ଭୂମିଟି ହେଉ ସଂଗ୍ରାମ ଭୂମିତା'ର
ହେଉ ପୁଣି ନିରାପଦ ଅତି ଆପଣାର
ମୁକ୍ତ ହେଉ ମିଳିବାକୁ ପ୍ରତି ଅଧିକାର ।''

(ସୋମପାର ଚର୍ଯ୍ୟାପଦ : ଭିତିରି ଚନ୍ଦନ : ପୃ.- ୮୫)

'ସୂକ୍ତ ଶତକ' (୧୯୮୯) କୁ ହିସାବକୁ ନେଲେ 'ଭିତିରି ଚନ୍ଦନ', (୧୯୯୪) ହେଉଛି କବି ହରିହର ମିଶ୍ରଙ୍କ କବି - ମାନସର ଅଷ୍ଟମ ଗର୍ଭ । ଶଙ୍ଖନାଭି ୧୯୭୩ରୁ ଆରମ୍ଭ

ହୋଇଥିବା କାବ୍ୟିକ ଯାତ୍ରା 'ଅକ୍ଷମ ଦେବତା' (୧୯୭୭), 'ଚନ୍ଦ୍ର ବିମ୍ବ', (୧୯୭୮), 'ଲାଲ କଢ଼ର ତପସ୍ୟା', (୧୯୮୨), 'ଚାହାଁଣି ମଣ୍ଡପ' (୧୯୮୮) ଓ 'ସ୍ୱପ୍ନ ବିନିମୟ' (୧୯୯୨) ଦେଇ 'ଭିତିରି ଚନ୍ଦନ' (୧୯୯୪)ରେ ତାଙ୍କ କାବ୍ୟ ସ୍ୱରକୁ ଅଧିକ ସ୍ୱଷ୍ଟ ଓ ପ୍ରାଞ୍ଜଳ କରିଛି । ସଙ୍କଳନଟିରେ ମୋଟ ୪୫ଟି କବିତା ସଙ୍କଳିତ ଓ ଅଧିକାଂଶ କବିତାରେ କବିଙ୍କର କାବ୍ୟିକ ସଫଳତାର ଇସ୍ତାହାର ନିର୍ଦ୍ଦିଷ୍ଟ ଓ ଦ୍ୱିଧା ରହିତ । 'ଭିତିରି ଚନ୍ଦନ' ହେଉଛି ସଙ୍କଳନର ପ୍ରଥମ କବିତା । ଈଶ୍ୱରଙ୍କ ଉପସ୍ଥିତି ଓ ଅନୁପସ୍ଥିତି ନେଇ ପଶ୍ଚିମୀ ଆଧୁନିକତା ଯେଉଁ ଦ୍ୱନ୍ଦ୍ୱର ସମ୍ମୁଖୀନ, ତାର ଏକ ସ୍ୱଷ୍ଟ ଜବାବ ହୋଇଉଠେ ଏ କବିତା । ଏଥିରେ ଈଶ୍ୱରଙ୍କ ସ୍ଥିତିକୁ କବି ଦୃଢ଼ତାର ସହ ସ୍ୱୀକାର କରନ୍ତି । ଗଢ଼ି ଉଠେ ମଣିଷ ଓ ଈଶ୍ୱରଙ୍କ ମଧ୍ୟରେ ଅଭେଦତ୍ୱ । ଈଶ୍ୱରଙ୍କ ଉପଲବ୍ଧ ସ୍ୱରଟି 'ଭିତିରି ଚନ୍ଦନ'ରେ କିପରି ଅସ୍ତ୍ୟାର୍ଥକ, ନିମ୍ନୋକ୍ତ କେଇଟି ଉଦ୍ଧୃତିରୁ ତାହା ସ୍ୱଷ୍ଟ :

(୧) 'କ୍ଷିପ୍ର ତମେ ଝଡ଼ ତମେ, ଉତ୍ତାଳ ଲହରୀ ତମେ,
ଲେଲିହାନ ଅଗ୍ନିର ସ୍ରୋତ ତମେ
ହା ହା କାର ମନ୍ତ୍ର ତମେ; ପ୍ରାର୍ଥନାର ଧୂଆଁ ଆଉ ମେଘ ତମେ,
ସବୁ ରଙ୍ଗ, ସବୁ ଦୃଶ୍ୟ ... ସବୁ ସିନା ତୁମ ଆଶ୍ୱାସନା !'

(ଭିତିରି ଚନ୍ଦନ : ପୃ.-୦୨)

(୨) 'ଇନ୍ଦ୍ରିୟର ଭିନ୍ନ ଭିନ୍ନ ଚୁମ୍ବକରୁ ଭିନ୍ନ ତମେ/ ସ୍ପର୍ଶ ହୀନ, ରୂପ ହୀନ,
ଶବ୍ଦହୀନ, ସ୍ୱାଦହୀନ, ଗନ୍ଧହୀନ ସତ୍ତା ତମେ !/ ତମରି ଆକୃତି କ'ଣ
ଶୂନ୍ୟାକାର... ନ ଥିବାରେ ଥିବାର/ ପ୍ରତ୍ୟୟ ତମେ...'

(ଭିତିରି ଚନ୍ଦନ : ପୃ. - ୦୩)

(୩) 'କେମିତି କରିବି ମନା ତମେ ଆସି ବର୍ତ୍ତମାନ ଚାଲିଗଲା ପରେ
ପଲକଟି ପଡ଼ିବା ପୂର୍ବରୁ କେମିତି କରିବି ନାହିଁ ତମେ ନାହଁ ବୋଲି
ମୋ ଛାତିରେ ହାତରଖି କେମିତି କରିବି ନାହିଁ/ ଏତେ ଗ୍ରୀଷ୍ମ
ଅଣସର ତମ ସାଙ୍ଗେ ମୋ ଭିତରେ କଟାଇଲା ପରେ'

(ଭିତିରି ଚନ୍ଦନ : ପୃ. - ୦୪)

କବି ହରିହର ଈଶ୍ୱରଙ୍କୁ ଅନୁଭବ କରନ୍ତି ନାହିଁ, ବରଂ ଏ ସବୁ ବକ୍ତବ୍ୟରୁ ମନେହୁଏ, ସେ ତାଙ୍କର ପ୍ରତିଟି ନିଃଶ୍ୱାସ ପ୍ରଶ୍ୱାସରେ ଈଶ୍ୱରଙ୍କୁ ହିଁ ବଞ୍ଚନ୍ତି । ସେ ହିଁ ଈଶ୍ୱରଙ୍କୁ ରୂପ ଦିଅନ୍ତି,

ପିନ୍ଧାନ୍ତି ରକ୍ତ ବା କୃଷ୍ଣ ବସ୍ତ୍ର, ଏପରି କି ନିଜେ ହୁଏତ ପାଲଟି ଯାଆନ୍ତି କାଷ୍ଠ ପାଷାଣର ମୂର୍ତ୍ତି । ଈଶ୍ୱର ଥାଆନ୍ତି ନିଃଶ୍ୱାସରେ ଓ ସେ ଧିରେ ଚାଲିଯିବା ପରେ ଆକାଶ ଖୋସି ହୋଇ ଯାଏ ଆଖି ଦୁଇଟିରେ । ଈଶ୍ୱର ଅଛନ୍ତି - ଏପରି ଏକ ଧ୍ରୁବ ପ୍ରତୀତି କବିଙ୍କର ଜନ୍ମେ ଈଶ୍ୱରଙ୍କ ଚାଲିଯିବାରୁ । 'ନ ଥିବାରୁ 'ଥିଲେ' - ଏଇ ବିଶ୍ୱାସ ଦୃଢ଼ୀଭୂତ ହୁଏ । ('ତମେ ଚାଲିଗଲା ପରେ ମନେ ହେଲା ତମେ ଥିଲ ବୋଲି ସିନା ମନଇଚ୍ଛା ଚାଲିଗଲ, ଯେଉଁଆଡ଼େ ଯାଅପଛେ ତମେ ଅଛ, ତମେ ଥିବ... ତମେ ହିଁ ତ ଥିଲ ଚଉପାଶେ' : (ଭିତିରି ଚନ୍ଦନ : ପୃ. - ୦୨) । କବି ସାନ୍ତ୍ୱନାର ଗୀତ ଲେଖନ୍ତି, ବାଣୀ, ଶୁଣନ୍ତି ଚିରକାଳ; ମାତ୍ର ତାଙ୍କର ପ୍ରତିଟି ଉଚ୍ଚାରଣରେ ମିଛ ହୋଇଯାଉଥାଏ ପିଁ ଶବ୍ଦ, ମିଛ ହୋଇଯାଉଥାଏ ପ୍ରତିକୃତି, ଯେତେ ଥର ସେ ଆଙ୍କୁଥାନ୍ତି ସେତେଥର । ଦ୍ରୁତତମ ଗାଡ଼ିର ଉଜ୍ଜଳ ଆଲୋକ ପରି 'ଦୁଇ ଚକାଡ଼ୋଳା' କହିବା ବେଳେ କବି ହରିହର ତାଙ୍କ ଈଶ୍ୱରଙ୍କୁ 'ଜଗନ୍ନାଥ' ବୋଲି ନିର୍ଦ୍ଦିଷ୍ଟ କରନ୍ତି ଓ 'ନିଜେ ଅସଂଖ୍ୟ ଲୋମଶ ପାପର ମସୃଣ ଶଯ୍ୟା'ରେ ଅତନ୍ଦ୍ର ରହିଥିବା ସ୍ୱୀକାର କରନ୍ତି । ଯଦିଓ ସ୍ୱେଦ, ଅଶ୍ରୁ ଓ ଶୋଣିତରେ ଅନ୍ଧ ସଂସାର, ତଥାପି ତାହା ଚନ୍ଦନ ଓ କସ୍ତୁରୀ ଭଳି ମୁଗ୍‌ଧ କରେ ଏବଂ ବାହାର କେଉଁଠୁ ନୁହେଁ, ତାହା ପୁଣି ତାଙ୍କଠୁ ହିଁ ଉସ୍ତୁରୁ-ଥାଏ । କବି ନିଜ ଭିତରେ ଜଗନ୍ନାଥଙ୍କୁ ଅନୁଭବ କରନ୍ତି । ଅନୁଭବ କରନ୍ତି 'ଦୁଇ ଚକାଡ଼ୋଳା'ରୁ ଉଜ୍ଜଳି ଆସୁଥିବା ଆଲୁଅ ପରି କେଉଁ ଈଶ୍ୱରଙ୍କର ନୁହେଁ, ତାଙ୍କ ଆପଣା ଦୃଷ୍ଟିର/ ଯାହାର ପବିତ୍ର ଧାସରେ ସଂସାରର ସବୁ ଅନ୍ଧାର ଧଉଳି ଉଠୁଥାଏ, ଦିଶି ଯାଉଥାଏ ରାସ୍ତା । ରୋଗ ଶୋକ ଓ ମୃତ୍ୟୁ ଭିତରେ 'ଜୀବନ ବଞ୍ଚିବାର' ମହାର୍ଘ ଚନ୍ଦନ ଚୁଇ ଉଠେ ଆପଣାର ଅନ୍ତଃକରଣରୁ । ଏଣୁ 'ଭିତିରି ଚନ୍ଦନ' ଏଠି ଜଗନ୍ନାଥ - ସଂସ୍କୃତିର କୌଣସି ଔପଚାରିକତାର ଉପଲକ୍ଷ୍ୟ ମାତ୍ର ନୁହେଁ, ଏହା କବିଙ୍କର ସ୍ୱ ଅନ୍ତର୍ଲୋକରେ ଲୁକ୍‌କାୟିତ ଆଧ୍ୟାତ୍ମିକ ସୁବାସର ସନ୍ଧାନ ।

'ଭିତିରି ଚନ୍ଦନ' ଶୀର୍ଷକର ଯଥାର୍ଥତା ନିହିତ ଶୀର୍ଷକ କବିତାର ଅନ୍ତିମ ଧାଡ଼ିରେ : 'ଏତେ ଗ୍ରୀଷ୍ମ ଅଣସର ତମ ସାଙ୍ଗେ ମୋ ଭିତରେ କଟାଇଲା ପରେ' । ବଡ଼ ଦେଉଳରେ ନୁହେଁ, ଅଣସର ଲୀଳା ସଙ୍ଘଟିତ ହୋଇଛି କବିଙ୍କ ଅନ୍ତରାତ୍ମାରେ । ସେଇଠି ଗ୍ରୀଷ୍ମ ଓ ସେଇଠି 'ଚନ୍ଦନ ଲାଗି' । 'ସନ୍ଧାନିବା ଭିତରି ଚନ୍ଦନ ଏହି ପଞ୍ଚଭୂତ ପ୍ରକୃତିର' (ଫୁଜିୟାମା - ପୃ - ୧୦୬) । 'ଭିତିରି - ଅନୁଭୂତିର ଗଭୀରତମ ଅନ୍ତର୍ଗମନ ଓ 'ଚନ୍ଦନ' ସୃଜନର ନିବିଡ଼ତମ ଆଘ୍ରାଣ । ଓଡ଼ିଆ ଜାତିର ଆଧ୍ୟାତ୍ମିକ ମାନସିକତାର ପ୍ରତୀକ ଜଗନ୍ନାଥ । ଜଗନ୍ନାଥ ସଂସ୍କୃତିର ପ୍ରଚାର 'ଭିତିରି ଚନ୍ଦନ' ଆଲୋଚ୍ୟ ଗ୍ରନ୍ଥରେ କବିତ୍ୱ ଓ ସୃଷ୍ଟିଶୀଳତାର ଗୂଢ଼ତମ ମୁଦ୍ରା ବହନ କରି ସାତ୍ତ୍ୱିକ ମହିମାରେ ମହିମାନ୍ୱିତ । 'ପ୍ରାଣର ପାଖୁଡ଼ା' ଭଳି କବିତା, ଯାହା ପ୍ରଭୁ

ଜଗନ୍ନାଥଙ୍କ ଠାରେ ସମର୍ପିତ (‘ତମଠାରେ ସମର୍ପିତ ପ୍ରାଣର ପାଖୁଡ଼ା ଭଳି/ ପ୍ରତିଟି କବିତା ମୋର’– ‘ପ୍ରାର୍ଥନା । ବାହୁଡ଼ା ବେଳର’ – ପୃ - ୧୦୧) । ‘ସୂର୍ଯ୍ୟସ୍ନାତ ତୀର୍ଥଜଳ’ରେ ମାଜଣା ହୋଇଥାଏ ହରିହରଙ୍କ ଭାରତ ଭାରତୀ – ପାଦପଦ୍ମ (ଫୁଜିୟାମା - ପୃ.-୧୦୬) । ସ୍ୱ ସଂସ୍କୃତିର ସୂଚନାତ୍ମକ ପରିଭାଷାକୁ କବିତା ଗ୍ରନ୍ଥର ସମୂଚିତ ଶୀର୍ଷକ କରି ହରିହର ନିଜ କବିତାରେ ଓଡ଼ିଶୀ ଆତ୍ମୀୟତା ସୃଷ୍ଟିର ଯେଉଁ ପରମ୍ପରା ‘ଶଙ୍ଖନାଭି’ରୁ ଆରମ୍ଭ କରିଥିଲେ, ତାହା ‘ଭିତିରି ଚନ୍ଦନ’ରେ ପୁଷ୍ପିତ । ଏଲିଟୀୟ ଆଧୁନିକତାଠୁ ଭାରତୀୟ ଆଧୁନିକତାକୁ ଭିନ୍ନ କରିବା ପାଇଁ କବି ତାଙ୍କ କବିତାକୁ ଯେଉଁ ଆଞ୍ଚଳିକ ବୈଶିଷ୍ଟ୍ୟରେ ମଣ୍ଡିତ କରିଛନ୍ତି, ତାହାର କ୍ୱଚିତ୍ ନମୁନା ତାଙ୍କ ସମସାମୟିକ ଅନ୍ୟ କବିତାରୁ ମିଳେ । ଓଡ଼ିଆ କବିତା ଶୈଳୀ ଓ ବକ୍ତବ୍ୟ - ଉଭୟରେ ପାଶ୍ଚାତ୍ୟରୀତିଗତିର ଅନ୍ଧାନୁସରଣ ଆପଣା ମାଟିରେ ବାୟବୀୟ ହୋଇଉଠୁଥିଲା ବେଳେ ହରିହର ଓଡ଼ିଆ ଭାଷା ଓ ସଂସ୍କୃତିରେ କବିତାର ଯେଉଁ ଅଭିନବ ପୁନର୍ନ୍ୟାସ ଆରମ୍ଭ କରିଛନ୍ତି ; କେବଳ ଓଡ଼ିଶା ନୁହେଁ, ଆଧୁନିକ ଭାରତୀୟ କବି – ଗୋଷ୍ଠୀରେ ତାହା ତାଙ୍କ ବିରଳତାକୁ ଚିହ୍ନଟ କରିଥାଏ । ଷଷ୍ଠ ଦଶକର ଓଡ଼ିଆ କବିତାରେ ହରିହର ପୋତିଥିବା ଭାରତୀୟ (ଓଡ଼ିଶୀ ଧାତୁର) ଆଧୁନିକତାର ଅସଲ ବୀଜ ଅଙ୍କୁରିତ ଓ ପଲ୍ଲବିତ ହୋଇ ଉତ୍ତର– ସତୁରୀରେ ସ୍ପଷ୍ଟ ହୋଇଥିବା ଉତ୍ତର–ଆଧୁନିକତାର ଯେ ଫଳ ଦାୟୀ, ଏହା ସ୍ୱୀକାର କରିବାରେ ମୋର ତିଳାର୍ଦ୍ଧେ କୁଣ୍ଠା ନାହିଁ ।

‘ଭିତିରି ଚନ୍ଦନ’ରେ କବି ହରିହରଙ୍କ ଜୀବନ ଦୃଷ୍ଟି ଖୁବ୍ ଶାଣିତ ଓ ତୀର୍ଯ୍ୟକ୍, ଯଦିଓ କବିତାଗୁଡ଼ିକର ଉପସ୍ଥାପନା ଅନୁଭୂତିର ମାତ୍ରାଧିକ ବ୍ୟକ୍ତିଗତତା ଯୋଗୁଁ ପ୍ରଥମେ ପାଠକର ଜଟିଳ ମନେ ହୁଅନ୍ତି । ଏହି ଜଟିଳତା କିନ୍ତୁ ଅବୋଧତା ନୁହେଁ; ବରଂ ଏହାକୁ ପାଠକ ଓ କବିତା ମଧ୍ୟରେ ଫର୍ଚ୍ଚା ଦିଶିବାକୁ ଡ଼େରିଥିବା ବୁଝାମଣାର କିଛି ବାକି ଅନ୍ଧାର ବୋଲି କହିବା ଅଧିକ ପ୍ରାସଙ୍ଗିକ ହେବ । ପୁଣି କିଛି ଅର୍ଥବ୍ୟକ୍ତ କରି କିଛି ଅବ୍ୟକ୍ତ ରଖିଯାଇଥିବା କବିତାକୁ ଯଦି ଉଚ୍ଚାଙ୍ଗ କବିତା କୁହାଯାଏ, ତେବେ ସେ ଦୃଷ୍ଟିରୁ ‘ଭିତିରି ଚନ୍ଦନ’ର ଅନେକ କବିତାକୁ ସଫଳ କହିହେବ । ‘କୋଇଲି ନୁହନ୍ତି କାଠହଣା’ରେ ସାମ୍ପ୍ରତିକ ପୃଥିବୀ ଓ ତହିଁରେ ଜିଇବାର ସଂଗ୍ରାମ ଚଳାଇଥିବା ମଣିଷ ମାନଙ୍କର ଯେଉଁ ଚିତ୍ର କବି ପ୍ରକଟ କରିଛନ୍ତି, ତାହା ତାଙ୍କ ମିଷ୍ଟିକ୍‌ଧର୍ମୀ କାବ୍ୟ ବକ୍ତବ୍ୟକୁ ବ୍ୟଙ୍ଗ ଓ ବିଦ୍ରୁପରେ ରୂପାନ୍ତରିତ କରିଦେଇଛି । ଏ ବ୍ୟଙ୍ଗର କିସମ କିନ୍ତୁ ଭିନ୍ନ । ତଥା କଥିତ ସାମ୍ୟବାଦୀ ବ୍ୟଙ୍ଗର ସୁଲଭ ଚଟୁଳତା ଏଥିରେ ନାହିଁ, ନାହିଁ ବିପ୍ଳବର ଗତବନ୍ଧା ଇମେଜରୀ; ଅଛି ସୂଚୀସୂକ୍ଷ୍ମ ଇଙ୍ଗିତ । ଆଲୋଚ୍ୟ କବିତାରୁ ପଂକ୍ତିଟିଏ ଉଦ୍ଧାର କରି ହରିହରଙ୍କ ବ୍ୟଙ୍ଗାତ୍ମକ କାବ୍ୟବୟାନର ତର୍ଜମା କରାଯାଉ–

'ଆଜି ମାଟିକୁ ଦେଖ, ତା'ର ବିହନ ପଚିଯାଇଛି/ ବୃଥା ହୋଇ ଯାଉଛି,
ବିହନକୁ ଦେଖ/ ତା'ପାଇଁ ମାଟି ନାହିଁ/ ସେ ବ୍ୟର୍ଥ ହୋଇ ଯାଉଛି ।''
(କୋଇଲି ନୁହଁନ୍ତି କାଠହଣା - ପୃ- ୫)

ସମଗ୍ର ବିଶ୍ୱରେ ପରିଦୃଶ୍ୟମାନ ଅବମାନବାୟନର ଚିତ୍ର ଆଲୋଚ୍ୟ କବିତାରେ ଅତି ପ୍ରାଞ୍ଜଳ ଭାବେ ପରିସ୍ଫୁଟ ।

ନେଲ୍‌ସନ୍ ମାଣ୍ଡେଲା, ବେଞ୍ଜାମିନ୍ ମୋଲାଏଜ୍, ନେରୁଦା ଓ ନିରାପତ୍ତା ପରିଷଦର କଥା ଉଠାଇ ଦର୍ଶାଯାଇଛି ମାରଣାସ୍ତ୍ର ସମ୍ମୁଖରେ ବ୍ୟର୍ଥ କିପରି ମଣିଷର ଚିତ୍କାର । କବିଙ୍କ ଦୃଷ୍ଟିରେ ବେପାରୀଙ୍କ ଶିକାରୀ ଜାଲରେ ଆବଦ୍ଧ ଆଗାମୀ ଯୁଗର ଶିଶୁ ସିଂହ । ସମଗ୍ର ବିଶ୍ୱକୁ ଛାଇଯାଇଛି ଅପସଂସ୍କୃତି, ସବୁଠି ମୃତ୍ୟୁର ନାଚ, ଛାଇରନାଚ । ମୃତ୍ୟୁ, ଧ୍ୱଂସ ଓ ଅବକ୍ଷୟର ସମ୍ମିଳିତ ରୂପକୁ ପ୍ରତୀକାୟିତ କରି ତାର ନାଁ ଦେଇଛନ୍ତି କବି 'ଅଙ୍ଗାର ପୁରୁଷ'; ତାଙ୍କ ଭାଷାରେ :

'ମୃତ୍ୟର ନାଚ... ଛାଇର ନାଚ... ଅଙ୍ଗାର ପୁରୁଷ
ଏଇ ଅପସଂସ୍କୃତିର ଜଳୁଛି... ଜଳିବ ଆଉ ନାଚୁଛି... ନାଚିବ...
ଏ ନାଚ ଛିଗୁଲେଇ ହେବ ବିଗୁଲ୍‌କୁ
ତାର ହସ ନିର୍ବାକ୍ କରିଦେବ ପାଞ୍ଚଜନ୍ୟର ନିର୍ଘୋଷକୁ
ତାର କାନ୍ଦ ସ୍ତବ୍ଧ କରିଦେବ ଘୋଷଯାତ୍ରାର ଘଣ୍ଟ ଧ୍ୱନିକୁ
ଶ୍ଳୋକ ଆଉ ମନ୍ତ୍ରଧ୍ୱନି ରାତ୍ରିର ପ୍ରଳାପ ପାଲଟି ଯିବ'

କବିତାର ଅନ୍ୟ ଛତ୍ରରେ କବି ପୁଣି କହିଛନ୍ତି :/

'ଏ ଗଣ ରାଜ୍ୟ ନୁହେଁ ଏକ ସ୍ଥୂଳତା/ ଏ ଗଣତନ୍ତ୍ର ନୁହେଁ କେବଳ ପୃଥୁଳତା' କବିଙ୍କ ଦୃଷ୍ଟିରେ ନୂଆ ଉଚ୍ଚାରଣ ନଥିବା ଧର୍ମଶାସ୍ତ୍ର ଓ ଅନୁଶାସନ ଗୁଡ଼ିକ ହେଉଛି ଗତାୟୁ ଭଙ୍ଗା କବାଟ ଏବଂ ଏହି ଜୀର୍ଣ୍ଣ କବାଟ ନିଶ୍ଚୟ ଟଳି ପଡ଼ିବ ଭବିଷ୍ୟତର ନୂଆହସରୁ ଝରି ପଡୁଥିବା ବାରୁଦରେ । ଭବିଷ୍ୟତକୁ କବି ତାଙ୍କ ପରିଭାଷାରେ ତାଳିମାରି ନାଚୁଥିବା ଗୌରାଙ୍ଗ କହିଛନ୍ତି । 'କୁମ୍ଭକର୍ଣ୍ଣ ଶୋଇଛି; ଭସ୍ମାସୁର ବରପ୍ରାପ୍ତ ହୋଇଛି; 'ବ୍ୟାସ ଗୁମ୍ଫାରେ ଅହରହ ଓଁ କାର ଶୁଣୁଥିବା କବିର ପାଷାଣ ପଞ୍ଜରା ତଳେ ଶତଧା ରକ୍ତନଦୀର ବିଳାପ; 'ରାମରାଜ୍ୟର ଛବିଳ ଅତ୍ୟାଚାର ଠାରୁ ମୁକ୍ତ ନୁହେଁ ଏ ପୃଥବୀ; 'ଦୀର୍ଘତମା ଗଲିଭର୍ ଉପରେ ନାଚିକୁଦି ଫେରୁଛନ୍ତି ବାମନ, ବାଲଖିଲ୍ୟ' ଓ 'ବନ୍ଧାହୋଇ ପଡ଼ିଛି ଏକ ବୃହତକାୟ ମତ୍ତ ହସ୍ତୀ' ପ୍ରଭୃତି କାବ୍ୟାଂଶରେ

କବି ଆପଣା ସମୟରେ ଯେଉଁ ଧ୍ୱଂସ ଓ ଅବକ୍ଷୟର ରୂପ ଆଙ୍କିଛନ୍ତି, ତାହା ଅନେକ ଗୁଣରେ ଏଲିୟଟଙ୍କ ଓ୍ୱେଷ୍ଟଲ୍ୟାଣ୍ଡ୍ର ସମାନ୍ତରାଳ ଓ ସମସ୍ପର୍ଦ୍ଧୀ ମନେହୁଏ। ଓ୍ୱେଷ୍ଟଲ୍ୟାଣ୍ଡ୍ର ଉପସଂହାରରେ ହିମବନ୍ତ ଆଡୁ ଘନେଇ ଆସୁଥିବା କୃଷ୍ଣକାୟ ମେଘମାଳା, ମେଘମାଳାରୁ ସମ୍ଭୂତ ବଜ୍ରର ଗୁରୁଗମ୍ଭୀର ଧ୍ୱନିରୁ ବାଷ୍ପାୟିତ 'ଦ' (ଦତ୍ତା ଦମ୍ୟତା, ଦୟଧ୍ୱଂମ୍)ର ଯେଉଁ ଆକାଶୀ ଉଦ୍‌ଘୋଷଣା ପ୍ରସଙ୍ଗ ଉଲ୍ଲେଖ କରାଯାଇଛି ତାର ବିକଳ୍ପ ଗୁରୁ ପ୍ରସାଦଙ୍କ 'କାଳ ପୁରୁଷ'ରେ ହୋଇପାରିନାହିଁ; ବରଂ ହୋଇଛି ହରିହରଙ୍କ ନିମ୍ନୋକ୍ତ ପରିକଳ୍ପନା;

'ଭୋକିଲା ଆଦୀବାସୀମାନଙ୍କର/ କଳାହାଣ୍ଡି ଅବା ଆଫ୍ରିକାର
ଏମାନଙ୍କ ଅନ୍ନ ଏମାନଙ୍କ ରକ୍ତ ଲୁଟିଥିବା/ ପଲଙ୍କ ଶାୟୀ ଦେବତା,
ନେତା ଓ ବଧିର ବିଦ୍‌ବତ୍ତା/ ଖସି ପଡୁଛନ୍ତି ନିଜ ନିଜର ପ୍ରଳାପରେ
ସ୍ୱର୍ଗରୁ ପାତାଳକୁ/ ଗଡୁଛନ୍ତି ନିଜ ନିଜ ପାଗଳ ଖାନାରେ।'

(କୋଇଲି ନୁହଁନ୍ତି କାଠହଣା - ପୃ.- ୮)

କ୍ଷୟିଷ୍ଣୁ ସମାଜର ଏ ଚୂଡ଼ାନ୍ତ ଅଧପତନର ଚିତ୍ର ଭାରତୀୟ ପ୍ରେକ୍ଷାପଟ୍ଟରେ ଅଧିକ ଉଲ୍ଲେଖନୀୟ ଓ ଯଥାର୍ଥ ମନେହୁଏ। ଭାରତୀୟ ମହାକାବ୍ୟ ମାନଙ୍କର ଅନ୍ତରୀଣ ପ୍ରବାହକୁ ଏହି ଉଚ୍ଚାରଣ ମାନଙ୍କରେ ଲକ୍ଷ୍ୟ କରିହୁଏ। ସାରୋଳ ଦାସଙ୍କ 'କୋକୁଆ' ପରି ହରିହରଙ୍କ 'ଅଙ୍ଗାର ପୁରୁଷ' ପରିକଳ୍ପନାରେ ସୃଜନାତ୍ମକ ସ୍ୱଚ୍ଛତା ଦୁର୍ଲ୍ଲକ୍ଷ ରହେନାହିଁ। ଏ ସବୁ ତର୍ଜମା ପରେ ବର୍ତ୍ତମାନ ମୂଳ ଉଦ୍ଧୃତି 'ଆଜି ମାଟିକୁ ଦେଖ... ବ୍ୟର୍ଥ ହୋଇଯାଇଛି'କୁ ଫେରି ପଡ଼ି ଚାହିଁଲେ ଉଦ୍ଧୃତିର ବ୍ୟଙ୍ଗାର୍ଥ ଆଉ ଅସ୍ପଷ୍ଟ ରହେ ନାହିଁ। 'ମାଟି' ଓ 'ବିହନ' ଉଭୟ ଅବକ୍ଷୟମୁଖୀ। ଆଧାର ଓ ଆଧେୟ ଦୁହେଁ ପଚମାନ, 'ବର୍ତ୍ତମାନ' ଅକ୍ଷମ ଓ 'ଭବିଷ୍ୟତ' ଲକ୍ଷଚ୍ୟୁତ। ଆଧିଭୌତିକ ବଚନ ବିନ୍ୟାସର ଏ ପ୍ରଗତିବାଦୀ ବ୍ୟାବହାରିକତା ହରିହରଙ୍କ ସୂକ୍ଷ୍ମ କାବ୍ୟ ଦୃଷ୍ଟିକୁ ଚିହ୍ନିତ କରିଥାଏ। ଶବ୍ଦ ଓ ପ୍ରତ୍ୟୟର ପାରମ୍ପରିକତାକୁ ନୂତନ ଅର୍ଥ ବ୍ୟଞ୍ଜନାର ଦ୍ୟୋତକ କରି ଶକ୍ତ ଓ ସମର୍ଥ ଭାବେ ଗଢ଼ି ତୋଳିବାର ଏ ପ୍ରକ୍ରିୟା ଭିତରେ ହରିହରଙ୍କ କାବ୍ୟଶୈଳୀର ଗତିଶୀଳତା ଆଉ ଅନିର୍ଦ୍ଦିଷ୍ଟ କି ?

ପ୍ରଗତିବାଦୀ କାବ୍ୟ ସଚେତନତାର ପ୍ରେକ୍ଷାପଟ୍ଟରେ 'ଭିତିରି ଚନ୍ଦନର ଅନ୍ୟ ଏକ ଉଲ୍ଲେଖନୀୟ କବିତା 'ବର୍ଷାର ପୂର୍ବାପର'କୁ ଚର୍ଚ୍ଚା କରାଯାଇପାରେ। ବର୍ଷା ଏଠି ବର୍ଷା ନୁହେଁ କି ନିଦାଘର ସନ୍ତାପ ଏଠି ନିଦାଘର ସନ୍ତାପ ନୁହେଁ। ଭିନ୍ନ ଏକ ବାସ୍ତବତାର ପ୍ରଚୋଦକ ବର୍ଷା। ଆତ୍ମୀୟ ସ୍ୱଜନଙ୍କ ବ୍ୟଗ୍ରତା ଓ ଆତଙ୍କ ପରି ବର୍ଷା ପୂର୍ବବର୍ତ୍ତୀ ମୂହୂର୍ତ୍ତମାନଙ୍କର ଉଦ୍‌ବିଗ୍ନତା। ଯେଉଁ ଯନ୍ତ୍ରଣାର ଭୂମି ପାଇଁ ଏ ବର୍ଷା ପୁଣି ଅଭିପ୍ରେତ, ସେ ଭୂମି ଟୁଛା ବିଲ,

ବଣ, ପାହାଡ଼ ନୁହଁ । ସେ ଏପରି ଭୂମି ଯେଉଁଠି ସ୍ୱପ୍ନର ତ୍ରିରଙ୍ଗ ବାନା ପୋତାହୁଏ, କ୍ରୁଦ୍ଧ, କ୍ରୁଦ୍ଧ ସଂଗ୍ରାମର ହାଡ଼ମାଂସ ଉପରେ । ତେବେ ଏ କେଉଁ ଗ୍ରୀଷ୍ମ, କେଉଁ ସଂଗ୍ରାମ କେଉଁ ଯନ୍ତ୍ରଣା ? କଣ ଏହା ଭାରତ ବର୍ଷର ସ୍ୱାଧୀନତା ସଂଗ୍ରାମ ? କବିତାର ପରବର୍ତ୍ତୀ ଅଂଶରେ ଏହି ଧାରଣା ଅଧିକ ସ୍ପଷ୍ଟ ହୁଏ, ଯେତେବେଳେ କବି କହନ୍ତି;

'ଆଜି ବର୍ଷା ନାହିଁ/ ମିଳେଇ ଯାଉଥିବା କାଛରେ
ଝୋଟିର ଧାନ କୋଠି, ଚିତାର ବୋଇତ ଭଳି ।
ବର୍ତ୍ତି ଯାଇଥିବା ଏକ ମାନଚିତ୍ର... ଆମରି ଭାରତ'

(ବର୍ଷାର ପୂର୍ବାପର - ପୃ.-୧୫)

ସ୍ୱାଧୀନତା ସଂଗ୍ରାମର ଦୃଶ୍ୟ ପୁଣି କବିତାର ଦ୍ୱିତୀୟାର୍ଦ୍ଧକୁ ସାର୍ବଜନୀନ ମାନବୀୟ ସଂଘର୍ଷରେ ପରିଣତ । ନିଃଶେଷିତ ଧର୍ମ ହୋଇ ଉଠେ ପ୍ରସଙ୍ଗର ଭିନ୍ନ ସ୍ତର; ଯା' ଭିତରେ ଖୋଜାଚାଲେ 'ସଂସ୍କୃତିର ବିଶ୍ୱସ୍ତ ନିଃଶ୍ୱାସ' । ସବୁ ସଂଘର୍ଷ (ଜାତିଗତ, ଧର୍ମଗତ, ସୀମା ଓ ଶାସନଗତ) ଏକାକାର ହୋଇ ମାନବିକତାର ସୁରକ୍ଷା ପାଇଁ ଯୁଗ ଯୁଗରୁ ଜମା ହୋଇ ଆସୁଥିବା ଚିରନ୍ତନୀ ସଙ୍ଘର୍ଷରେ ସାମିଲ୍ ହୁଏ । 'ଧ୍ୱଂସର ପ୍ରକ୍ରିୟାରେ ଗଢ଼ା ହେବା'ର ବୁନିୟାଦି, ଯାହା ବରାବର ଦାବୀ ରଖେ ରକ୍ତ ମାଂସ ମଣିଷର ହସକାନ୍ଦ ପାଇଁ ଅପଣାର ବୋଲି ଘରଟିଏ । ନିଦାଘର ପରେ ବର୍ଷା ଯେପରି ସୃଜନର ଛନ୍ଦ ତୋଳି ନଇଁ ଆସେ ପୀଡ଼ିତ ମାଟିର ହାହାକାରକୁ, ସୃଜନର ପରମ୍ପରା ସେହିପରି ବାରବାର ନବଜନ୍ମ ଦେଉଥାଏ ମାଟି ଓ ମଣିଷର ଭବିତବ୍ୟକୁ । ବର୍ଷା ଏଠି ସୃଜନ । ନିଦାଘ ଯେତେ ପ୍ରଚଣ୍ଡ, ଯେତେ ରୁକ୍ଷ ହେଲେ ବି ବର୍ଷାର ସୃଜନମାୟାରେ ବିଚ୍ଳିତ ଓ ବିବର୍ତ୍ତିତ ହୋଇଯିବା ତାର ଅବଧାରିତ ଭାଗ୍ୟ । ଏଣୁ 'ଧ୍ୱଂସର ଖତଗଦା' ଉପରେ 'ପଡ଼ି ରହିଥିବା କଣ୍ଢେଇ'ର ପରିକଳ୍ପନା । 'ଖତଗଦା' ନଷ୍ଟ ଅତୀତ ବା ବର୍ତ୍ତମାନ; 'କଣ୍ଢେଇ' ଏଠି ସମ୍ଭାବନା, ଠିକ୍ ଯେପରି କବିର ସ୍ୱପ୍ନ । ପ୍ରତ୍ୟାଶିତ ବର୍ଷା ଆସେ ଧ୍ୱଂସର ଧୂର୍ଜଟୀ ନୃତ୍ୟ ପରେ, ସାଙ୍ଗରେ ଘେନି କରୁଣା ଓ ଆଶିର୍ବାଦ ଆସ୍‌ମାନ୍‌ରୁ । ବର୍ଷା ପରବର୍ତ୍ତୀ ଉତ୍ତରିତ ମୁହୂର୍ତ୍ତର ଯେଉଁ ଚିତ୍ର କବିତାଟିରେ ପ୍ରଦତ୍ତ, ତାହା କବି ହରିହରଙ୍କ ସୃଷ୍ଟି ଦକ୍ଷତାର ସାକ୍ଷ୍ୟ ହୋଇ ବାରନ୍ତରକୁ ରହିବାର ନିର୍ବିଚଳ ସଙ୍କଳ୍ପ ରଖେ । ପାଠକଙ୍କ ଅବଗତି ନିମନ୍ତେ ଏଠାରେ ପ୍ରାସଙ୍ଗିକ ପଂକ୍ତିଟି ଉଦ୍ଧାର କରାଗଲା :

'ବର୍ଷା ସରିଯାଇଛି ଅନେକ କାଳରୁ/ ଗଛ ପତ୍ରରୁ ପକ୍ଷୀଟିଏ ଉଡ଼ିଗଲେ
ତା'ତଳେ ଚିନ୍ତିତ ଲୋକଟିର କାନ୍ଧରେ/ ଓଠରେ, ବୁକୁରେ ଆଉ ପାପୁଲିରେ
ଝରିପଡ଼ିବ ସଞ୍ଚିତ ବର୍ଷାର ଜଳ/ ଅକସ୍ମାତ୍ ହେଉ ପଛେ ସେତିକି ସମ୍ବଳ

ସେତିକିରେ ଜୀବନ୍ୟାସ ନେବ ସବୁ ଈଶ୍ୱରଙ୍କ/ କରୁଣା ଓ ଆଶୀର୍ବାଦ...
ସମ୍ଭାବନା ବିଶ୍ୱସ୍ତ ମାଟିର ।'

(ବର୍ଷାର ପୂର୍ବାପର - ପୃ.-୧୫)

ବର୍ଷାର ଏଠି ପ୍ରସଙ୍ଗ ନୁହେଁ, ପ୍ରସଙ୍ଗ ଗଛ ତଳେ ଠିଆ ହେଇଥିବା ଚିନ୍ତିତ ଲୋକ, ଯେ ଆର୍ତ୍ତ ମଣିଷର ପ୍ରତିନିଧି ହୋଇ ବର୍ଷା ସୂତ୍ରରେ ମାଟିକୁ ଯୋଡ଼ି ଦେଇପାରେ ଆକାଶ ଓ ସର୍ବୋପରି ଈଶ୍ୱରଙ୍କ ସହ । କାହିଁ କେଉଁ ଆଢୁଆଳରେ ଗଛର ପତ୍ର, ପତ୍ରରେ ସଞ୍ଚିତ ବର୍ଷାଜଳ, କାହିଁ କେତେ ଦୂରରେ ପୁଣି ଈଶ୍ୱର ଓ ତାଙ୍କ ରହସ୍ୟାଚ୍ଛନ୍ନ କରୁଣା – କାହିଁ ପୁଣି କବିର ପାର୍ଥିବ ଦୃଷ୍ଟି- ଦିବ୍ୟାୟିତ ହୋଇନଥିଲେ ସେ ଦୃଷ୍ଟି ଆଦିଗନ୍ତ ବିସ୍ତୃତ ମହିମାମୟ ପ୍ରକୃତିର ବିଶାଳତା ଭିତରେ ହଜିନଯାଇ ଲଟକି ରହନ୍ତା କି ସହଜରେ ଏମିତି ଏକ ନଗଣ୍ୟ ଦୃଶ୍ୟରେ ? ଏହା ହିଁ କବିତାରେ ମହାକାବ୍ୟିକତାର ତଡ଼ିତ୍ ଯାହାର ପ୍ରାପ୍ତି ପାଇଁ କବିକୁ ଗୋଟିଏ ଜନ୍ମ ନୁହେଁ, ଗୋଟିଏ ଜନ୍ମାନ୍ତର ଅପେକ୍ଷା କରିବାକୁ ହୁଏ ।

ହରିହରଙ୍କ କବିତାର କାନ୍‌ଭାସ୍ ଆଦୌ ଅଣଚଉଡ଼ା ନୁହେଁ; ଆକାଶପରି ଫାଙ୍କା ଓ ଫରଚା । ସରିବା ସରିବା ଦିଶିଗଲେ ବି କବିତାରୁ କବିତା, ଧାରଣାରୁ ଧାରଣା, ପ୍ରସଙ୍ଗରୁ ପ୍ରସଙ୍ଗ ଘୁଞ୍ଚି ଘୁଞ୍ଚି ଯାଉଥାଏ ଏବଂ ସିସୃକ୍ଷାର ଦିଗନ୍ତ ବୁଢ଼ୀ ଅସୁରୁଣୀର କାଚ ବେଣ୍ଟ ପୋଖରୀ ପରି । ନଗରୀର ଶୂନ୍ୟତା ବୋଧ ଓ କୃତ୍ରିମ ଜୀବନ ସ୍ରୋତରେ ନିଃସଙ୍ଗ ହୋଇ ପଡୁଥିବା ମଣିଷର ଅଣନିଃଶ୍ୱାସୀ ବେଫିକର୍ ସ୍ଥିତିକୁ ସେ ତାଙ୍କ କବିତାରେ ଫଟୋଗ୍ରାଫ୍ ପରି ଆଙ୍କି ଦିଅନ୍ତି । ଏ ଫଟୋରେ ଧରାଦିଏ ମଣିଷର ଅନ୍ତଃମନ :

'ମୁଁ ଗୋଟିଏ ମୁହୂର୍ତ୍ତରେ ଏକତ୍ର ହୁଏ/ ଅଟକି ଥିବା ଟ୍ରାଫିକ୍‌ରେ ସବୁରି ସାଥିରେ
ଓ ବିଚ୍ଛିନ୍ନ ହୋଇ ଧାଇଁଥାଏ ଗଳିକନ୍ଦି/ ଛେଉଣ୍ଡ ପିଲାଟି ପରି ରାହା ଧରି
ଶୂନ୍ୟରେ.../ ଲିଫଟ୍‌ରୁ ଲିଫଟ୍ ଚଢ଼ି ପ୍ରତି କୋଠା, ପ୍ରତି କୋଠରୀରେ'

(ଅସମ୍ଭବ ସମ୍ଭାବନା : ପୃ.- ୧୭)

ଦ୍ରୁତ ଆଧୁନିକୀକରଣର ମୟପୁରୀରେ ମଣିଷର ଏ ନିଃସଙ୍ଗତା ଗତାନୁଗତିକ ନିଃସଙ୍ଗତା ନୁହେଁ, ଯାହା ସାତ୍ତ୍ୱିକ ମୋହଭଙ୍ଗରୁ ଆସେ । ଏ ହେଉଛି ଯାନ୍ତ୍ରିକ ଶିଳ୍ପାୟନରୁ ଉଦ୍‌ଭୁତ ମଣିଷର ପରିଚିତ – ସଙ୍କଟ । ଗୋଷ୍ଠୀ-ବାସରୁ ଛିନ୍ନ ଆଧୁନିକ ମଣିଷର ନୂଆ ବିପଣୀ – ଯେ ସଂସ୍କୃତିରେ ନିଜର ସତ୍ତା ହରାଇବସୁଛି । ସେ ମଣିଷ ନ ହୋଇ ହୋଇ ଉଠୁଛି 'ସଂଖ୍ୟା', 'ବ୍ୟକ୍ତି' ନ ହୋଇ ହୋଇଯାଉଛି 'ସମୂହ' । ଜାମ୍ ଟ୍ରାଫିକ୍‌ରେ ଅଟକି ରହିଥିବା ଏକ ଅସ୍ଥାୟୀ 'ସମଷ୍ଟି' ସହ କେଇଟି ମୁହୂର୍ତ୍ତ ପାଇଁ ସେ ସଂଯୁକ୍ତ; ତା' ପରେ ବିଚ୍ଛିନ୍ନ, ଏକା ଏକା । ସ୍ଥିରତା

ନୁହେଁ, ସେ ପ୍ରବହମାନତାରେ ପେଶି ହେଉଯାଉଥିବା ବସ୍ତୁଟିଏ ମାତ୍ର । ନିଃସଙ୍ଗତାର ଚିତ୍ର ଖୁବ୍ ପ୍ରାଞ୍ଜଳ ଓ ଅର୍ଥପୂର୍ଣ୍ଣ । 'ନାମଜାଦା ପ୍ରତିମୂର୍ତ୍ତି ଥିବା ଛକ ଉପରେ/ ଚିଲ ଓ ଶାଗୁଣାମାନେ ଚକ୍‌କର କାଟୁଛନ୍ତି ଦିନସାରା; 'ମଦ୍ୟପର ଭୟ ଭଳି ଶୂନ୍ୟତା', 'ଗଣତନ୍ତ୍ର ଭଳି ବଧୀର ହେବାକୁ ପଡ଼ିବ ଯେମିତିକା ନେତା ଓ ଜନତା' (ମୁହୂର୍ତ୍ତର ଶତାବ୍ଦୀ - ପୃ. ୨୨) ଭଳି ବ୍ୟଞ୍ଜନାଗର୍ଭୀ ଉକ୍ତି ଗୁଡ଼ିକରେ ମଣିଷର ନିଃସଙ୍ଗତା ସାଙ୍ଗକୁ କବି ଶଠତା ଓ ଚଞ୍ଚକତାପୂର୍ଣ୍ଣ ସମାଜ ବ୍ୟବସ୍ଥା ତଥା ବ୍ୟର୍ଥ ଓ ବିଫଳ ଗଣତନ୍ତ୍ରର ଯେଉଁ ଶାଣିତ ଅବତାରଣା କରିଛନ୍ତି, ତାହା କବିଭାବେ ଜୀବନ ଓ ଜଗତ ପ୍ରତି ତାଙ୍କ ଅଙ୍ଗୀକାରବୋଧର ଦୃଢ଼ତା ସାବ୍ୟସ୍ତ କରିଥାଏ । 'ବିଦ୍ରୂପ' ପାଠକର କଳିଜାରେ ଛୁଞ୍ଚି ଫୋଡ଼ି ଦେଇଯାଏ, ଅଥଚ ଭୁଲରେ କେଉଁଠି ବି ପ୍ରତିବାଦୀ– ସାହିତ୍ୟ ସୁଲଭ ରୁଚିହୀନ, ଉଆରା ଆକ୍ଷେପ ନ ଥାଏ । ଅପରକୁ ନ୍ୟୁନ କରି ନିଜର ଅହଂ ପ୍ରତିଷ୍ଠା ବ୍ୟଙ୍ଗ ନୁହେଁ, ବ୍ୟଙ୍ଗ ନୀତି ଓ ନିୟମର ସ୍ଖଳନ ଓ ବିଚ୍ୟୁତି ପ୍ରତି ଗଠନମୂଳକ ଆହ୍ୱାନ – ଏକଥା ହରିହରଙ୍କ କବିତା ପଢ଼ି ବୁଝିହୁଏ ।

କବି ଆତ୍ମପକ୍ଷ ସମର୍ଥନ ଆଳରେ ଶାସ୍ତ୍ର, ସୁଧାର ମାନବାତ୍ମାର ଆନତ ପିଠିର ସମ୍ବେଦନା ଓ ଆକୃତିର ପାପୁଲି ଥପାଇ କହି ଉଠନ୍ତି :

> 'ମୋର ପ୍ରତିପକ୍ଷ ସହିତ ବାଜି ରଖିବା ପାଇଁ/ ନିଜ ହାଡ଼ ଖଣ୍ଡକ ବି
> ପଶାକାଠି କରିପାରି ନାହିଁ/ ଶତାବ୍ଦୀର ସଫଳ ବ୍ୟକ୍ତିଟିଏ ହେବାପାଇଁ
> ମତେ ସେ ମନ୍ତ୍ରଣା ଆଉ ଚତୁରତା ଜଣାନାହିଁ/ ଅଥଚ ସବୁରି ସଙ୍ଗେ ମିଶି
> କେତେକାନ୍ଧ ଲଗେଇନି/ ନିଜେ ପୁଣି ଏକା ଏକା କେତେ ନିଜ ଲୁହ ମୁଁ ପିଇନି
> (ମୁହୂର୍ତ୍ତର ଶତାବ୍ଦୀ- ପୃ : ୨୫)

ବ୍ୟକ୍ତି ସ୍ୱାର୍ଥର ଗଣଦୌଡ଼ରେ ପଛେଇ ଯାଉଥିବା ମଣିଷ ପ୍ରତି କବିର ଏ ଦରଦ ଭୁଲି ହେବାର ନୁହଁ । ଏକ ପକ୍ଷରେ ସଭ୍ୟତାର ତଥାକଥିତ ଧୂର୍ତ୍ତତାକୁ ଧିକ୍କାର ଓ ଅନ୍ୟ ପକ୍ଷରେ ଦେଶଦଶ ପାଇଁ ଏକଦା ଉତ୍ସର୍ଗୀକୃତ ଅଥଚ ସଭ୍ୟତାର ଗତିଶୀଳ ମାୟାବୀ ଖୋଜରେ ପାଦ ରଖି ନପାରି ଥକି ପଡୁଥିବା ମଣିଷମାନଙ୍କ ପ୍ରତି ଅନୁକମ୍ପା – ଏ ଉଭୟ ପ୍ରସଙ୍ଗ ଗୋଟିଏ ମାତ୍ର ଉଲ୍ଲେଖରେ ଉପରୋକ୍ତ ଉଦ୍ଧୃତିରେ ଯେପରି ମୂର୍ତ୍ତିମନ୍ତ, ତାହା ଯେ ବ୍ୟାଖ୍ୟା ନିର୍ଭର ନୁହେଁ, ପାଠକର ଅନୁଭବ ସାପେକ୍ଷ-ଏକଥା ପୁନଶ୍ଚ ବୁଝାଇ କହିବା ନିଷ୍ପ୍ରୟୋଜନ ।

ଅକ୍ଷରମାନେ ଅର୍ଥ– ସ୍ୱାଧୀନ ଓ ଅର୍ଥମାନେ ଅକ୍ଷର ସ୍ୱାଧୀନ ହୋଇ ନିଦକରେ ଆତଯାତ ହୁଅନ୍ତି ହରିହରଙ୍କ କବିତାରେ ଶବ୍ଦର ସାମ୍ରାଜ୍ୟରେ ଅର୍ଥ ଏଠି ଏକାଙ୍ଗ ଚକ୍ରବର୍ତ୍ତୀ

ନୁହେଁ, ସମୟର ବିବର୍ତ୍ତନରେ ଶବ୍ଦ ସହିତ ଯୋଡ଼ି ହୋଇ ଯାଉ ଥାଏ ନୂଆ ନୂଆ ତାଜା ଅର୍ଥ । ପୁଣି ଏପରି ଚଳତ୍‌ବାକ୍ ଅର୍ଥଙ୍କର ବିଶ୍ୱାସ ଭାଜନ ହେବା ପାଇଁ ଅକ୍ଷରଙ୍କ ନୀରବ ପ୍ରତିଦ୍ୱନ୍ଦିତା କାଏମ୍ ରହିଥାଏ ତାଙ୍କ କବିତାରେ । ଏପରି ସୃଜନାତ୍ମକ ପ୍ରୟାସରୁ ନିହଲ୍ ଆକାଶ, ଚହଲ୍ ପରିପାର୍ଶ୍ୱ, ପକ୍ଷାଘାତ ହସ, ଶୁଖିଲା ଖୁରୁଡ଼, ନିଦ୍ରିତ ନିର୍ଜନତା, ଚିତ୍ରିତ ସମ୍ପର୍କ, ଅଶ୍ଳୀଳ ଆଡ଼ମ୍ବର, ହାଲୋକ, ଅଚାବୁଆ ମନ, ଛଉଛଉ ରାସ୍ତାଘାଟ, ଝାଞ୍ଜର ଝଞ୍ଜା ପରି ଶବ୍ଦ – ଗୁମ୍ଫନର ଉଦ୍ଭବ । ନିଜେ ନିଜ ପାଖରେ ବି କ୍ରୀତଦାସ ହୋଇ ନ ରହିବା ଯେଉଁ କାବ୍ୟ– ଚେତନାର ଝୁଙ୍କ୍, ସେଠାରେ ଶବ୍ଦ ଓ ଅର୍ଥର ଏ ଉଦ୍ଦାମ ଲୁଚକାଳି ହିଁ କେବଳ ସମ୍ଭବ ହୁଏ । (‘ଅକ୍ଷର କି ଅର୍ଥ କେବେ ଧରି ରଖି ପାରେ, କିବା ଅର୍ଥ ହିଁ ଅକ୍ଷରକୁ ଧରି ରଖେ/ ଇଚ୍ଛା ମତେ ଶବ୍ଦ ଓ ଧ୍ୱନିରେ’– ବାଗର୍ଥ; ପୃ-୨୬)। କବି କହନ୍ତି : ପରିବର୍ତ୍ତନ ହିଁ ସତ୍ୟ ଯାହା ଅପରିବର୍ତ୍ତିତ ଓ ଗଢ଼ିଦିଏ ନୂଆ ଶବ୍ଦ, ଯୋଡ଼ିଦିଏ ଶବ୍ଦ ସାଙ୍ଗେ ନୂଆ ଏକ ଅର୍ଥ । ମଣିଷ ଭିତରେ ଥିବା ଅଦୃଶ୍ୟ ମଣିଷ ଓ ଚରିତ୍ର ଭିତରେ ଥିବା ଅଦୃଶ୍ୟ ଚରିତ୍ର ରୂପ ପରିଗ୍ରହ କରେ ହରିହରଙ୍କ କବିତାରେ । ସମ୍ପୂର୍ଣ୍ଣତା ଭିତରେ ଅସମ୍ପୂର୍ଣ୍ଣତାର ଦୀର୍ଘଶ୍ୱାସ ହୋଇ ତାଙ୍କ କବିତା ପାଠକର ମନରେ ଆସ୍ପୃହାକୁ ଅହରହ ଆଲୋଡ଼ିତ କରୁଥାଏ । ନଥିବାରେ ଆଣି ଦେଉଥାଏ ଥିବାର ପ୍ରତ୍ୟୟ ଓ ଥିବାରେ ଅର୍ଥାନ୍ୱିତ କରୁଥାଏ ନଥିବାର ପ୍ରତ୍ୟୟ । ‘ଫୁଲଭଳି ମୁର୍କି ମୁର୍କି ହୋଇ ହସୁଥିବା ଓଠ’ (ସେପରି ନଥାନ୍ତି କେହି - ପୃ. - ୩୯) ଭଳି ଚିତ୍ର ରୂପରେ ‘ଓଠ’ ଉଦ୍ଦେଶ୍ୟ ହୁଏ, ମାତ୍ର ‘ଫୁଲ’ ହୋଇଉଠେ ଉଦ୍ଦିଷ୍ଟ । ହେଁସ ଡେଣୁଆ ପରି ଉଦ୍ଦେଶ୍ୟ ଓ ଉଦ୍ଦିଷ୍ଟ ହରିହରଙ୍କ କବିତାରେ ଫେର ବଦଳ ହୋଇ ପାଠକର ରସବୋଧକୁ ତିଆରନ୍ତି ବକ୍ତବ୍ୟର ଚତୁର ତାରକସିରେ ।

ଅର୍ଦ୍ଧସ୍ୱପ୍ନ ଓ ଅର୍ଦ୍ଧ ଜାଗରଣର ମାୟା– ପଟଳରେ ଗଢ଼ା ହୋଇଥାଏ କବିଙ୍କର ଅଧିକାଂଶ କବିତା । ‘ସ୍ୱପ୍ନ’ ହରିହରଙ୍କ କାବ୍ୟ– ଚିନ୍ତନ ଓ ମୃତୟନର ମୂଳ ପ୍ରସଙ୍ଗ ହୋଇଥିଲେ ବି ତାଙ୍କ କବିତା ମାମୁଲି କବିଙ୍କ ପରି ସ୍ୱପ୍ନ ବର୍ଣ୍ଣନା କରେନାହିଁ, କରେ ବିନିମୟ । ତାଙ୍କ କବିତାରେ ଜଣେ ଏକାଏକା ନୁହେଁ, ଦି’ ଜଣ ସାଙ୍ଗ ହୋଇ ଦେଖନ୍ତି ଏ ନିଆରା ସ୍ୱପ୍ନ । କିଛି ମନେଥିବା ଓ କିଛି ହୁଡ଼ିଯାଇଥିବା ଏ ସ୍ୱପ୍ନର ଅତୁଆଖିଅ ଜଣେ ଧରାଇ ଦେଉଥାଏ ଆର ଜଣକୁ ।

ହରିହରଙ୍କ କବିତାର ଏହ ଦୁଇଜଣ ପୁଣି ଯେ କେହି ନୁହନ୍ତି, କାବ୍ୟ– ମାନସିକତାରେ ଉଭୟ ସମ୍ପନ୍ନ ଓ କର୍ଷିତ– ହୃଦୟ ; ତହିଁରୁ ଜଣେ ଖୋଦ୍ କବି ଓ ଆର ଜଣକ ପାଠକ । ଉଲ୍ଲେଖନୀୟ ଯେ କବିଙ୍କ ସ୍ରଷ୍ଟା ପ୍ରକ୍ରିୟାର ଏହି ‘ସ୍ୱପ୍ନ-ବିନିମୟ’ ଦୁଇଜଣଙ୍କ ଅତିରିକ୍ତ ତୃତୀୟ

ଜଣକ ପାଇଁ ନିଷିଦ୍ଧ ନୁହେଁ । କବିତାକୁ କାନେଇ ଆଉ ଯିଏ ଯିଏ ଉହାଡ଼ରେ ଉଦ୍‌ଗ୍ରୀବ ହୋଇଥାଆନ୍ତି, ତାଙ୍କୁ ବି ଶୁଭିଯାଉଥାଏ ହରିହରଙ୍କ କବିତାର ଏହି ଦି' ଜଣିଆ ଅଭିଜାତ ଭୁଟୁ ଭୁଟୁ, କେବେ ସ୍ପଷ୍ଟ କେବେ ହୁଏତ ଅସ୍ପଷ୍ଟ । କହିବା ବାହୁଲ୍ୟ ଯେ, ସବୁ କାଳରେ ସବୁ ଭଲ କବିତା ପରି ହରିହରଙ୍କ କବିତାରେ ପ୍ରାଞ୍ଜଳତା ଓ ସଂଶୟାଚ୍ଛନ୍ନତା ମଧ୍ୟରେ ସୀମାରେଖା ନଥାଏ । ଏପରି ସୀମାରେଖା ଗୁଣାତ୍ମକ କବିତା ପାଇଁ ଅବାନ୍ତର, ହୁଏତ ଏଇଥି ପାଇଁ ।

'ଭିତିରି ଚନ୍ଦନ' କାବ୍ୟ ଗ୍ରନ୍ଥର କାବ୍ୟ– ପ୍ରସ୍ତାବ (Theme) ଓ କାବ୍ୟ ପ୍ରକାଶ ଉଭୟକୁ ତୀକ୍ଷ୍ଣ ଭାବେ ଅନୁଧ୍ୟାନ କଲେ ଜଣାଯାଏ ଯେ, ଅନୁଭବର ଅନ୍ତର୍ଯାତ୍ରା ହେଉଛି ତାଙ୍କ ବକ୍ତବ୍ୟର ପ୍ରମୁଖ ପ୍ରସଙ୍ଗ ଓ ଏହି କାରଣରୁ ତାଙ୍କ ବଚନ ବିନ୍ୟାସରେ ମିଶି ରହେ ଔଦାର୍ଯ୍ୟ ସଙ୍ଗେ ଶ୍ଳେଷ । କେତୋଟି ଦୃଷ୍ଟାନ୍ତ ନିଆଯାଉ–

(୧) 'ପକ୍ଷାଘାତ ହସଭଳି ଅନ୍ଧ ପୂଜାରୀର/ ଚନ୍ଦନର ମୁହଁ ଦିଶେ
ଏକାଭଳି/ ଗଳିକନ୍ଦି ଲୋକଙ୍କର ଚାନ୍ଦା, ଭେଦା, ହେଡ଼ା ଖାଇ
ହେପାଜତ ପାଉଥିବା ଦୟନୀୟ ଦେବା ଦେବୀଙ୍କର' ।

(କ୍ଷେତ୍ରବାସୀ : ପୃ.-୪୬)

(୨) 'ନର୍କର ପାହାଚ ସବୁ ଚହଟନ୍ତି/ ଗ୍ରୀଷ୍ମର ସନ୍ତାପରେ
ମଲ୍ଲୀଫୁଲ ଭଳି/ମଦନ ମୋହନ ସ୍ୱୟଂ ସୁସ୍ଥ ହୋଇ ଝୁଲୁଥାନ୍ତି
ଚିକିତ୍ସିତ ଲୋକ ଭଳି ମାନସିକ ପାଗଳଖାନାରେ ।'

(କ୍ଷେତ୍ରବାସୀ : ପୃ.-୪୭)

(୩) ସେ ଖାଲି ଏ ଗାଁର ବୋହୂ ନୁହେଁ/ ସେ ଗାଁର ଝିଅଟିଏ
xx ବାଦୁଡ଼ିଟି ଭଳି ସିଏ/ ଉଦ୍ୟାନରେ ମୁଣ୍ଡ ପୋତି ଆସେ ଯାଏ
xx ସକାଳରେ ଦିଶେ ହତଶିରୀ/ ଅଧାଖିଆ ପିଜୁଳି ଯେପରି ।'

(ଚାଲି ନଥିଲି ମୁଁ ପିଣ୍ଡାଧାରେ ବୋଲି : ପୃ.-୫୦)

(୪) 'ମଧୁବନରେ/ ବୈଷ୍ଣବଜନ ଭଳି ଉର୍ଦ୍ଧ୍ୱମୁଖ/ କୀର୍ତ୍ତନରତ ଲଙ୍କା ଆମ୍ବ ବୃକ୍ଷମାନେ/
ଛନ୍ଦାଛନ୍ଦି ବାହୁବନ୍ଧନରେ ।'

(ଗୁହାରିଆ : ପୃ.- ୫୬)

ଚାନ୍ଦା ଭେଦା ଓ ହେତାଖାଇ ହେପାଜତ ପାଉଥିବା ଦେବାଦେବୀଙ୍କର ଦୟନୀୟତା ଓ ଅନ୍ଧ ପୂଜାରୀର ଚନ୍ଦନମୁଖା ମୁହଁ, ଚହଟି ଉଠୁଥିବା ନର୍କର ପାହଚ ଓ ଗ୍ରୀଷ୍ମ ସନ୍ତାପରେ ଟଣକି ଉଠୁଥିବା ମଲ୍ଲୀ, ଦୋଳିରେ ଝୁଲୁଥିବା ମଦନମୋହନ ଓ ପାଗଳଖାନରେ ଚିକିତ୍ସିତ ଲୋକ, ମୁଣ୍ଡପୋତା ବାଦୁଡ଼ି ବନାମ ଅଧାଖିଆ ପିଜୁଳି ଓ ବୋହୂ ବନାମ ଝିଅ, ମଧୁବନର ଲଙ୍କା ଆମ୍ବଗଛ ଓ କୀର୍ତ୍ତନରତ ବୈଷ୍ଣବ ଜନ – ତୁଳନାରେ ସୌନ୍ଦର୍ଯ୍ୟ– ଦୃଷ୍ଟି ପରୋକ୍ଷ, ପ୍ରତ୍ୟକ୍ଷ ବିରୋଧାଭାସ । ଶ୍ଳେଷ ଜରାୟୁ, ସୌନ୍ଦର୍ଯ୍ୟ ତା' ଭ୍ରୁଣ, ଖୁବ୍ ନିଘା କରି ନ ଚାହିଁଲେ ହରିହରଙ୍କ କବିତାରେ ଏ ବ୍ୟଞ୍ଜିତ– ଭାଷ୍ୟ ପାଠକ ଓ ସମାଲୋଚକର ଦୃଷ୍ଟି ଆଢୁଆଳରେ ରହିଯିବା ଯେପରି ସମ୍ଭବ, ବାରିବାରି ଦେଖି ଜାଣିଲେ ଏଥିରୁ ଉବୁରି ଯିବା ମଧ୍ୟ ସେହିପରି କାଠିକର । ଦୃଶ୍ୟ ଚୟନ ଓ ଦୃଶ୍ୟ ବୟାନର ପରିଶୀଳିତ ସାମ୍ବାନ୍ତ୍ୟ ହରିହରଙ୍କ ସମକାଳୀନ କବିତାରେ ନିଶ୍ଚୟ ପ୍ରଚୁର ନୁହେଁ । 'ଗୁହାରିଆ' ସଙ୍କଳନରେ ବିଶେଷ ଉଲ୍ଲେଖ ଦାବି କରୁଥିବା ଏକ ବିରଳ କବିତା । ପରମ୍ପରା, ମିଥ୍ ଓ ଆର୍କିଟାଇପ୍‌ର ଯଥୋଚିତ ସମନ୍ୱୟରେ ଗଢ଼ାଯାଇଥିବା ଏହି ବାଙ୍ମୟ ପ୍ରତିମାଟି କାବ୍ୟ ଶିଳ୍ପ ଦୃଷ୍ଟିରୁ ଏକ ଅକ୍ଷରାୟିତ ନବଗୁଞ୍ଜର । କବିତାଟି ପଢ଼ିଦେଲେ ପୋଲାଙ୍ଗ ତେଲର ଦୀପ ଧାସରେ ଦିଶିଯାଉଥାଏ ଯେଉଁ ବୁଢ଼ା ପଟ୍ଟ ଚିତ୍ରକାରର ଶୀର୍ଣ୍ଣ ମୁହଁ, ରଘୁରାଜପୁରର ଖାନ୍‌ଦାନି ମୁଖା, ଶ୍ରାବଣର ଭୋଲେବମ୍ ପଟୁଆର ଓ ଦିଶୁ ଯାଉଥା'ନ୍ତି ଜାନୁ ଘଣ୍ଟ ପର୍ଶୁରାମ; ତହିଁରେ ଉହ୍ୟଥାଏ ଆମ ସଂସ୍କୃତିର ଭାରତୀୟତା, ସାମ୍ପ୍ରତିକତାର ପୌରାଣିକତା, ଯାହାକୁ ଭେଳା କରି ହରିହରଙ୍କ କବିତାର ଦୁରୁହତାକୁ ଅନାୟସରେ ଅତିକ୍ରମ କରାଯାଇପାରେ; ଯଦି ଏପରି ଅତିକ୍ରମଣ ପାଇଁ ସତରେ କେହି ସମ୍ମତ ଥାଏ ।

'ଦୈନନ୍ଦିନ'ରେ କାବ୍ୟ-ନାୟକ ଯେତେବେଳେ ଶ୍ୱାସରୁଦ୍ଧ ଅନ୍ଧାରରେ ସାନଝିଅକୁ କୋଳକରି ବୋକ ଦେଉଥାଏ, ସେତେବେଳେ ତା'ଛାତିର ନିଃଶ୍ୱାସ ହୋଇଥାଏ କୋଣାର୍କର କୀର୍ତ୍ତି ଓ ଏଇଥିରୁ କାବ୍ୟ ନାୟକର ଶରୀରୀ– ଅଭିସନ୍ଧି ବୁଝିହୁଏ । ଶାଳପ୍ରାଂସୁ ବୃକ୍ଷଙ୍କର ଭୂଲୁଣ୍ଠିତ ମୁକୁଟ ଭଳି ଝରାପତ୍ର ଓ ତହିଁରେ ପୋତି ହୋଇ ପଡ଼ିଥିବା ଶୂନ୍ୟ ଟ୍ରାଫିକ୍ କବିତାରେ ତିଆରି କରେ ବିପ୍ଳବୀ କବିର ମୃତ୍ୟୁ ପରବର୍ତ୍ତୀ ହତଭଂବ ନିଃସଙ୍ଗତା (ବିପ୍ଳବୀ କବିଟି ମରିଗଲା ପରେ– ପୃ. ୭୧) । 'ଦେବ ଶିଶୁ'ରେ ଆକାଶର କଳାପଟା ପୋଛି ହେଉଥିବା କୁହୁଡ଼ିର ବୁଢ଼ୀ ଅସୁରୁଣୀ ଓ ତହିଁରୁ ଝରି ପଡୁଥିବା ଚନ୍ଦ୍ରିକାର ଟୋପା ଟୋପା ଶୁଭ୍ର ରକ୍ତ, ଥାଟ ପଟୁଆର– ଇତସ୍ତତଃଙ୍କ କ୍ରନ୍ଦନରତ ନିଃସଙ୍ଗ ସେନାପତି; 'ସୁନ୍ଦରଗଡ଼ : ଏକ ସୃଜନ ଅନୁଭବ'ରେ ଶେଷ ନକ୍ଷତ୍ରର ପ୍ରତିବିମ୍ବ ଭଳି ସୁନ୍ଦରଗଡ଼, ପରିତ୍ୟକ୍ତ ସାପକାତି ପରି ଉଡୁଥିବା

ପୋଷାକ, 'ଏମିତି ଆସୁଥାଅ ପ୍ରତିରାତି, ପ୍ରତିଟି ମୁହୂର୍ତ୍ତ'ରେ ଅଝାଡ଼ ଅରଣ୍ୟର ଝରାପତ୍ର ଉପରେ ପଡ଼ିଥିବା ଶିକାରୀ ଓ ଶିକାରର ରକ୍ତରେ କାନ୍ଦି ଉଠୁଥିବା ନିର୍ଜନତା, ଆପଣା ମୃତ୍ୟୁର ଭୟ ଆଣୁଥିବା ନିଜର ପାଦ ଶବ୍ଦ ; 'ଅଙ୍ଗାର ପୁରୁଷ'ରେ ନିଆଁ ଗାଡ଼ ତଳେ ଶୋଇଥିବା ଦୀର୍ଘତମ ଗଣବ୍ରହ୍ମ, ସହସ୍ରଶୀର୍ଷ ଅଙ୍ଗାରପୁରୁଷ ପ୍ରଭୃତି ବିମ୍ବ ପ୍ରୟୋଗକୁ ଲକ୍ଷ୍ୟ କଲେ ମନେ ହୁଏ, ଯେମିତି କବି ହରିହର ହେଉଛନ୍ତି ଭୀତି ଓ ହିଂସା ପୀଡ଼ିତ 'କରୁଣ ବାସ୍ତବତାର ସେହି ମହାନ୍ କବି, ଯାହାଙ୍କ କବିତାରେ କବି କବି ନୁହଁ/ କାପାଳିକ ଏବଂ ଶବ୍ଦ ଶବ୍ଦ ନୁହଁନ୍ତି/ ପୂଜା ମନ୍ଦାର ('କଙ୍କାଳର ହସରେ ଫାଟି/ ପଡୁଛି ଅନ୍ଧକାର/ ଶବ ଉପରେ ବସିଥିବା କବି ପଢୁଛି ତାରକମନ୍ତ୍ର' – ଭକ୍ତଚରଣ : ପୃ.-୮୬) । କୃଷ୍ଣପକ୍ଷ ରାତିରେ ଗାଁ ମଶାଣିରେ ପଡ଼ିଥିବା ଜହ୍ନପରି ଯେତିକି ଖୁସି ଖୁସି ସେତିକି ଖାଁ ଖାଁ ଏ କବିତା । ଶବ୍ଦର ଅଣଫେର ରାସ୍ତାରେ କବିଙ୍କର ଏହି ଆତ୍ମ ବିସ୍ମୃତ ତିମିରାଭିସାର ଜଣେ ସାଧନନିଷ୍ଠ ସୃଜନ ପ୍ରବଣ ସ୍ରଷ୍ଟା ଭାବେ ତାଙ୍କର ଏକନିଷ୍ଠତାକୁ ପୁନଃ ପୁନଃ ସାବ୍ୟସ୍ତ କରେ । ଏହି ପ୍ରସଙ୍ଗରେ ନିମ୍ନୋକ୍ତ ଦୁଇଟି ଉଦ୍ଧୃତି କଦାପି ଅବାନ୍ତର ମନେହେବ ନାହିଁ :

(୧) 'ପାଞ୍ଚୋଟି ଫୁଲତୋଡ଼ା ଭଳି ପାଞ୍ଚୋଟି ଅକ୍ଷରରେ/ ଗୋଟିଏ ସୁନ୍ଦରୀ,
ମାନଚିତ୍ରରେ ହସି ଉଠେ/ ନାଚି ନାଚି ଚାଲିଯାଏ; କେବେ ଚିମିନିର ଧୂଆଁ ଭଳି
ଇସ୍ପାତର ଆକାଶକୁ ତ କେବେ ପରିଚିତ ମୁହଁ ଭଳି/ ଫେରିଆସେ ମନ୍ଦିରାର
ଢ଼ଳ ଢ଼ଳ ସୁବର୍ଣ୍ଣ ପାତ୍ରକୁ/ ସଞ୍ଜ ଆଉ ସକାଳର ଶେଷ ନକ୍ଷତ୍ରର
ପ୍ରତିବିମ୍ବ ଭଳି, ତୋର ସ୍ମିତ ହସରେ, ସୁନ୍ଦରଗଡ଼ ।'

(ସୁନ୍ଦରଗଡ଼ : ଏକ ସୃଜନ ଅନୁଭବ - ପୃ.-୬୫)

(୨) 'ବିସ୍ତୃତ ଅରଣ୍ୟର ଝରାପତ୍ର ଉପରେ/ ପଡ଼ିଥିବା ଶିକାରୀ
ବା ଶିକାର ରକ୍ତରେ/ କାନ୍ଦି ଉଠ ନିର୍ଜନତା ପରି ତମେ
ଯେତେବେଳେ ନିଜର ପାଦ ଶବ୍ଦ/
ଭୟ ସବୁ ତୋଳି ଆଣେ ଆପଣା ମୃତ୍ୟୁର ।'

(ଏମିତି ଆସୁଥାଅ, ପ୍ରତିରାତି ପ୍ରତିଟି ମୁହୂର୍ତ୍ତ- ପୃ.-୭୮)

'ଲାଲକଢ଼ର ତପସ୍ୟା' ପରି 'ଭିତିରି ଚନ୍ଦନ'ରେ ପୁଣି ସେଇ 'ସାପ' କେତେବେଳେ ଆର୍କିଟାଇପ୍ ଭାବେ ତ କେତେବେଳେ ପ୍ରତୀକ ଭାବେ ବ୍ୟବହୃତ । କେବେ ଯୌନତା ଓ

କେବେ ପ୍ରଗତିର ସନ୍ତକ ସେ । 'ସୋମପାର ଚର୍ଯ୍ୟାପଦ', 'ରୀତିକାବ୍ୟ' ଓ 'ଗୁହାରିଆ' ପ୍ରଭୃତି କବିତାରେ ପ୍ରାଣୀ - ପ୍ରତୀକ 'ସାପ'ର ବହୁମୁଖୀ ପ୍ରୟୋଗକୁ ଲକ୍ଷ୍ୟ କରାଯାଇପାରେ । 'ରୀତିକାବ୍ୟ'ରେ କବି ସୁରଜିତ୍ ଓ ସୁଖଲତାଙ୍କ ନିବିଷ୍ଟ ସମ୍ଭୋଗ ଚିତ୍ର ଆଙ୍କିବା ବେଳେ ମାତୃତ୍ୱର ଲାଳସାରେ କାମୋନ୍ମତ୍ତା ସୁଖଲତା ସ୍ୱାମୀ ସୁରଜିତ୍‌କୁ ନେହୁରା ହୁଏ : 'ନା, ନା ତମେ ମୋ' ଦେବତା ନୁହଁ/ ବରଂ ତମେ ସେହି ଅଶ୍ଳୀଳ ନୀଳ/ କ୍ୟାସେଟ୍ ଗୁଡ଼ିକର ନାୟକ ହୋଇ ଆସ/ ସ୍ୱାଭାବିକ ଭାବେ ଆସ ନିଗ୍ରୋ ଭଳି, ଅଜଗର ଭଳି/ ଶ୍ୱେତାଙ୍ଗିନୀଟିକୁ ତୁମେ ଆତ୍ମସାତ୍ କର' ଏବଂ ଅନ୍ୟ ପକ୍ଷରେ ଭ୍ରୂଣ ସଞ୍ଚାର ପାଇଁ ଅକ୍ଷମ, ଅପାରଗ ସୁରଜିତ୍ ସୁଖଲତାଠୁଁ ମୁକ୍ତି ଚାହେଁ, ଅନୁନୟ କରେ ଈଶ୍ୱରଙ୍କୁ : 'ମୁଁ ଅକ୍ଷମ, ଅପାରଗ/ ପାରିକର ମହାପ୍ରଭୁ, ସର୍ପ ଆଉ ଶାର୍କୁଚର ଦୁସ୍ତର ସମୁଦ୍ର... ।' 'ସାପ' ଏଠି ତୀବ୍ର ଯୌନ କ୍ଷୁଧାର ପ୍ରତୀକ – ଆର୍କିଟାଇପ୍ । 'ଉଗ୍ରବାଦୀ' କବିତାରେ ସାପ କିନ୍ତୁ ଶ୍ରେଣୀ ପ୍ରତୀକ । ('ଆଜି ସେଠି ଦରମଲା ସାପଟିଏ/ ପ୍ରତିଶୋଧ ନେବା ପାଇଁ ଲୁଚିଛପି ବଞ୍ଚିଅଛି/ ବୁଦାମୂଳେ, ପଥର ସନ୍ଧିରେ x x ପୃ.- ୯୨) । ଅଥଚ ହରିହରଙ୍କ ଶ୍ରେଣୀ ଚେତନା କେବେ ବି ଗତବନ୍ଧା, ଫିମ୍ପିମରା, ନିକୃଷ୍ଟ ଶ୍ରେଣୀ- ଚେତନା ନୁହେଁ । 'ହୁକୁମନାମାର ନକଲ ନାମା'ରେ ଯେତେବେଳେ ସେ କହନ୍ତି : 'ମାହାଲିଆରେ ପୈଦା ଏଠି ଦେଶଦ୍ରୋହୀ.../ ନିର୍ମୂଳୀ ସୁବିଧାବାଦୀ ବା 'ଆମେ ନିରସ୍ତ୍ର, ନିରନ୍ନ, ବିବସ୍ତ୍ର... ସମବେଦନାର ଛତରକୁ/ ଲାଇନ୍ ମାରିଥିବା ଇଜ୍ଜତହୀନ ମଣିଷ/ ଓ ଉପରେ ବସି ଆଃ, ଚୁ-ଚୁ-କରୁଥିବା ଚତୁରଲୋକ/ ଆମେ ଏ ଦେଶର ନାଗରିକ' ସେତେବେଳେ କୌଣସି ଏକ ନିର୍ଦ୍ଦିଷ୍ଟ ଶ୍ରେଣୀ ନୁହେଁ, ସାମଗ୍ରିକ ଭାବେ ମଣିଷର ଅବକ୍ଷୟୀ ସ୍ୱରୂପର ବ୍ୟବଚ୍ଛେଦ ହିଁ ବକ୍ତବ୍ୟର ଧେୟ ହୁଏ । ହରିହରଙ୍କ ମାନବ ଦୃଷ୍ଟି କ୍ୱଚିତ୍ ଖଣ୍ଡିତ ବା ଏକଦେଶଦର୍ଶୀ । ସବୁରି ସାଥିରେ ଅଭିନୟ କରୁ କରୁ ସେ ଅନେକ ଚରିତ୍ରରେ ପଶି ନିଜକୁ ଖୋଜନ୍ତି, ପବନ ଭଳି ମଣିଷକୁ ଛୁଇଁ ଯା'ନ୍ତି ଓ ଜଗତର ପ୍ରତ୍ୟେକ ରୂପାୟନ କ୍ଷେତ୍ରରେ ହରିହରଙ୍କୁ ଯଦି କୁହାଯାଏ 'ସମ୍ପୂର୍ଣ୍ଣତା'ର କବି, ତେବେ ସତ୍ୟଠୁ କଦାପି ଏହା ଅଧିକ ଦୂରବର୍ତ୍ତୀ ହେବ ନାହିଁ ।

'ଲାଲକଢ଼ର ତପସ୍ୟା'ରେ ଯେପରି ହରିହରଙ୍କ କାବ୍ୟ-ପ୍ରତ୍ୟୟର ଦର୍ପଣ ଚୁନା ଚୁନା, ଦୃଶ୍ୟ ବିଭଙ୍ଗ; 'ଭିତିରି ଚନ୍ଦନ'ରେ ସେହିପରି ଦର୍ପଣର ରଙ୍ଗମଞ୍ଚ ଅଶ୍ରୁ ଓ ଏକକୀତ୍ୱରେ ସ୍ତବ୍ଧ, ଶୂନ୍ୟ ତା'ର ଅଭ୍ୟନ୍ତର, ପ୍ରତିଛବି ମୃତ । ଦୃଷ୍ଟି ଓ ଦୃଶ୍ୟରେ ଫରକ ସତ୍ତ୍ୱେ ଏହା ହିଁ ଉଭୟ ଗ୍ରନ୍ଥର ଗୋତ୍ର, ଯେଉଁଠି ସମାହିତ - ତପସ୍ୟା ଓ ବିଚଳିତ ତପସ୍ୟା ଭଙ୍ଗ ଏକ । 'ଭିତିରି ଚନ୍ଦନ' ତାପସୀ ବନହଂସୀ ଅର୍ଥାତ୍ ଉଡ଼ନ୍ତ ପକ୍ଷ/ ତଳେ ଆଶ୍ରିତ ସପ୍ତ-ସିନ୍ଧୁ ଓ ଭୂମା

ସୃଜନର ସ୍ପନ୍ଦନରେ ଆତ୍ମହରା– ଉତ୍ସବିତ - ଚେତନାର ଏପରି ଏକ ଉତ୍ତରିତ ସ୍ଥିତିରେ ଆଲୋଚ୍ୟ ଗ୍ରନ୍ଥର ଶକ୍ତି ଓ ସମ୍ଭାବନା ନିହିତ । ଶୀତ ଦିନିଆ କୁହୁଡ଼ିପରି କବି ହରିହରଙ୍କ ରହସ୍ୟାବୃତ୍ତ ଶୈଳୀର ଯାବତୀୟ ବ୍ୟାସକୂଟ ସତ୍ତ୍ୱେ 'ପାଣିଚବକା ଶୁଖିଯାଇଥିବା ମାଛର ଏକା ଏକା ବଞ୍ଚିରହିବା (ଅଥଚ ମାଛଟିଏ ପୃ.-୧୧୯)ର ବ୍ୟଥାକୁ ଠାବ କରିହୁଏ ଏକ ପ୍ରସ୍ତୁତ ପାଠକୀୟ ମାନସିକତାରେ । 'କଇଁସାରି ଲତାର ବାଇଗେଣି ବିମର୍ଷ ଫୁଲ' ପରି, 'ସୂର୍ଯ୍ୟାସ୍ତର ଅବସାଦ' ପରି ହରିହରଙ୍କ କବିତାରେ ଝଟକୁଥିବା କାଉ ବା ଚିଲ ଝାମ୍ପ (କାଳ ବା ମୃତ୍ୟୁ !)ରେ ମୁହୁଃର୍ମୁହୁଃ ତ୍ରସ୍ତ ('ଏଠି/ ସବୁ ଭୟଲାଗେ ବିକୃତ ମୁହଁରେ ଯେବେ/ ପ୍ରତିଦେହ ଛାୟାଙ୍କର କଙ୍କାଳ ଭେଟନ୍ତି/ ଅବା ନିଜେ ନିଜ ଅଭ୍ୟନ୍ତରୁ ନିଜକୁ ବେଢ଼ନ୍ତି' : ଛାୟା ପକ୍ଷୀ - ପୃ : ୧୦୩) ମାନବ (ମାଛ)ର ରୁଦ୍ର - କରୁଣ ଆବହ - ଗୀତ 'ଭିତିରି ଚନ୍ଦନ' ପଢ଼ିସାରିବାର ବହୁ ଦିନ ଯାଏ ଛାତିରେ ତଥାପି ରୁଗୁ ରୁଗୁ ହୁଏ । ସନ୍ତର୍ପଣ ଓ ସଖ୍ୟରେ ଅବାକ୍ ହୋଇ ଓଡ଼ିଆ କବିତାରେ ଇତିହାସ 'ସମୟର 'ଶିଳାଳିପି' ଲେଖୁଥିବା 'ନୀରବ/ ଶୃଙ୍ଗ' ହରିହରଙ୍କୁ କାଳାନ୍ତରରେ ଅବଶ୍ୟ ଚାହିଁ ରହିବ ।

ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ରାଜଧାନୀ କଲେଜ
ଭୁବନେଶ୍ୱର

('୨୦୦୦ ମସିହା ପୂଜା 'ଇସ୍ତାହାର'ରେ ପ୍ରକାଶିତ ।)



ଚାହାଁଣି ମଣ୍ଡପରୁ ଭିତରି ଚନ୍ଦନ

# ଚାହାଁଣି ମଣ୍ଡପ

## (୧)

*ବଂଶୀଧର ଷଡ଼ଙ୍ଗୀ*

'ଚାହାଁଣି ମଣ୍ଡପ' ଶ୍ରୀ ହରିହର ମିଶ୍ରଙ୍କର ଷଷ୍ଠ କବିତା ସଙ୍କଳନ ଏବଂ ଏଥିରେ ସର୍ବମୋଟ ୩୯ଟି କବିତା ସନ୍ନିବେଶିତ । ଏଥିପୂର୍ବରୁ 'ଶଙ୍ଖନାଭି' (୧୯୭୩) 'ଅକ୍ଷମ ଦେବତା' (୧୯୭୭) 'ଚନ୍ଦ୍ରବିମ୍ବ' (୧୯୭୮), 'ସୂକ୍ତ ଶତକ' (୧୯୭୯), 'ଲାଲ କଢ଼ର ତପସ୍ୟା' (୧୯୮୨) ଆଦି ପ୍ରକାଶ ଯାଇଛି । ବେଦରୁ ନିର୍ବାଚିତ ୧୦୦ଟି ସୂକ୍ତର ଅନୁ-କୃତି (Trans-Creation) ହେଉଛି 'ସୂକ୍ତ ଶତକ' । ସୂଚନା ପ୍ରଦତ୍ତ ହୋଇ ନ ଥିଲେ ଏହା ମୌଳିକ କୃତି ବୋଲି ପ୍ରତୀୟମାନ ହୋଇଥାଆନ୍ତା ।

ସଙ୍କଳନର ଶୀର୍ଷକ ତଥା ଏଥିରେ ସନ୍ନିବେଶିତ କବିତାରୁ ଜଣାଯାଏ ଯେ, ଏଇ 'ଚାହାଁଣି ମଣ୍ଡପ' ରୁ ମହାଲକ୍ଷ୍ମୀ ଦେଖିପାରନ୍ତି ଜଗନ୍ନାଥଙ୍କୁ । ଗୁଣ୍ଡିଚା ଯାତ୍ରା ସମୟରେ ସେ ବାହାରି ପଡ଼ିଥାଆନ୍ତି ସାଧାରଣ ଲୋକଙ୍କ ଭିଡ଼ ଭିତରକୁ (ଡେଇଁଗଲ ବାଇଶି ପାହାଚ/ ବନ୍ଧନ ଡେଇଁଗଲ ମେଘର ପ୍ରାଚୀର' – ଚାହାଁଣି ମଣ୍ଡପ– ପୃ. ୮୭) । ଏକଦା ଲକ୍ଷ୍ମୀ, ଶ୍ରୀୟା ଚାଣ୍ଡାଳୁଣୀ ଘରକୁ ଯାଇଥିଲେ ବୋଲି, ତାଙ୍କୁ ବଡ଼ ଦେଉଳ ମନା ହୋଇଥିଲା । ମାତ୍ର ଏଥର ସେମାନେ ଠିକ୍ ବୁଝି ପାରିବେ ; ଯେ

କେତେ ପ୍ରାଣ ସେ ଧୂଳିର କେତେ ଦୁଃଖ କେତେ ଆବେଦନ ଏହିଥର ବୁଝିଥିବ ଲକ୍ଷ୍ମୀର ସେ ଅଭିମାନ ଗୁରୁବାର ଯାତ୍ରା ଅଭିଯାନ (ପୃ– ୮୭) ଦୁଃଖିରଙ୍କୀ ପତିତର/ ଲିପା ପୋଛା ହୃଦୟ ବେଦିରେ (ପୃ– ୮୭) ଏବଂ 'କୋଳାକୋଳି ଆନନ୍ଦ ଭିତରେ' (ପୃ–୮୮) ଯେଉଁ ସ୍ୱର୍ଗୀୟ ଆନନ୍ଦ ତାହା କେବଳ ଲକ୍ଷ୍ମୀ ବୁଝୁଥିଲେ ଏବଂ ସେହି ଉପଲବ୍ଧି ଏବେ ଜଗନ୍ନାଥ ସ୍ୱୟଂ ହୃଦୟଙ୍ଗମ କରିବେ । ପକ୍ଷାନ୍ତରେ ମହାଲକ୍ଷ୍ମୀ ହିଁ ଏହି ମହାଭାବର ପ୍ରତୀକ । ଯେପରି–

ମୁଁ ଯେ ସ୍ୱୟଂ ପ୍ରସାରିତ
ଯେଉଁଠାରେ ତମେ ଥାଅ
ହସ କାନ୍ଦ ଦୁନିଆରେ
କାଠିକୁଟା ସରଗରେ– (ପୃ- ୮୮)

ତେଣୁ ସେ ବଡ଼ ଦେଉଳର ଦ୍ୱାର ରୁଦ୍ଧ କରିନାହାଁନ୍ତି । ଅହଙ୍କାରର ମେଘନାଦ ପାଚେରୀ ଡେଇଁ ଦେବତା ଓହ୍ଲେଇ ଯାଇଛି ଜନତା ଭିତରକୁ । ତେଣୁ-

ତୁମରି ବୁଝିବା ପାଇଁ
କାଳେ କାଳେ କ୍ଷମା ଦେଲି
ତୁମରି ଆସିବା ପାଇଁ
କଂସାର କବାଟ ସବୁ
ଖୋଲି ଦେଇଗଲି । (ପୃ- ୮୮)

'ସୂକ୍ତ ଶତକ'ରେ ତ୍ୟାଗ, ସମ୍ବେଦନଶୀଳତା, ଅନ୍ୟ ପାଇଁ ନିଜକୁ ଉତ୍ସର୍ଗ କରିବା ଆଦି ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ସଙ୍କୀର୍ଣ୍ଣତାରୁ ମୁକ୍ତ ହୋଇ କ୍ରମଶଃ ଉର୍ଦ୍ଧ୍ୱତମ ସ୍ତରକୁ ଉନ୍ନୀତହେବା ପାଇଁ ନିର୍ଦ୍ଦେଶ ଦିଆ ଯାଇଛି । ଭାରତୀୟ ସଂସ୍କୃତିର ଏହା ହିଁ ମୂଳକଥା । ଅନ୍ୟ ପକ୍ଷରେ ଉତ୍କଳୀୟ ପରମ୍ପରାରେ ଜଗନ୍ନାଥ ସଂସ୍କୃତି ଠିକ୍ ତାହାକୁ ସମର୍ଥନ କରୁଥିଲେ ହେଁ, ଶୈବ, ଶାକ୍ତ, ଗାଣପତ୍ୟ, ବୌଦ୍ଧ ଆଦି ସବୁର ସମନ୍ୱୟ କରିପାରିଛି । ଫଳରେ 'ଜଗନ୍ନାଥ,' 'ଜଗା' ରେ ପରିଣତ ହୋଇଯାଇଛି । ଭକ୍ତ ତାକୁ ନିଜ ଲୋକ ବୋଲି ଧରି ନେଇଛି । କେତେବେଳେ ତାକୁ କୁଣ୍ଢେଇ ପକାଉଛି ତ କେତେବେଳେ ଗାଳି ଦେଉଛି । ମଝିରେ ବାଧା ନାହିଁ, ପାଚେରୀ ନାହିଁ,– ବ୍ୟବଧାନ ନାହିଁ ' ଆତ୍ମୀୟତା ହିଁ ଏଠି ବଡ଼ କଥା ଏବଂ ମୁଖ୍ୟ ଅନୁଭବ । ବ୍ୟବଧାନ ଦୂରକରି ଆତ୍ମୀୟତା ପ୍ରତିଷ୍ଠା କରିବା ହିଁ ଶ୍ରୀ ହରିହର ମିଶ୍ରଙ୍କର ମୁଖ୍ୟ କାବ୍ୟସ୍ୱର । ଏହା 'ଶଙ୍ଖନାଭି' ରୁ 'ଚାହାଣି ମଣ୍ଡପ' ପର୍ଯ୍ୟନ୍ତ ସମ୍ପ୍ରସାରିତ ।

ଜୀବନର ଜଟିଳ ଅନୁଭୂତି, ପ୍ରେମ ପ୍ରକୃତି, ମୃତ୍ୟୁ ଏବଂ ସମୟ ସଚେତନତା ସବୁ ମିଳିତ ହୋଇ ଶ୍ରୀ ମିଶ୍ରଙ୍କ କବିତା ସବୁକୁ ରହସ୍ୟମୟ ଅନୁଭବ ପ୍ରଦାନ କରିଛି । ଯେପରି– 'ସେ ଥିବ ନିରୁତ୍ତର/ ତା' ଓଠର ହୋମାଗ୍ନିରେ/ ତରଳାଇ ରକ୍ତ ମାଂସ ମୋର/ ମୁଁ କହିବି/ ମିଳିତ ନିଃଶ୍ୱାସେ ଆମ/ ପରିପୂର୍ଣ୍ଣ ଶୂନ୍ୟ । ଆସ ଧୀରେ ଅନନ୍ତ ବକ୍ଷରେ/ ଦେବୀ ତମେ

ସମ୍ଭୋଗ ମୁଦ୍ରାରେ/ ମୁଁ ପୁରୁଷ ବିକ୍ଷତ ମୋ ଅହଙ୍କାର/ସୃଜନର ଗାରିମା ସକଳ/ ତୁମ ଠାରେ ହେଉ ଆଜି ସମର୍ପିତ' (ଦିଅ ମତେ ଶେଷ ଆଲିଙ୍ଗନ– ପୃ-୪୫) । ପୁନଶ୍ଚ ପୃଷ୍ଠ ଭୂମିରେ ପୁରୁଷୋତ୍ତମ ପୁରୀର ଚଳଣି ଓ ସାଂସ୍କୃତିକ ଚେତନା କାବ୍ୟ ଅନୁଭୂତିକୁ ବଳିଷ୍ଠ କରିବା ସଙ୍ଗେ ସଙ୍ଗେ କାବ୍ୟ– ଗଢ଼ଣକୁ ସୃଷ୍ଟି କରିଛି । ଫଳରେ ବ୍ୟକ୍ତି ଚେତନା ଗଣ ଚେତନାରେ ପରିଣତ ହୋଇପଡ଼ିଛି । ଯେମିତି–

ବ୍ୟକ୍ତିର ନୁହେଁ, ଜାତିର ସେ ଗୌରବ
ପ୍ରସାରିତ ପ୍ରୁରୁଷାକାର
x x x x
ଫୂର୍ତ୍ତିରେ, ମୁକ୍ତିରେ ଅଜାଡ଼ି ହେଇ
ପଡୁଥିବା ଯୌବନ
ଆଲଟ ଚାମର ଭଳି, ଫୁଲଟାହିଆ ଭଳି

(ଗଣବ୍ରହ୍ମ– ପୃ- ୯୧)

ଏହି ପ୍ରସଙ୍ଗରେ 'ଦଶଦିଗ', 'ପ୍ରତ୍ୟାଦେଶ', 'ଜଙ୍ଗଲ କଟାଳି ଓ ଜଙ୍ଗଲ ରକ୍ଷକ', 'ଆଉ ଏକ ଜନ୍ମ ଅପେକ୍ଷାରେ', 'ଶିଶୁର ଗ୍ରୀଷ୍ମକାଳ', 'ଯୁବକର ଶୁଭରାତ୍ରି', 'ସକାଳ ଓ ବୁଢ଼ାଲୋକ' ଏବଂ 'ସମ୍ଭାବନା' ଆଦି କବିତା ସମୂହକୁ ଲକ୍ଷ୍ୟ କରାଯାଇପାରେ ।

'ଜଗନ୍ନାଥ' କବି ସତ୍ତାରୁ ଭିନ୍ନ ନୁହଁନ୍ତି, ଏହା କାବ୍ୟ ପରିବେଶକୁ ବହୁ ସ୍ଥଳରେ ବୈଚିତ୍ର୍ୟ ଆଣିଦେଇଛି । ଯେମିତି– 'ଯଦି ପାର ହାତ ଦୁଇ ମୋର କାଟିଦେଇ, କର ଜଗନ୍ନାଥ... ଗୋଟିଏ ହାତମୋର ଆଙ୍ଗୁଳି ନିର୍ଦ୍ଦେଶ କରେ ଅନ୍ଧାରର ଅଜସ୍ର ତାରାଙ୍କୁ ସୂର୍ଯ୍ୟଠାରୁ ଦୂର ଏକ ବୃହତ୍ତର ଆଲୋକ ଚକ୍ରକୁ ଅନ୍ୟ ହାତଟି ମୋର ପଙ୍ଗୁ... ସ୍ନେହଁ ଜୁଡୁବୁଡୁ'

(ମାୟାଚକ୍ର– ପୃ.- ୯୫)

ବିଭିନ୍ନ ଚିତ୍ରକଳ୍ପ ମାଧ୍ୟମରେ ସ୍ମୃତି, ସମ୍ପର୍କ, ପ୍ରେମ କାବ୍ୟ ଅଭିବୃଦ୍ଧିରେ ସହାୟତା କରିଛି । ଉଦାହରଣ ସ୍ୱରୂପ କେତେକ ଧାଡ଼ି ଉଦ୍ଧାର କରାଯାଇପାରେ ।

(୧) ମେଘୁଆ ସକାଳକୁ କ୍ଷୀରରେ ଧୋଇ
ଖରାରେ ମାଜି ଦର୍ପଣ କରିଦିଏ
ଆମର ପିଲାଦିନ (ପ୍ରିୟତମା- ପୃ- ୯)

(୨) ବର୍ଷା ଲାଗି ରହିବ
କୃଷ୍ଣ-ପକ୍ଷର ଶାଢ଼ୀରେ
(ନୀରବତା ଓ ଅନ୍ଧକାର ପୃ-୭)
କିମ୍ବା
ଡଙ୍ଗା ଉପରେ ଶିଶୁଟିଏ
ବେଲୁନ୍ ଉଡ଼ାଏ
ସମୁଦ୍ରର କ୍ଷୟିଷ୍ଣୁ ପବନରେ
ଭଙ୍ଗା କାଚର ଚାରାଗଛଟି ଭଳି
ଉହୁଁକିପଡ଼ି ଚୁପ୍ ଚୁପ୍
ରାଣୀ କଙ୍କିଟିର ଲାଞ୍ଜକୁ
ବାନ୍ଧିଦିଏ ସମ୍ପର୍କର ଲମ୍ବା ସୂତାରେ
(କାଠିକୁଟାର ସ୍ୱର୍ଗ- ପୃ. - ୨୫)

କିମ୍ବା

ମୋର ଅନିଶ୍ଚିତ କ୍ଷମତା ନେ...
ମୁଁ ଗୁଡ଼ି ଉଡ଼ାଇ ଦେଇଛି ଏଇଠୁ
ପାରିବୁ ତ କାଟି ଦେଇ ପାରୁ
ସମ୍ପର୍କର ଡୋର କାଟିବା
ତୋର ଜିତାପଟ ବୋଲି ଧରି ନେଇଛୁ
(ମାୟା ସାମ୍ରାଜ୍ୟ- ପୃ.- ୧୩)

(୩) ଆମ ସତ୍ତାର ପୃଥିବୀକୁ ନେଇ
ପହଞ୍ଚି ଗଲେ ସେ ଅପହଞ୍ଚ ଭୂଇଁ
ଆକାଶ ଭରି ଦେବ ଆଲୋକରେ
ଆମ ସ୍ପର୍ଶ, ଆମରି ପ୍ରେମ
(ଦୁଷ୍ଟ ତାରକା- ପୃ.- ୨୧)

କାବ୍ୟ ଗଢ଼ଣରେ 'ମିଥ୍' ପ୍ରୟୋଗ ସାମ୍ପ୍ରତିକ କବିତାର ଅନ୍ୟତମ ବୈଶିଷ୍ଟ୍ୟ ଏବଂ ଶ୍ରୀ ମିଶ୍ରଙ୍କ କବିତାରେ 'ମିଥ୍' ଜଗନ୍ନାଥ ଏବଂ ତାଙ୍କ ସମ୍ପର୍କୀୟ ଭିନ୍ନ ଭିନ୍ନ ପ୍ରସଙ୍ଗକୁ ନେଇ ଅନ୍ତରଙ୍ଗ ଓ ବଳିଷ୍ଠ ଭାବେ ପ୍ରକାଶିତ । ଯେପରି- 'ଅଶ୍ୱାରୋହୀ ଗାଲମାଧବ ଜାଣିପାରେନା ବିଲୁପ୍ତ ନୀଳଚକ୍ରର ଚୂଡ଼ାଗ୍ର/ ନିମଜ୍ଜିତ କଳ୍ପବଟ ବିସ୍ମୃତ ବୈକୁଣ୍ଠ/ ଦୁସ୍ତର ଇଥର ଡେଇଁ ନିର୍ବଂଶ ଇନ୍ଦ୍ରଦ୍ୟୁମ୍ନ (ସ୍ୱାଧୀନ ଜୀବନ– ପୃ. - ୪୬) କିମ୍ବା 'ସତେ ଅବା ନୀଳଚକ୍ର ଡାକିଡ଼ାକି ଆସେ' (କବିତା– ୧ - ପୃ. - ୮୯) କିମ୍ବା 'ହେ ସମ୍ରାଟ, ସ୍ୱେଚ୍ଛାଚାରୀ ପ୍ରଭୁ/ ନିଦ୍ରାଭଙ୍ଗ ସ୍ୱଇଚ୍ଛାରେ ହେଉ/ ସ୍ୱପ୍ନରେ ପହଡ଼ ପଡୁ (କବିତା–୨ - ପୃ.- ୯୦) ।

ମୋଟା ମୋଟି କହିବାକୁ ଗଲେ ଅଧିକାଂଶ କବିତାର କାବ୍ୟ- ଅନୁଭୂତି ପୁରୀ, ସମୁଦ୍ର, ଜଗନ୍ନାଥ, ସୁଭଦ୍ରା ଅର୍ଥାତ୍ ପୁରୀର ସାଂସ୍କୃତିକ ପରିବେଶ ସମ୍ପର୍କିତ । 'ଶୂନ୍ୟ ସିଂହାସନ', 'ସାହାଣ ମେଲା' ଆଦି ବହୁ କବିତାରେ ଏହା ଲକ୍ଷ୍ୟ କରାଯାଇପାରେ । କାବ୍ୟ ସଙ୍ଗଠନରେ ଅନେକତ୍ର ଚିତ୍ରକଳ୍ପ ଓ ମିଥ୍‌ର ଅଦ୍ଭୁତ ସଂଯୋଗ ଘଟିଛି ଏବଂ ପ୍ରଥମ ସ୍ତରରେ ପ୍ରୟୋଗ ହୋଇ ଥିବା ମିଥ୍ କବିତାର ପରିଣତି ଆଡ଼କୁ ଜୀବନର ଜଟିଳତାକୁ ପ୍ରକାଶ କରିବାକୁ ଯାଇ ଯନ୍ତ୍ରଣା ଓ ଅସ୍ଥିରତା ସୃଷ୍ଟି କରିଛି । ଉଦାହରଣ ସ୍ୱରୂପ, 'ମୋହିନୀ ସେ ତ୍ରୈଲୋକ୍ୟ ମୋହିନୀ' କବିତା କୁ ଗ୍ରହଣ କରାଯାଇ—ପାରେ । କବିତାର ଆରମ୍ଭ– 'ମୋହନୀ ତ ବିଜୁଳି କନ୍ୟା- ସୁଭଦ୍ରା/ ଯେତିକି କଳା ତା' ଠାରେ/ ସେତିକି ଧଳା/ ମୋହିନୀ କି ଅଧିଷ୍ଠାତ୍ରୀ/ ରାଜବଂଶ ଇତିହାସେ/ କଳଙ୍କ ନା କଜ୍ଜାଳ/ ବାରିହୁଏ ନାହିଁ/ ଯାହାର ମହିମା ରାଜପଥେ ଜ୍ୟୋସ୍ନା ଭଳି/ ମନ୍ଦିରର ଗମ୍ଭିରାରେ ନାହିଁ ।' ପୁନଶ୍ଚ 'ରାଜାଙ୍କର ହସ ହସ ମୁହଁ/ ମୁହଁ ନାହିଁ... ରୁଧିରାକ୍ତ/ ରତି, ପ୍ରୀତି, ସମ୍ଭୋଗ ବାସର/ ପାଟ ଶାଢ଼ୀ, ଜଳି ଯାଏ ପ୍ରଦୀପରେ' 'ହଠାତ୍ ଅନ୍ଧାର ସବୁ ଉଆଁସ ଅନ୍ଧାର' । ପରିଣତିରେ 'ମୋହିନୀ ନୂଆ ଧନୀକ ଗୋଷ୍ଠୀକୁ/ ବରବାଦ କରେ ଲୋହିତ ଜଙ୍ଘରେ/ ମୋହିନୀ ନିୟତି ସାଜେ/ ଅଶ୍ଳୀଳ ଶାନ୍ତି ଦିଏ ଭ୍ରମରଙ୍କ ସଢ଼ା ଦେହ/ ତା' ଦେହର/କାଚକେନ୍ଦୁ ପୋଖରୀରେ ଭାସେ ।''

ସ୍ନେହ ଶ୍ରଦ୍ଧା, ପ୍ରେମ... ସହାନୁଭୂତି ଆଦି ମଣିଷର ସୂକ୍ଷ୍ମ ଭାବ ସମୂହ ଚିରସ୍ଥାୟୀ । ମୃତ୍ୟୁ, ସତ୍ୟ । ମାତ୍ର ଏଇ ସୂକ୍ଷ୍ମ ଭାବ ସମୂହ ହି ମୃତ୍ୟୁକୁ ଅତିକ୍ରମ କରି ଯିବାପାଇଁ ସକ୍ଷମ । ସେଇଥିପାଇଁ ଭାରତୀୟ ସଂସ୍କୃତିରେ 'ସର୍ବେ ଭଦ୍ରାଣି ପଶ୍ୟନ୍ତୁ' ବା 'ସର୍ବେସନ୍ତୁ ନିରାମୟାଃ' ବୋଲି କୁହାଯାଇଛି । ପୁନଶ୍ଚ ଜଗନ୍ନାଥ ସଂସ୍କୃତି ହିଁ ଠିକ୍ ଏଇ କଥା କୁହେ । ଜଗନ୍ନାଥ କେବଳ ମଣିଷର ନୁହନ୍ତି, ସମସ୍ତ ଜଗତର ପ୍ରଭୁ । ଶ୍ରୀ ମିଶ୍ରଙ୍କ କାବ୍ୟସ୍ୱରର ଏହା ହିଁ କେନ୍ଦ୍ର ବିନ୍ଦୁ । ମୃତ୍ୟୁକୁ ଅତିକ୍ରମ କରି, କବି ସେଥିପାଇଁ ଇଚ୍ଛାକରେ ପୁଣି ଫେରି ଆସିବାକୁ ଏଇ ସୁନ୍ଦର ପୃଥିବୀକୁ ଯେମିତି–

ମତେ ଫେରି ଆସିବାକୁ ହେବ ହୁଏ ତ
ନିଶ୍ଚିତ ମୋ ଦେହର ଅଭ୍ୟନ୍ତରକୁ
ସମସ୍ତ ଆଲୋକ ଓ ଅନ୍ଧକାରକୁ
ଦୁଇ ସୀମାନ୍ତରେ ରଖି
ମୁଁ ଯିବାକୁ ଦେବି ସମୟକୁ
ଅବା ନିଜେ ବୋହିଯିବି
ଯେମିତି ନୀରବତାର ଧାର ଧାର ନଈ
ନିସ୍ପନ୍ଦ ଦେହର ଫିକା ରକ୍ତରେ
ଭାସ୍ୱର ସାମ୍ରାଜ୍ୟକୁ ଭସେଇ ଦେବି
ଅନ୍ୟ କେଉଁଠିକି ଆଉ କେଉଁ ଜ୍ୟୋତି ନେଇ
ଏକତ୍ର ଉତ୍ସର୍ଗିତ ହେବା ଯାଏଁ
ଆଉ କେଉଁ ଉର୍ବରତା ପାଇଁ
ଏଇ ତ ଯିବି ଆଉ ଫେରିବି ।
(ସନ୍ଧ୍ୟାକାଳ– ପୃ.- ୯୭)
କିମ୍ବା
ଯେଉଁଠି ଥାଏ ନିସ୍ତେଜ ଦେହ
ବିଚ୍ଛିନ୍ନ ଆଖି
ଭୀତତ୍ରସ୍ତ କୋଠରୀ ଅକ୍ଷମ ଦେହଟିର
ଥାଏ କ'ଣ କାହାପାଇଁ ସବୁଦିନ
କି ଶବ୍ଦ ଏ କିରଣ ଛଡ଼ା ମାଦଳର ।

(ଅପରାଧ– ପୃ.- ୧୦)

ପ୍ରକୃତିର ଅବବୋଧ, ପ୍ରକାଶ ଭଙ୍ଗୀରେ ସ୍ୱାଭାବିକତା ଓ କାବ୍ୟ ଆବେଗରେ ଗଭୀରତା; କାବ୍ୟାସ୍ୱାଦ ନିମିତ୍ତ ବ୍ୟାପକତର ଉପଲବ୍ଧି ଆଣି ଦେଇଛି । କାବ୍ୟ ସଙ୍ଗଠନରେ ବିଭିନ୍ନ କିମ୍ବଦନ୍ତୀ ବା ପୁରାଣ ସୂଚନା ସହିତ ଅତୀନ୍ଦ୍ରିୟ ରହସ୍ୟମୟତା କାବ୍ୟାନୁଭବକୁ ଅନ୍ତରଙ୍ଗ କରି ଗଢ଼ି ତୋଳିଛି । ଯେପରି–

ଫୁଲ ତ ସମସ୍ତଙ୍କର
ମୁଁ ତା'ର ମାଳାକାର
ସବୁଠି ସମାନ ହସ
ରୁଚି ଭିନ୍ନ ଭିନ୍ନ
ମୁଁ ତା'ର ଗଢ଼େ ଯୋଗସୂତ୍ର

(ଫୁଟିବାର ସ୍ୱପ୍ନ– ପୃ.-୧)

କିମ୍ୱା

ଏକା ଏକା ଅନନ୍ତ ସମୟରେ
ଅକ୍ଷତ ଯୌବନରେ
ଏକାକୀ ଇନ୍ଦ୍ରଦ୍ୟୁମ୍ନ ଭଳି
ମୁଁ ଏଠୁ ଚାଲିଯାଏ, ଫେରି ଆସେ
ପ୍ରଶ୍ନ କରେ ଅନ୍ତହୀନ ପ୍ରଶ୍ନ
ଯାହା ସ୍ମୃତିରେ ନଥାଏ
ଛାଣୁ ପାଲଟି ଯାଇଥାଏ

(ଇନ୍ଦ୍ରଦ୍ୟୁମ୍ନ– ପୃ.- ୭୩)

ଶ୍ରୀ ମିଶ୍ର ''ଅନାମ'' ଆନ୍ଦୋଳନର ଅନ୍ୟତମ ମୁଖ୍ୟ ପ୍ରବକ୍ତା । ସେ ତାଙ୍କର 'ଅନାମ' କବିତା ଏବଂ 'ଚାହାଁଣି ମଣ୍ଡପ' ସଙ୍କଳନରେ 'କବିତାକୁ ଚଳେଇବାକୁ ହେବ ବଡ଼ ଦାଣ୍ଡରେ' ବୋଲି ଘୋଷଣା କରିଛନ୍ତି । ସେ କହିଛନ୍ତି- 'କବିତାକୁ ଚଲାଇବାକୁ ହେବ ବଡ଼ ଦାଣ୍ଡରେ/ ଏକଥା ବିଶ୍ୱାସ ନଥିଲା ଏ ଯାଏଁ/ ବହୁ ପ୍ରାଚୀନ ଏ ଗମନା ଗମନ/ ନା ଅଛି ମାଧ୍ୟମ ନା ଅଛି ବାହନ/ ଅପୂର୍ବ ଆକର୍ଷଣ ହେତୁ/ ଆପେ କିଏ ଗଢ଼ି ଦିଏ ସେତୁ.../ କୋଉ ଅପୂରୁବ କଥା ଏ ଯେ/ ଶରଧା ବାଲିରୁ ସିଧା ସ୍ୱର୍ଗଦ୍ୱାର/ ବାଟରେ ଏ ଶତାବ୍ଦୀର ବ୍ୟଗ୍ର ସିଂହ ଦ୍ୱାର' । ଶ୍ରୀ ମିଶ୍ର ତାଙ୍କର କବିତା ମାଧ୍ୟମରେ କବିସତ୍ତାକୁ ଗଣଚେତନା ଭିତରେ ମିଶେଇ ଦେବାକୁ ପ୍ରଚେଷ୍ଟା କରିଛନ୍ତି ଏବଂ ସଫଳ ହୋଇଛନ୍ତି ମଧ୍ୟ ।

କବିତାର 'ନୂଆରୂପ', 'ନୂତନ ଆକୃତି', 'ନବୀନ ବିଗ୍ରହ' ତଥା 'ନବ କଳେବର'ର କାମନା କରିଛନ୍ତି । (''ନୂତନର ଜନ୍ମ ନାହିଁ ନୀରବିତ ବନ୍ଧ୍ୟା ଅନୁରାଗ/ ଆଶାହୀନ ଭବିଷ୍ୟତ ବ୍ୟର୍ଥ ଅନ୍ଧକାର/ ନିରର୍ଥକ ସୃଷ୍ଟିର ଶୂନ୍ୟତା କେବଳ/ ପୁନଶ୍ଚ କାମନାଟିଏ.... ରୂପ ବା

ଆକୃତିଟିଏ/ ଭାବର ବିଗ୍ରହ ନିଏ ନବ କଳେବର'- କେଉଁଠାରେ ଶବ୍ଦ ସବୁ ନିଏ ଜୀବନ୍ୟାସ- (ପୃ- ୯୮)।

ପରିଶେଷରେ ଏତିକି କୁହାଯାଇପାରେ ଯେ, ଶ୍ରୀ ମିଶ୍ରଙ୍କର କାବ୍ୟନିଷ୍ଠା, ସ୍ୱକୀୟ ଦୃଷ୍ଟିଭଙ୍ଗୀ ଓ ନିଜସ୍ୱ କାବ୍ୟ ଶୈଳୀର ପରିଣତ ପରିପ୍ରକାଶ ଘଟିଛି 'ଚାହାଁଣି ମଣ୍ଡପ' ରେ । ସାମ୍ପ୍ରତିକ ଓଡ଼ିଆ କବିତାର ଅଭିବୃଦ୍ଧିରେ ଏହି ସଙ୍କଳନଟି ଏକ ନୂତନ ସଂଯୋଗ ଏବଂ ଏହା ନିଶ୍ଚିତ ଭାବେ ଯେ କାବ୍ୟ ରସିକ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିବ- ଏକଥା ନିଃସନ୍ଦେହରେ, କୁହାଯାଇପାରେ ।

('ସମାବେଶ'ରେ ପ୍ରକାଶିତ)



# ଭିତିରି ଚନ୍ଦନ

## (୨)

କବିତା ଯୁଗେ ଯୁଗେ ରହସ୍ୟମୟ ଏବଂ ଏହି ରହସ୍ୟମୟତାର ପୃଷ୍ଠଭୂମି ହେଉଛି ଆଧ୍ୟାତ୍ମିକ ଚେତନା । ଉତ୍କଳୀୟ ପରମ୍ପରାରେ ଜଗନ୍ନାଥ ଓଡ଼ିଆ ଜାତିର ଐତିହ୍ୟ ଓ ସଂସ୍କୃତିର ପ୍ରତୀକ । ବାହ୍ୟ ଦୃଷ୍ଟିରେ ଓଡ଼ିଆ ଜାତିର ଏହି ଦାରୁଦେବତା ଅସମ୍ପୂର୍ଣ୍ଣ ଅଥଚ ଅନ୍ତର୍ଦୃଷ୍ଟିରେ ସେ ସ୍ୱୟଂସମ୍ପୂର୍ଣ୍ଣ । ପୁନଶ୍ଚ ୯. ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ, ବୌଦ୍ଧ ଆଦି ସବୁ ଧର୍ମ ଧାରଣାର ସମନ୍ୱୟ । ତେଣୁ 'ଏହି ସମନ୍ୱୟତାର ଚେତନା ହେଉଛି ଓଡ଼ିଆର ଚେତନା, ଉଦାରତାର ଚେତନା ଏବଂ ଏହି ଉଦାର ବ୍ୟାପକତା ହେଉଛି ହରିହର ମିଶ୍ରଙ୍କ କବିତା' ବୋଲି କବି ଆଲୋଚକ ଶ୍ରୀ ସୌରୀନ୍ଦ୍ର ବାରିକ 'ସ୍ୱପ୍ନ ବିନିମୟ ସତ୍ୟ ବିନିମୟ' (ପ୍ରତିବେଶୀ)ରେ ଯଥାର୍ଥ ଭାବେ ସୂଚିତ କରିଛନ୍ତି ।

ହରିହରଙ୍କ 'ଶଙ୍ଖନାଭି' (୧୯୭୩),'ଅକ୍ଷମ ଦେବତା' (୧୯୭୭), 'ଚନ୍ଦ୍ର ବିମ୍ବ' (୧୯୭୮), 'ସୂକ୍ତ ଶତକ' (୧୯୭୯), 'ଲାଲ କଢ଼ର ତପସ୍ୟା' (୧୯୮୨), 'ଚାହାଁଣି ମଣ୍ଡପ' (୧୯୮୮), 'ସ୍ୱପ୍ନ ବିନିମୟ' (୧୯୯୨) ଏବଂ ସଦ୍ୟ ପ୍ରକାଶିତ 'ଭିତିରି ଚନ୍ଦନ' (୧୯୯୪) ଆଦି ପ୍ରତ୍ୟେକ କାବ୍ୟ ଗ୍ରନ୍ଥର ମୁଖ୍ୟ ଅନୁଭବ ହେଉଛି ସମ୍ବେଦନଶୀଳତା ଓ ଆତ୍ମୀୟତା । ବିଶ୍ୱ ଭିତରେ ନିଜକୁ ଓ ନିଜ ଭିତରେ ବିଶ୍ୱକୁ ଦେଖିବା ସହିତ ରହସ୍ୟମୟ ଅନୁଭୂତିର ସମ୍ମିଶ୍ରଣ ତାଙ୍କର କାବ୍ୟଗୁଣକୁ ଦିବ୍ୟଦୃଷ୍ଟି ସମ୍ପନ୍ନ କରିଛି । ତେଣୁ ସୌରୀନ୍ଦ୍ରବାବୁ ସ୍ପଷ୍ଟ ଭାବେ କହିଛନ୍ତି– 'ସ୍ୱପ୍ନ ବାସ୍ତବ, ରହସ୍ୟ ଓ ସତ୍ୟ ଭିତରେ ବିନିମୟ ହିଁ ତାଙ୍କ କବିତା ।'

'ଭିତିରି ଚନ୍ଦନ' କାବ୍ୟଗ୍ରନ୍ଥ ସମ୍ପର୍କରେ ଆଲୋଚନା କଲାବେଳେ 'ଶଙ୍ଖନାଭି', 'ଚାହାଁଣି ମଣ୍ଡପ'ର ନାମକରଣ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କୁ ସ୍ୱତଃ ମନେ ପକେଇଦିଏ । ଚନ୍ଦନ ଯାତ୍ରା ବେଳେ ବାହାରେ ଯେପରି ଚଳନ୍ତି ପ୍ରତିମାଙ୍କ ଚନ୍ଦନ ଯାତ୍ରା ଚାଲିଥାଏ, ଜଗନ୍ନାଥଙ୍କ ଔପଚାରିକତାର ପାଳନ ହେବାପରି ଅନ୍ତରାଳରେ ମଧ୍ୟ ସେହିପରି ଘଟଣା ଘଟିଥାଏ । ରତ୍ନ ସିଂହାସନ ଥିଲେ ମଧ୍ୟ ଶୂନ୍ୟ ସିଂହାସନର ପରିକଳ୍ପନାକୁ ଏହାର ଏକ ପ୍ରକୃଷ୍ଟ ଉଦାହରଣ ଭାବେ ଗ୍ରହଣ କରାଯାଇପାରେ ।

ଜଗନ୍ନାଥଙ୍କ ସେବାପଦ୍ଧତି ଲକ୍ଷ୍ୟ କଲେ ଜଣାଯାଏ ଯେ, ସେ ସେବକ ଠାରୁ ସ୍ୱତନ୍ତ୍ର ଏବଂ ଦେବତା ଆସନରେ ଆସୀନ; କିନ୍ତୁ ପ୍ରତ୍ୟେକ ସେମାନଙ୍କର ଦୈନନ୍ଦିନ କାର୍ଯ୍ୟକଳାପରେ ଜଗନ୍ନାଥଙ୍କୁ ଠାକୁର ମନେ ନ କରି ଆତ୍ମୀୟ ବୋଲି ଭାବନ୍ତି । ତାଙ୍କ ସହିତ ପରମ ଆତ୍ମୀୟ ଭାବେ 'ତୁ' ସମ୍ବୋଧନ କରି କଥାବାର୍ତ୍ତା କରିଥାନ୍ତି । ଏଠାରେ ପ୍ରେମ ହିଁ ଆତ୍ମା ଏବଂ ଏଥି ସହିତ ଆଧ୍ୟାତ୍ମିକତାର ମିଳନରୁ ହିଁ ରହସ୍ୟମୟତାର ଆରମ୍ଭ । ଯେମିତି—

'ମୋ ଛାତିରେ ହାତ ରଖି କେମିତି କରିବି ନାହିଁ
ଏତେ ଗ୍ରୀଷ୍ମ ଅଣସର ତମ ସାଙ୍ଗେ ମୋ' ଭିତରେ କଟାଇଲା ପରେ ।'

(ଭିତିରି ଚନ୍ଦନ—ପୃ.୪)

କିମ୍ବା,

'ଲୁହରେ ମାଜଣା କରି, ପାପରେ ଆବୃତ୍ତ କରି ରକ୍ତ ଅବା କୃଷ୍ଣ ବସ୍ତ୍ର
ମୁଁ ନିଜେ ହିଁ ପାଲଟିଯାଇଛି ମୂର୍ତ୍ତି ଏକ କାଠ ପାଷାଣର ।'

(ଭିତିରି ଚନ୍ଦନ—ପୃ-୧)

କବି ଈଶ୍ୱରଙ୍କର ରହସ୍ୟମୟ ସ୍ଥିତି ତଥା ଉପଲବ୍‌ଧିକୁ ପ୍ରକାଶ କରିବାକୁ ଯାଇ ନିଜସ୍ୱ ଢଙ୍ଗରେ 'ଭିତରି ଚନ୍ଦନ' କବିତାର ପ୍ରଥମ ଧାଡ଼ିରେ କହିଚନ୍ତି—'ଦୁଃଖ ହିଁ ଦୁଃଖ... ପଥର ହିଁ ପଥର... ଈଶ୍ୱର ହିଁ ଈଶ୍ୱର' । 'ଦୁଃଖ' ଓ 'ଈଶ୍ୱରଙ୍କ ସମ୍ପର୍କରେ... ଆଉ ଅଧିକ କ'ଣ ବା କୁହାଯାଇପାରେ । କବିଙ୍କ ଭାଷାରେ ଦୁଃଖରୁ ହିଁ ମଣିଷ ଆସିଛି । (ମୁଁ ଫେରିଯିବି କାନ୍ଦିବାର ଜଗତକୁ ସମ୍ଭ୍ରମତାରେ/ଯେଉଁଠାକୁ ଆସିଥିଲି ଥରେ'—('ନୃତ୍ୟ'—ପୃ-୭) ଏବଂ ଈଶ୍ୱର ଥରେ ହସିଦେଲେ ଲକ୍ଷ ଲକ୍ଷ ଲୋକ ନିଶ୍ଚିହ୍ନ ହୋଇଯାଆନ୍ତି ('କିପରି ହସିଦେଲ ଯେ/ଶୂନ୍ୟ କାଛ ଉପରେ ନାଚି ଉଠିଲା/ସତର୍କ ସମୟ/ନିଶ୍ଚିହ୍ନ ହୋଇଗଲେ ଉତ୍ସାହରେ/ପତାକା ହଲାଉଥିବା ଲକ୍ଷ ଲକ୍ଷ ଲୋକ/ସେ ହସରେ'—('ନୃତ୍ୟ'—ପୃ-୪୭) । ପୁନଶ୍ଚ 'ଅସଂଖ୍ୟ ଲୋମଶ ପାପର ମସୃଣ ଶଯ୍ୟାରେ ନିଦ ନାହିଁ । ଅଦ୍ୟାପି ଆଖିରେ ଅବା ଚକାଡ଼ୋଳା ।' (ପୃ-୪), 'ପ୍ରତିକୃତି ମିଛ ହୁଏ ଯେତେଥର ଆଙ୍କେ ତୁମ ରୂପ (ପୃ-୪), 'ଘଟରୁ ଘଟକୁ ଡେଇଁ ହେ କପଟୀ ଧୂର୍ତ୍ତ ଯାଦୁକର ।' (ପୃ-୩) ଏବଂ 'ତମରି ଆକୃତି କ'ଣ ଶୂନ୍ୟାକାର... ନ ଥିବାରେ ଥିବାର ପ୍ରତ୍ୟୟ ତମେ' (ପୃ-୩) ସହିତ 'ସ୍ୱେଦ, ଅଶ୍ରୁ, ଶୋଣିତର ଅନ୍ଧ ଏ ସଂସାର/ଚନ୍ଦନ, କସ୍ତୁରୀ ଭଳି ମୁଗ୍ଧ କରେ ଅଥଚ ତା' ଥାଏ ନିଜଠାରେ' (ପୃ-୪) ଏବଂ 'ଯଦି ତମେ ଥିଲ କେବେ, ତମେ ଅଛ ମୋହରି ଭିତରେ (ପୃ-୧) ପଙ୍‌କ୍ତି—ସମୂହକୁ ଲକ୍ଷ୍ୟ

କଲେ ରହସ୍ୟମୟ ଆଧ୍ୟାତ୍ମିକତାର ଆତ୍ମିକ ପରିପ୍ରକାଶ ମାଧ୍ୟମରେ କାବ୍ୟ ଅନୁଭବ ବାରି ହୋଇପଡ଼େ ।

'ଶୂନ୍ୟ ସଙ୍ଗମ' କବିତାରେ ଦେହକୁ ତିନି ଭାଗରେ ବିଭକ୍ତ କରିବା ଏବଂ ଚାହାଁଣି ମଣ୍ଡପରୁ କୃପା ଦୃଷ୍ଟି ଢାଳିବାର ପରିକଳ୍ପନା ତାଙ୍କର କାବ୍ୟଦୃଷ୍ଟିକୁ ବ୍ୟାପକତର କରିଥାଏ ।

'କୁହୁକରେ ତିନିଖଣ୍ଡ ଦେହ ଏହି
ଗୋଟିଏ ଅସାଢ଼ ଦେହ
ଆଉ ଏକ ଶୂନ୍ୟ କ୍ରୀଡ଼ାରତ
ଅନ୍ୟ ଏକ ସବୁ କିଛି ଦେଖୁଥିବା ଧୂମାଳ ସତ୍ତାଟିଏ
ନିର୍ଲିପ୍ତ ମୋ ସାକ୍ଷୀ ପୁରୁଷର' (ପୃ-୧୯)
କୃପା ଦୃଷ୍ଟି ଢାଳିବାକୁ ସତେ ଅବା ମୁକ୍ତ ଅଛି
ଏକମାତ୍ର ଚାହାଁଣି ମଣ୍ଡପ
ଯେଉଁଠାରେ ପରିପୂର୍ଣ୍ଣ ଅଭିମାନ, ଅନେକ ଆଟୋପ' (ପୃ-୧୯)

ପରମ୍ପରାର ଭିତ୍ତିଭୂମି ଖୋଜିବାକୁ ଯାଇ ଆଧୁନିକ ଚିନ୍ତାଧାରାରେ ଏକ ଛିନ୍ନମୂଳ ଭାବ ପ୍ରକଟିତ ହେଲାବେଳେ ଏବଂ ଧର୍ମ ମଣିଷ ଠାରୁ ଏକ ମୃତ ଆତ୍ମା ଭଳି ଦୂରେଇଗଲାବେଳେ ଜଗନ୍ନାଥଙ୍କର ଜୀବନ୍ତ ସଂସ୍କୃତି ଏହାର ବିକଳ୍ପ ଭାବେ ଦେଖାଦେଲା, ଯାହା କି ଆଧ୍ୟାତ୍ମିକ ଅନ୍ୱେଷଣକୁ ଆଶ୍ରୟ ଦେଲା । କବି ଆଲୋଚକ ସୌରୀନ୍ଦ୍ରବାବୁଙ୍କ ମତରେ ଏହି ଅନ୍ୱେଷଣ ହିଁ ହରିହରଙ୍କ କବିତା ଏବଂ ଏଇଠି ସ୍ୱପ୍ନ, ବାସ୍ତବତା ଓ ସତ୍ୟୋପଲବ୍ଧି ମିଳିତ ହୋଇ ସୃଷ୍ଟି କରନ୍ତି ଏକ ରହସ୍ୟମୟ କାବ୍ୟ ଲକ୍ଷ୍ୟ । ଯେପରି–'ଅସ୍ଥି ଭିତରେ ଆହୁରି ଅସ୍ଥି ଗୋଟିଏ ମଞ୍ଜ ଅଛି ଧବଳ ହାତୀର/ଅବା ପ୍ରବୃଦ୍ଧ ବୁଦ୍ଧର/ତା'ର ହାତରେ ଗଢ଼ା/ମୁଁ ହାତୀ ଦାନ୍ତର ପକ୍ଷୀ/ଯାହାର ସୁବର୍ଣ୍ଣ ଛାଇ ଦ୍ୱିବିଧ/ଦ୍ୱା ସୁପର୍ଣ୍ଣାରେ'' ।

(ଛାୟାପକ୍ଷୀ–ପୃ-୧୦)

ସାଧାରଣ ଭିତରେ କାବ୍ୟ ପୁରୁଷ ତା'ର ପରିଚୟ ହଜେଇ ଅହଂଶୂନ୍ୟ ଅବସ୍ଥାରେ ଉପନୀତ ହେଲାବେଳେ ଶୂନ୍ୟସତ୍ତା ସହିତ ସେ ଜଗନ୍ନାଥ ବା ଗଣବ୍ରହ୍ମର ସାଦୃଶ୍ୟ ଦେଖିପାରେ । ଫଳତଃ ମାନବିକ ସତ୍ତା ଭିତରେ ଆଧ୍ୟାତ୍ମିକ ମୁକ୍ତି ଖୋଜୁ ଖୋଜୁ ସ୍ୱତଃ ତାର କରୁଣାଭାବ ଉଦ୍ରେକ ହୋଇଥାଏ । ତେଣୁ ସ୍ୱପ୍ନ, ବାସ୍ତବତା, ସତ୍ୟୋପଲବ୍ଧି ସହିତ ଅହଂଶୂନ୍ୟ ଓ କରୁଣାଭାବ ମୃତ୍ୟୁକୁ ଅତିକ୍ରମ କରାଇବାରେ ସହାୟତା କରିଥାଏ । ଏହି ଉତ୍ତରିତ ଚେତନା ହିଁ ଅନାମ

ଚେତନା ଏବଂ ଶ୍ରୀ ମିଶ୍ର 'ଅନାମ' ଆନ୍ଦୋଳନର ଅନ୍ୟତମ ମୁଖ୍ୟ ପ୍ରବକ୍ତା । ଉଦାହରଣ ସ୍ୱରୂପ କେତେକ ପଂକ୍ତି ଉଦ୍ଧାର କରାଯାଇପାରେ । ଯେମିତି–(କ) 'ଅଶ୍ରୁ ମୋର ମୁକ୍ତା ପାଲଟିବାର ଲଗ୍ନ ଓ ମୁହୂର୍ତ୍ତ ପାଏ/ନା ନିର୍ଜନ ଶାମୁକାଟିର ଗର୍ଭରେ ଲୁଚି ରହିବାର ସ୍ୱପ୍ନଟି ମୋର/ଅତଳ ସାଗରରେ ମୁକ୍ତିର ସାର୍ଥକତା ପାଏ । (ଅସମ୍ଭବ ସମ୍ଭାବନା–ପୃ-୧୭), (ଖ) ପୋତିଦିଅ ନୂପୁରର ପ୍ରତ୍ୟୟକୁ କୁଢ଼ କୁଢ଼ ବାଲିତଳେ/ନିଃସ୍ୱ କରିଦିଅ ମତେ ବଡ଼ଦାଣ୍ଡ ମଝିଟାରେ (ଶୂନ୍ୟ ସଙ୍ଗମ–ପୃ-୧୯), (ଗ) କାକଳିର ଉଚ୍ଚାରଣ ଶବ୍ଦର ଆକାଶ ଗଢ଼େ/ ଧ୍ୱନିମୟ ଶୂନ୍ୟ ତା' ମନ୍ଦିର (ଦୈବାତ୍ ଦେଖିଥିଲି ତାଙ୍କୁ–ପୃ-୩୮), (ଘ) ଶୂନ୍ୟରେ ବାଇଦଟିଏ ପିଟିଦେଲା/ପଞ୍ଚଭୂତ ପୃଥିବୀକୁ ଚିହ୍ନିପାରି ଆପଣା ଭିତରେ । ଅଲୌକିକ ଏ ପୃଥିବୀ ଅମାୟିକ ମଣିଷଟିଏ ମୁଁ...(ପୃ-୫), (ଙ) ଅଣୁରୁ ଉତ୍ତୁରୁଥିବା ଅଙ୍ଗାର ପୁରୁଷ/ କେବେ ହୁଏ ଗଣବ୍ରହ୍ମ... ସେ ସହସ୍ର ଶୀର୍ଷ । (ଅଙ୍ଗାର ପୁରୁଷ–ପୃ-୭୨), (ଚ) ଗହଳି ଭାଙ୍ଗିଲା ଯଦି ଏହିଥର ମୋ ପାଖକୁ ଆସ/ବିଜୁଳି ଶକ୍ତିର ଶତ ଯାନବାହନରେ/ଛୁଇଁବାକୁ ମୋ ହୃଦର ଶତ ହୃଦୟର/ନୀରବ ନିଶ୍ଚୁପ କେଉଁ ଗୁପ୍ତ ବୃନ୍ଦାବନ/କଦମ୍ବର ଗର୍ଭକୋଷ/ ନୀରବ ପ୍ରଦେଶ/କେଉଁଠାରେ ସେ ଝରଣା/ଆଲୋକର ଉତ୍ସ (ଦକ୍ଷିଣାୟନ/ପୃ-୧୧୨), (ଛ) ଦେବସ୍ଥାନ ଅପବିତ୍ର ହେବ ଅବା/ମହାସ୍ନାନ ହେବେ ଦେବଗଣେ/ତା ପାଖେ ଅସ୍ତ୍ର ନାହିଁ ଅହଂ ନାହିଁ । ଶକ୍ତି ନାହିଁ ଆସ୍ଫାଳନ ନାହିଁ (ଦକ୍ଷିଣାୟନ–ପୃ-୧୧୪) ।

ବ୍ୟକ୍ତି ଅହଂଶୂନ୍ୟ ହେଲେ, ନିଜକୁ ଅନ୍ୟ ପାଇଁ ସମ୍ପୂର୍ଣ୍ଣ ଭାବେ ଉତ୍ସର୍ଗ କରିଦେବାର ଭାବ ବା ତ୍ୟାଗ ମନୋବୃତ୍ତି ସ୍ୱତଃ ଜାତ ହୋଇଥାଏ । ଫଳରେ ସେ କ୍ରମଶଃ ସଂକୀର୍ଣ୍ଣତାରୁ ମୁକ୍ତ ହୋଇ ଉର୍ଦ୍ଧ୍ୱତମ ସ୍ତରକୁ ଉନ୍ନୀତ ହୁଏ । ଯେପରି–

'ତମେ ଚଞ୍ଚୁ ଗଳାଇ ଖୋଜିନିଅ
କେଉଁଠି କ'ଣ ଅଛି
ବସନ୍ତର ଏକାନ୍ତ ଶିମୁଳି ଫୁଲଟିଏ
ମୋ ବୁକୁର ସୁନାକୂଅରୁ ସଞ୍ଚିତ ଶୀତଳ ଜଳ
କେବଳ ପାନ କରନା, ସ୍ନାନ କର,
ବିତାଇ ଦିଅ ସନ୍ତପ୍ତ ଅଣସର'

(ସେପରି ନ ଥାନ୍ତି କେହି–ପୃ-୪୦)

ଜୀବନର ଜଟିଳ ଅନୁଭୂତି, ପ୍ରେମ, ପ୍ରକୃତି, ସ୍ମୃତି, ସମ୍ପର୍କ ଇତ୍ୟାଦି ମିଳିତ ହୋଇ କାବ୍ୟ ଅନୁଭୂତିକୁ ବଳିଷ୍ଠ କରୁଥିବା ବେଳେ ଚିତ୍ରକଳ୍ପ ଓ ମିଥ୍ କାବ୍ୟଗଢ଼ଣକୁ ପୁଷ୍ଟ କରିଛନ୍ତି । ଫଳରେ ଶ୍ରୀ ମିଶ୍ରଙ୍କର କାବ୍ୟ ଅଭିବୃଦ୍ଧି ରହସ୍ୟମୟ କାବ୍ୟଲକ୍ଷ୍ୟ ଦିଗକୁ ଅଗ୍ରସର ହେବାରେ ସହାୟତା କରିଛି । ଯେପରି–(କ) 'ବିଷ୍ଣୁଙ୍କର ପାଦ ମଞ୍ଚାଳୁଥିବା ଭଳି ଅନନ୍ତ ଶୟନରେ/ ଅଧାମେଲା ଗ୍ରାମ୍‌ଫୋନ୍ ଭଳି ସାପର ଫଣାଟି (ପଲଙ୍କ–ପୃ-୧୦) (ଖ) ଝୋଟିର ଧାନକୋଠି, ଚିତାର ବୋଇତ ଭଳି/ବର୍ତ୍ତି ଯାଇଥିବା ଏକ ମାନଚିତ୍ର... ଆମର ଭାରତ । (ବର୍ଷାର ପୂର୍ବାପର–ପୃ-୧୫), (ଗ) ଚାଳରୁ ଦିଶୁଛି ଜହ୍ନବୁଢ଼ୀର ଫୁଟା ଫୁଟା ଚିତଉ ପିଠାର ମୁହଁ (ମୁହୂର୍ତ୍ତର ଶତାବ୍ଦୀ–ପୃ-୧୨୩), (ଘ) ନିଜ ବଦନରୁ ଜାତ ସବୁ ସୂତ୍ର ଧରି ଘୁରୁଥାଏ ଅସିଧା ଓ ଅସରଳ/ଉର୍ଣ୍ଣନାଭ ଘୁରୁଥାଏ/ନିଜେ ନିଜେ କେନ୍ଦ୍ରବିନ୍ଦୁ ହୋଇ ବସିଥାଏ (ବୁଢ଼ା ବୁଢ଼ୀ–ପୃ-୩୬), (ଙ) ସୂର୍ଯ୍ୟର ବଡ଼ପଣ ହସୁଥାଏ । କାନି ଚିରି ଲାଗିଥିବା/ଗୋହିରୀର କଣ୍ଟାବାଡ଼ ପରେ '(ଚାଲି ନ ଥିଲି ମୁଁ ପିଣ୍ଡାଧାରେ ବୋଲି–ପୃ-୫୦), (ଚ) ନଚେତ୍ ଏ ସ୍ମୃତିର ଅରୁନ୍ଧତୀ/ସପ୍ତର୍ଷି ତଙ୍ଗାରେ ବସି/ଅସମ୍ଭବ ପାରି ହେବା ଆକାଶର କଳାନଈ (ତମ ଆମ ସମ୍ପର୍କର ଗୀତ–ପୃ-୭୯), (ଛ) ବୃକ୍ଷର କେତେକାଳ କୋରଡ଼ରୁ/ବାହାରି ଆସିଲା ଅଲୌକିକ ସର୍ପଟିଏ/ସବୁ ଗିଳିସାରି ସେଇ ସଇତାନ ଅଜଗର/ବାଉନ ଭଣ୍ଡାର ଜଗି ବସିଥିବା ଭୋଗୀ/ଯୋଗୀ ଭଳି କରେ ଏବେ ପବନ ଆହାର (ସୋମପାର ଚର୍ଯ୍ୟାପଦ–ପୃ-୮୩), (ଜ) ଭିତିରି ଚନ୍ଦନ ଏହି ପଞ୍ଚଭୂତ ପ୍ରକୃତିର/ଷଡ଼ଋତୁ ଓ ଷଡ଼ଚକ୍ରର ଘୂର୍ଣ୍ଣନ/ଷଡ଼ ରିପୁର ମନ୍ଥନରୁ କ୍ଷରିତ ମହାରସ ।'

(ପୁଞ୍ଜିମାୟା–ପୃ-୧୦)

ସଂସାରର ଜଟିଳତାକୁ ସମ୍ମୁଖୀନ ହେଲାବେଳେ କାବ୍ୟ ଦୃଷ୍ଟିରେ ସହାନୁଭୂତି ଓ ସମ୍ବେଦନଶୀଳତା ପ୍ରକାଶ ପାଇଥାଏ । କବି ସେଠାରେ ମାନବିକ ତଥା ଜାଗତିକ ଦୁଃଖକୁ ଅତିକ୍ରମ କରି ପାହାଡ଼, ଆକାଶ ଓ ସମୁଦ୍ର ଆଦି ପ୍ରାକୃତିକ ମାନବେତର ବସ୍ତୁରେ ଜୀବନକୁ (ପୃ-୨୦ ଇସ୍ତାହାର–)ଆରୋପ କରିଥାଏ । କବି ଶ୍ରୀ ମିଶ୍ରଙ୍କ ଏହି ଦୃଷ୍ଟିଭଙ୍ଗୀ 'ନ ଥିବା ଲୋକର କଥା' (ପୃ-୨୦) କବିତାଟିର 'ବର୍ତ୍ତମାନ ପାହାଡ଼ କ'ଣ କରୁଥିବା କେଜାଣି' ଏବଂ 'ଆକାଶ କ'ଣ କରୁଥିବ କେଜାଣି' ଏବଂ 'ଏତେବେଳେ ସମୁଦ୍ର କ'ଣ କରୁଥିବ କେଜାଣି' ଆଦି ପଂକ୍ତି ସମୂହରେ ଖୁବ୍ ଆନ୍ତରିକ ଭାବେ ପ୍ରକାଶ ପାଇଛି । ନଦୀଶଯ୍ୟାରେ ଶୋଇପଡ଼ିଥିବା ପାହାଡ଼ ଭିତରର ଅରଣ୍ୟ ଲୁକ୍ ଲୁକ୍ କରୁଣ ଭାବରେ ସଭ୍ୟତାର ପାଉଁଶ ପାଲଟିଯାଏ, ଦୁର୍ଦ୍ଦଶାପୂର୍ଣ୍ଣ ପୃଥିବୀର କରୁଣ ମନ୍ତ୍ରରେ ଆକାଶ, ମୃତ ଗ୍ରହମାନଙ୍କୁ ଜୀବନ୍ୟାସ ଦେବା ଏବଂ ସମୁଦ୍ର, ନିରର୍ଥକ ଗର୍ଜନରେ ମାତିବା ନିମିତ୍ତ କୁଢ଼ କୁଢ଼ ବାଲି ସ୍ତୁପରେ ମୁଣ୍ଡ ଦେଇ ଶୋଇପଡ଼ି

ଦମ୍ ନେବା ଆଦି ଚିତ୍ର ମାଧ୍ୟମରେ ଜୀବନର ଜଟିଳ ଅନୁଭୂତି ସ୍ପଷ୍ଟତର ହୋଇଛି । ମାତ୍ର ପରବର୍ତ୍ତୀ ପଂକ୍ତି ଗୁଡ଼ିକରେ କାବ୍ୟ ପୁରୁଷର ଆଶା, ବିଶ୍ୱାସ କାବ୍ୟ ଲକ୍ଷ୍ୟକୁ ପରିବ୍ୟାପ୍ତ କରିଛି । ଯେପରି–

'ଯିଏ ଯାହା କରୁ ମୁଁ ବି' ଖଣ୍ଡ ହାଡ଼
ଛୁଇଁବା ମାତ୍ରେ ତା' ଶୀର୍ଣ୍ଣବାହୁର
ପାହାଡ଼ ବୁହାଇଦେବ ସ୍ୱପ୍ନର ଝରଣା
ଆକାଶ ଢାଙ୍କିଦବ ନିଦର ଓଢ଼ଣା
ଆଉ ସମୁଦ୍ର ଅଜାଡ଼ିଦବ ମୁକ୍ତାର ବିଛଣା'

(ନଥିବା ଲୋକର କଥା–ପୃ-୨୧)

କାବ୍ୟ ପୁରୁଷ ଅପେକ୍ଷା କରିଛି ଅନାହାରରେ ଥିବା ମା' ପେଟର ଶିଶୁ ଓ ତା'ର ଦରୋଟି କଥାକୁ, ସେଇ ଶିଶୁଟି ଭୂମି ସ୍ପର୍ଶ କଲେ ସବୁ ଦୁଃସାହସିକ ଗାଥା ଏବଂ ପୌରାଣିକ ଯୁଦ୍ଧ କାହାଣୀ ଯେମିତି ଆପେ ଆପେ ବିସର୍ଜିତ ହୋଇଯିବ । ଜୀବନର ଚରମ ଦୁର୍ଦ୍ଦଶାପନ୍ନ ମୁହୂର୍ତ୍ତରେ ହିଁ କାବ୍ୟ ପୁରୁଷ–ନୂତନ ସୃଷ୍ଟିର ବିଶ୍ୱାସ ରଖିଛି ।

ପୁନଶ୍ଚ 'ଆରୋହ-ଅବରୋହ' କବିତାଟିରେ ଜୀବନର ଯନ୍ତ୍ରଣା ସହିତ ସମ୍ବେଦନଶୀଳତାର ଚିତ୍ର ଅଦ୍ଭୁତ ଭାବେ ପ୍ରକାଶ ପାଇଛି । ଯେପରି–

'କେବଳ ମୋର ଯନ୍ତ୍ରଣାର ଜୟଗାନରେ
ମୁଖରିତ ଏ ଗଗନ ପବନ
ନଚେତ୍ ଗ୍ରୀଷ୍ମର ସନ୍ତାପରେ ମଲ୍ଲୀ ଫୁଟିବ ନାହିଁ
ଘନ ଘୋର ଶ୍ରାବଣର ଅଶ୍ରୁଧାରାରେ
ରକ୍ତ ମନ୍ଦାର ଆବାହନ କରିବ ନାହିଁ ମେଘକୁ
ସନ୍ତାପିତ ପୋଡ଼ା ଜଳା ଫଟା ଭୂଇଁ ପାଇଁ' । (ପୃ-୧୨)

ଜୀବନାନୁଭୂତିର ତୀବ୍ରତର ଉପଲବ୍ଧି ପ୍ରକାଶ ନିମିତ୍ତ କବିତାରେ ତୀକ୍ଷ୍ଣ ଶ୍ଳେଷାତ୍ମକ ଦୃଷ୍ଟିଭଙ୍ଗୀ (Irony) ପରିଲକ୍ଷିତ ହୋଇଥାଏ । ଶ୍ରୀ ମିଶ୍ରଙ୍କର କବିତାରେ ମଧ୍ୟ ତାହା ହିଁ ଘଟିଛି । ଯେପରି–(କ) 'ମୂଷା ମଧ୍ୟ ଆଜି କାଲି ସମାଜ ବାଦରେ ହାତୀଟିଏ ପ୍ରସବ କରିବ (ମୁହୂର୍ତ୍ତର ଶତାବ୍ଦୀ–ପୃ-୨୪), (ଖ) ସାମ୍ନାରେ ଶବ୍ଦ ବ୍ୟବଚ୍ଛେଦ ଘର/ଜଗିଛି ଅନ୍ଧାର ଓ

ସେ ନିର୍ଜନତାର/ପ୍ରହରୀ ଭଳି ଠିଆ ହୋଇ ରହିଛି ସଶସ୍ତ୍ର/ବହୁକାଳ ନୀରବତାର ସାମ୍ନା ସାମ୍ନି/ଏକ ଦୁର୍ଜ୍ଜୟ ବୀର । (ଉଦାହରଣ—ପୃ-୩୧), (ଗ) ମଦନ ମୋହନ ସ୍ୱୟଂ ସୁସ୍ଥ ହୋଇ ଝୁଲୁଥାନ୍ତି/ଚିକିତ୍ସିତ ଲୋକ ଭଳି ମାନସିକ ପାଗଳ ଖାନାରେ (କ୍ଷେତ୍ରବାସୀ—ପୃ-୪୫), (ଘ) ହଷ୍ଟେଲରୁ କାର୍ ନେଇ ଶ୍ରୀ ମନ୍ଦିର ଗଲା/ଗାନ୍ଧର୍ବ ରୀତିରେ ମାଳା ବିନିମୟ ହେଲା/ଦୁହିଁଙ୍କର ଯୋଡ଼ି ଦେଖି କାଳିଆର ଚକାଆଖି/ଖୋସି ହୋଇଗଲା । (ରୀତି କାବ୍ୟ—ପୃ-୭୪), (ଙ) ଛକ ଉପରେ ପଥର ମୂର୍ତ୍ତିଟିର ଶକ୍ତ ହାତରେ/ନିରୀହ ଯଷ୍ଟି ଖଣ୍ଡେ ଥିବା ଯାଏଁ କ'ଣ ଦରକାର ଟ୍ରାଫିକର ନିୟନ୍ତ୍ରଣ ପାଇଁ ଅନ୍ୟ ବ୍ୟବସ୍ଥାର (ଉଗ୍ରବାଦୀ—ପୃ-୯୨), (ଚ) ଘଟଣା ଘଟିଯାଉଛି ଦୂରଦର୍ଶନରେ/ମହାପାତ୍ରେ ଆସୁଛନ୍ତି...ଯାଉଛନ୍ତି/ଆମେ ତା'ର ନୀରବ ଦର୍ଶକ (ହୁକୁମ ନାମାର ନକଲ ନାମା—ପୃ-୯୭), (ଛ) ଅଶୋକ କି କୃଷ୍ଣ ଦେବରାୟ ଭଳି/ସିଂହକୁ ରଖିବ ନେଇ ସେ/ଶାନ୍ତିର ଧ୍ୱଜସ୍ତମ୍ଭରେ ନୀରବରେ' (ଦକ୍ଷିଣାୟନ—ପୃ-୧୧୪) ।

ପରିସ୍ଥିତିର ଜଟିଳତା ସତ୍ତ୍ୱେ ଅଦୃଷ୍ଟକୁ ଅତିକ୍ରମ କରିଯିବାର ପ୍ରୟାସ ଅନେକତ୍ର ଦେଖିବାକୁ ମିଳେ । କେଉଁଠି 'ଦେହରେ ମିଶାଇ ଦେହ ଜନ୍ମ ନିଏ/ଆଉ ଏକ ଦେହ' (ସୁନ୍ଦରଗଡ଼; ଏକ ସୃଜନ ଅନୁଭବ—ପୃ-୬୬) ତ ଅନ୍ୟ କେଉଁଠି 'ସ୍ରଷ୍ଟାର ଅଦୃଷ୍ଟ ଅନୁଶାସନ କିନ୍ତୁ ବୈଚିତ୍ର୍ୟରେ/ବୈଶିଷ୍ଟ୍ୟ ତମର/ବଞ୍ଚିବାର ମହାର୍ଘ କୌଶଳ...' (ହୁକୁମ ନାମାର ନକଲି ନାମା...ପୃ-୯୭) ପଂକ୍ତି ଗୁଡ଼ିକ ମାଧ୍ୟମରେ ନୂତନ ସୃଷ୍ଟି ତଥା ଜୀବନ ବଞ୍ଚିବାର କଥା ସ୍ପଷ୍ଟ ହୋଇଥାଏ/ସେହିପରି ବଞ୍ଚିବାର ନିତ୍ୟ ସ୍ୱରୂପ ବହୁ ସ୍ଥଳରେ ପରିଦୃଷ୍ଟ ହୁଏ, ଯେଉଁଠାରେ କି କାବ୍ୟ ଦୃଷ୍ଟିରେ ରହସ୍ୟମୟତାର ପରିପ୍ରକାଶ ଘଟିଥାଏ । ଉଦାହରଣ ସ୍ୱରୂପ (କ) 'ଭିତର ମଣିଷ କେବେ ନୁହେଁ ତା'ର/ବାହାରେ ତା' ପରିଚୟ ଅନୁରୂପ ଭିତରେ ଯେପରି/ଥାଏ ଅବା ହଜିଯାଏ/ସମୟ ତା ପାରେ ନାହିଁ ଧରି (ଭିତର ମଣିଷ—ପୃ-୪୩୦, (ଖ) କେହି ଜଣେ ପହଞ୍ଚି ସାରିଥିବ/ବହୁଦିନ ପରେ ନିଜ କୁଟୁମ୍ବ ଭିତରେ (ଯାତ୍ରୀ—ପୃ-୫୨), (ଗ) ବାଟ ଯାକ ମନେହୁଏ, ପବନ ହିଁ ଚଳାଉଛି/ତା'ର ଶକ୍ତି ନଥିବା ହାତର ଆହୁଲାକୁ/ଆଉ କାଳ କାଳର ଜୀର୍ଣ୍ଣପୋତକୁ ଅଜଣା ପୋତାଶ୍ରୟକୁ/ତା' ପାଇଁ ଅନ୍ୟ ପନ୍ଥା ନାହିଁ, ଭଲ ଆଉ ମନ୍ଦ ନାହିଁ (ଗୁହାରିଆ—ପୃ-୫୮), (ଘ) ଏତେବେଳେ କାବ୍ୟ ଆଉ କୋଣାର୍କର କୀର୍ତ୍ତି ସବୁ/ବଞ୍ଚିବାର ନିଃଶ୍ୱାସ ପ୍ରଶ୍ୱାସ ଭଳି ବୁକୁତଳେ/ଅନବରତ ଲହରୀରେ ଉଠେ ପଡ଼େ/ସତେ ଅବା ବତୀଘର ଆଲୁଅର ଧାରେ । (ଦୈନନ୍ଦିନ—ପୃ-୬୦), (ଙ) ଶୁଭ୍ର ବିନ୍ଦୁଟିଏ ମୋ'ର । ନାନାଦି ଆକାରରେ ଭାସୁଥାଏ/ତରଙ୍ଗରେ ବସିଥାଏ ପଦ୍ମାସନେ/ନିଜକୁ ସାକ୍ଷାତ କରେ ସେ ଦୃଶ୍ୟରେ/ଦେବା ଦେବୀ ବିଗ୍ରହ ଭିତରେ (ବିସର୍ଜିତ ବିଗ୍ରହର ଦୃଶ୍ୟ ସକଳ...୯୦), (ଚ) ଆଜି ଏକା ଏକା ବଞ୍ଚିଥିବା/ଚଢ଼େଇଟି ବି ଶୁଖି ଯାଉଛି.../ଏଥର ଡାକିବାକୁ ହେବ ଲଙ୍ଗଳା ପିଲାଟିକୁ/ତା'ର

ହାତ ମୁଠାରେ ହଉ ପଛେ/ଧରା ପଡ଼ିଯାଏ ମୋର ଭୟ ଆଉ ଛଟପଟ ପଣ' (ଅଥଚ ମାଛଟିଏ—ପୃ-୧୧୦) । ଆଧ୍ୟାତ୍ମିକ ଲକ୍ଷ୍ୟ ଜୀବନ ଚର୍ଯ୍ୟାରେ ପରିଣତ ହେଲାବେଳେ ସ୍ୱପ୍ନ ସ୍ତରରେ ଥିବା କବିର କାବ୍ୟିକ ଲକ୍ଷ୍ୟ ପୂର୍ଣ୍ଣତା ଦିଗକୁ ଅଗ୍ରସର ହୁଏ ଏବଂ ସ୍ୱପ୍ନ ସତ୍ୟରେ ପରିଣତ ହେବା ନିମିତ୍ତ ପ୍ରଚେଷ୍ଟା ଜାରି ରଖିଥାଏ । ଯେପରି—(କ) 'ସ୍ୱପ୍ନ ବିନିମୟ ପାଇଁ ଅଦୃଶ୍ୟ ସହିତ/ବିସ୍ମୟରେ ଜଳିଯିବ ମୁହୂର୍ତ୍ତର ଅହଙ୍କାର (ଅମାୟିକ—ପୃ-୪୪), (ଖ) ତାଙ୍କୁ ଘେରିଥିବା କୂଟ କାପଟ୍ୟର ଅରଣ୍ୟ/ମନ୍ତ୍ରରେ ମୁଖରିତ ହେବ କି ନା/ଆଗାମୀ ଶତାବ୍ଦୀର ବୈଦିକ ସୂକ୍ତରେ (ବିପ୍ଳବୀ କବିଟି ମରିଗଲା ପରେ—ପୃ-୬୨), (ଗ) ଆଖିରୁ ସମସ୍ତ ନିଦ ଉଡ଼ି ଚାଲିଗଲା ପରେ/ତମେ ଆସ ନୀଳବର୍ଣ୍ଣ ଶିଶୁଟିଏ କାଖେ ଧରି/ସାକାର ମୋ ସ୍ୱପ୍ନଟିର, ହସଟିଏ ସାତ ପୁରୁଷର (ଦେବ ଶିଶୁ—ପୃ-୬୩) । ଜୀବନକୁ ନିଜ ସ୍ୱପ୍ନ ମୁତାବକ ଆଉଥରେ ଗଢ଼ିବା, ସୃଜନ ତଥା କବିତାର ଏକ ଦିଗ ଏବଂ ଯେତେଦୂର ମନେହୁଏ କବି ସେତିକିବେଳେ ଦିବ୍ୟଦୃଷ୍ଟି ସମ୍ପନ୍ନ ହୋଇ 'ଈଶ୍ୱର' ସ୍ତରକୁ ଉନ୍ନୀତ ହୁଏ । ଯେପରି—(କ) ଅନେକ ଭଙ୍ଗା ଗଢ଼ା ପରେ ସୃଜି ଥାଏ.../ଯାହା ପାଏ ଇଚ୍ଛାର ଇଙ୍ଗିତ/କେଉଁ ସୃଜନ ବିନ୍ଦୁରୁ ଶକ୍ତିମୟୀ ଇଚ୍ଛା ସତେ ହୁଅଇ ସ୍ଫୁରିତ । (ବାଗର୍ଥ—ପୃ-୨୭), (ଖ) କେଉଁ ଅନୁପମ ସୃଷ୍ଟି ପାଇଁ/ତୋର ଧୈର୍ଯ୍ୟର ସ୍ଖଳନ ହୋଇଛିରେ ସୋମପା' । (ସୋମପାର ଚର୍ଯ୍ୟାପଦ—ପୃ-୮୩) ।

ଦ୍ୱିଧା, ବିପରୀତ ବୋଧକ ଶବ୍ଦର ସମନ୍ୱୟ ତଥା ବିରୋଧାଭାସ ମାଧ୍ୟମରେ ଜୀବନକୁ ବିଶ୍ଲେଷଣ କଲାବେଳେ ଶ୍ରୀ ମିଶ୍ରଙ୍କର କାବ୍ୟ ଦୃଷ୍ଟି ତୀକ୍ଷ୍ଣ ଓ ଶାଣିତ ହେବା ସଙ୍ଗେ ସଙ୍ଗେ ଅପୂର୍ବ କାବ୍ୟସ୍ୱାଦ ସୃଷ୍ଟି କରିଥାଏ । ଯେପରି—(କ) 'ଆଜି ମାଟିକୁ ଦେଖ, ତା'ର ବିହନ ପଚି ଯାଉଛି/ବୃଥା ହୋଇଯାଉଛି/ବିହନକୁ ଦେଖ, ତା' ପାଇଁ ମାଟି ନାହିଁ/ସେ ବ୍ୟର୍ଥ ହୋଇଯାଉଛି (କୋଇଲି ନୁହନ୍ତି କାଠହଣା—ପୃ-୬), (ଖ) ସେ'ତ ନିଜେ ମୁଁ, ସେ'ତ ମୁଁ ନିଜେ/ଯିଏ ନିତି ମନା କରେ, କ୍ରୀତଦାସ ହେବା ପାଇଁ/ନିଜେ ନିଜେ ପାଖେ/(ବରଂ ନିଜେ ନିଜ ଭଳି—ପୃ-୨୯), (ଗ) ଯେତିକି ଦେଇଯାଏ ନଈ/ସେତିକି ବି ଯାଏ ନେଇ (କବି ଦୀନକୃଷ୍ଣଙ୍କ ଭଳି—ପୃ-୩୩), (ଘ) ଯଦି ସେଠି ଆଲୋକ ନ ଥାନ୍ତା/ଅନ୍ଧାରର ଯନ୍ତ୍ରଣା ନ ଥାନ୍ତା/ଯଦି ସେଠି କିଛି ହିଁ ନ ଥାନ୍ତା/ସବୁକିଛି ସମ୍ଭବ ହୁଅନ୍ତା (ଭିତର ମଣିଷ—ପୃ-୪୩), (ଙ) ଯେଉଁଠୁ ଛାଡ଼ିଛି କାବ୍ୟ/ସେଇଠୁ ଧରିବାକୁ ଚେଷ୍ଟା କରୁଛି/ଶବ୍ଦ ଘୁଞ୍ଚି ଯାଉଛି ଦୂରକୁ/ସେ ପାକୁ ପାକୁ ହେଉଛି । (ବେଶ ବଦଳ—ପୃ-୪୮), (ଚ) ମୂର୍ତ୍ତିମନ୍ତ ହୋଇଗଲେ ପଥରର/ଅମୂର୍ତ୍ତ ଆନନ୍ଦର ପ୍ରତିମାରେ (ଅଲୌକିକ ଏ ପୃଥିବୀ, ଅମାୟିକ ମଣିଷଟିଏ ମୁଁ—ପୃ-୫), (ଛ) ସୁଖ ତ ସମାନ ଏଠି ଦୁଃଖ ଭିନ୍ନ ଭିନ୍ନ/ଦୁଃଖ ବି ସମାନ ଏଠି ସୁଖ ଭିନ୍ନ ଭିନ୍ନ (ଦେବଶିଶୁ—ପୃ୬୩), (ଜ) କାନ୍ଦି ଉଠ ନିର୍ଜନତା ପରିତମେ/ଯେତେବେଳେ ନିଜର

ପାଦଶବ୍ଦ/ଭୟସବୁ ତୋଳି ଆଣେ ଆପଣା ମୃତ୍ୟୁର—(ଏମିତି ଆସୁଥାଅ ପ୍ରତିରାତି, ପ୍ରତିଟି ମୁହୂର୍ତ୍ତ—ପୃ-୬୯), (ଙ) ଡଙ୍ଗା ଚାଲେ ଆକାଶରେ, ସମୁଦ୍ରରେ ମରୁବାଲି ପରେ/ଡଙ୍ଗା ଚାଲେ କାଗଜର, ଲୁହ ଆଉ ହସର ଢେଉରେ (ତୁମ ଆମ ସମ୍ପର୍କର ଗୀତ—ପୃ-୭୯), (ଞ) ବ୍ୟକ୍ତ କରିବାକୁ ସବୁ ଅବ୍ୟକ୍ତ ଅନ୍ଧାର (ଅର୍ଥହୀନ ନିରାପତ୍ତା—ପୃ-୮୯), (ଟ) ଦେହର ପୂଜା ନ କରି ପୂଜାରେ ଦେହକୁ/ଉଠାଇନେବାକୁ ହେବ ଯାନଟିଏ କରି/ମହାକାଶେ ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱକୁ...' (ଚନ୍ଦ୍ରଶେଖର—ପୃ-୯୪)।

ଶ୍ରୀ ମିଶ୍ରଙ୍କର ପ୍ରତିବାଦର କବିତା ଭାବରେ 'ଭକ୍ତଚରଣ' ଓ 'ଚନ୍ଦ୍ରଶେଖର' କବିତା ଦୁଇଟିକୁ ଗ୍ରହଣ କରାଯାଇପାରେ । ହରିହରଙ୍କ କାବ୍ୟଦୃଷ୍ଟିରେ 'ଭକ୍ତଚରଣ ରାଜାର ଅହଙ୍କାରରୁ ତା'ର ଆତ୍ମାକୁ ଉଦ୍ଧାର କରିବା ନିମିତ୍ତ ନିଆଁକୁ ଓ ନଦୀ ଗର୍ଭକୁ ବାରମ୍ବାର ଡେଇଁଛି । ମୃତ୍ୟୁ ଭୟରୁ ଜନ୍ମ ନେଇଥିବା ଆତତାୟୀର ହାତରୁ ନିଜକୁ ଓ ନିଜର ପ୍ରଭୁଙ୍କୁ ରକ୍ଷା କରିବାପାଇଁ ସେ ଶବ ଉପରେ ବସି ତାରକମନ୍ତ୍ର ପଢ଼ିଛି । ହିଂସ୍ର ପଶୁଙ୍କ ମେଳରେ ନିର୍ଭୟରେ ସେ ଫୁଲ ତୋଳିଛି ଏବଂ ରାଜ୍ୟର ପାଇକ ଜଗିଥିବା ବେଳେ ମଧ୍ୟ ପ୍ରମତ୍ତ ଭ୍ରମରକୁ ମଧୁପାନ କରାଇଛି । ସମସ୍ତ ପଦ୍‌ପଦବୀର ଆଟୋପକୁ ପାଦରେ ଠେଲି ଦେଇ କବି ଆଗେଇ ଚାଲିଛି ଅନ୍ୟ ଏକ ବନସ୍ତକୁ ।' (ପୃ-୮୭) । ପ୍ରତିକୂଳ ପରିବେଶରେ ଭକ୍ତଚରଣ ଏକ ବିପ୍ଳବୀର ଭୂମିକା ଗ୍ରହଣ କରିଛନ୍ତି । କାରଣ ଶ୍ରୀ ମିଶ୍ରଙ୍କ ଦୃଷ୍ଟିରେ ଭକ୍ତଚରଣ ପ୍ରଚଳିତ ମୂଲ୍ୟବୋଧର ବହୁ ଉର୍ଦ୍ଧ୍ୱରେ ଏବଂ କବିଙ୍କର ସୃଜନଶୀଳ ରାଜ୍ୟ 'ଅନ୍ୟ ଏକ ବନସ୍ତ' (ପୃ-୮୬) ଦ୍ୱାରା ସୂଚିତ, ଯେଉଁଠି କବି ଓ ବିଶ୍ୱସ୍ରଷ୍ଟା ଈଶ୍ୱର ସମପର୍ଯ୍ୟାୟର । 'ଚନ୍ଦ୍ରଶେଖର କବିତାଟିରେ ମଧ୍ୟ ଏହା ହିଁ ଘଟିଛି । 'ସୃଷ୍ଟିର ଭାରକେନ୍ଦ୍ରରେ କେହି କାହାରିକୁ/ଛାଡ଼ି ଯାଇପାରିବେ ନାହିଁ/ଯେଉଁଠି ଭାରସାମ୍ୟର ଶକ୍ତି/ମୂର୍ତ୍ତିମନ୍ତ, ସେଠି ଜଗନ୍ନାଥ' (ପୃ-୯୪) । ଟଳି ପଡ଼ିବା ଆଗରୁ ଥରେ ସିଂହାସନରେ ବସିବା/ଆଉ ମୁକୁଟ ପିନ୍ଧିବାର ପୁରୁଷାର୍ଥ/ଚରିତାର୍ଥ ହେଉ କି ନ ହେଉ' (ପୃ-୯୪) ଦେହକୁ ଉତ୍ତୀର୍ଣ୍ଣ କରାଇ ମହାଶୂନ୍ୟରୁ/ବ୍ରତ, ଉପାସ ଆଦି ପୂଜା ପଦ୍ଧତିରେ/ଜୀବନ ଚର୍ଯ୍ୟାରେ ଫୁଟାଇବାକୁ ହେବ ଶିଳାପଦ୍ମ/ପହଞ୍ଚାଇବାକୁ ପଡ଼ିବ ଜୀର୍ଣ୍ଣଶୀର୍ଣ୍ଣ ରୁଗ୍‌ଣ ଶରୀରକୁ/ତୁଙ୍ଗ ଶିଖରୀରେ ଝରାଇବାକୁ ହେବ ପାଦାମୃତ/ପାଲଟିବାକୁ ହେବ ସାକ୍ଷାତ ଚନ୍ଦ୍ରଶେଖର' (ପୃ-୯୫) । ଏହି ଦୃଢ଼ତା ପଛରେ ରହିଛି 'ନିୟନ୍ତ୍ରିତ ପରମ୍ପରାକୁ ବଢ଼େଇ ନେବାପାଇଁ ସଂରକ୍ଷିତ କ୍ଷିତି ଓ କ୍ଷିତିକୁ/ଆଗାମୀ ବଂଶଧରଙ୍କୁ' (ପୃ-୯୫) । 'ଶେଷରେ ପ୍ରଦକ୍ଷିଣ କରିବାକୁ ପଡ଼ିବ/ସାତଥର ଆପଣା କୁଇକୁ/ଉନ୍ମୁକ୍ତ କରିବାକୁ ସ୍ୱର୍ଗଦ୍ୱାର/ତା'ପରେ କେଉଁଠାକୁ...' (ପୃ-୯୫) ।

ପୁନଶ୍ଚ ସେହି ପ୍ରତିବାଦର ସ୍ୱର ମଧ୍ୟ 'କବି ଦୀନକୃଷ୍ଣଙ୍କ ଭଳି' କବିତାରେ ଦେଖିବାକୁ ମିଳେ । ଯେମିତି—

'ଅଭିଶପ୍ତ କୁଡ଼ିଆଟି ବ୍ୟାଧିଗ୍ରସ୍ତ ଅସହାୟ କବିଟିର
ଜଳିଯାଉ, ପୋଥିପତ୍ର ଲେଲିହାନ ଶିଖା ଚାଟି ଦେଇ
ଅଗ୍ନିରେ ତପସ୍ୟାରେ ମୁହୂର୍ତ୍ତକେ ନଈଟିର ନଗ୍ନରୂପ
ଆଜି କବି ପ୍ରକାଶ କରିବ ।' (ପୃ-୩୪)

ହରିହରଙ୍କ କାବ୍ୟ ସଙ୍ଗଠନର ଐତିହ୍ୟଯୁକ୍ତ ଶବ୍ଦ ପ୍ରୟୋଗ ଦ୍ୱାରା ଯେଉଁ କାବ୍ୟ ଆବେଗ ସୃଷ୍ଟି ହୁଏ, ତାହା ବ୍ୟଞ୍ଜନାଧର୍ମୀ ଓ କାବ୍ୟାସ୍ୱାଦ ଶବ୍ଦାତୀତ ଏବଂ ନୀରବତା ହିଁ ଯେମିତି ସବୁ ପ୍ରଶ୍ନର ଉତ୍ତର । 'ଯେପରି କେହି ପଚାରିବେନି କାହାକୁ କୌଣସି ପ୍ରଶ୍ନ/ଅଥଚ ନୀରବ ଉତ୍ତର ପାଲଟି ଯାଇଥିବେ ସମସ୍ତେ ।' (ବିପ୍ଳବୀ କବିଟି ମରିଗଲା ପରେ—ପୃ-୬୨), (ଖ) 'ସୁନାର ପାପୁଲିରେ ତୋଳିଧର ନୀଳପଦ୍ମ ଏତେବେଳେ/ରକ୍ତାକ୍ତ ହେଲାପରେ ଗୋଲାପଟି ବହୁଥର/ ଅଲକ୍ଷ୍ୟରେ କଣ୍ଟାର ଶେଯରେ'/(ଦେବଶିଶୁ—ପୃ-୬୩), (ଗ) 'ତୁମଠି ମୋ ଅହଙ୍କାର ନିରବ ରୁଚିର/ଏଠି ମୋ' ଦର୍ପଣ ଦିଶେ ଶୂନ୍ୟାକାର/ମୃତ ପ୍ରତିଛବି ମୋର ଶୀର୍ଣ୍ଣ କଙ୍କାଳର/ଚିରି ଭିତରେ ଦେଖାଏ କି ଯେ ନାରଖାର...' (ପ୍ରାର୍ଥନା : ବାହୁଡ଼ା ବେଳର) ପୃ-୧୦୦-୧୦୧) ।

ଯଦି କାବ୍ୟ ସିଦ୍ଧ ହେଲେ କବିତା ହୁଏ, କବିତା ସିଦ୍ଧ ହେଲେ ହୁଏ ମନ୍ତ୍ର, ତେବେ ମନ୍ତ୍ର ସିଦ୍ଧ ହେଲେ ହୁଏ ଧ୍ୱନି । ଏ ଧ୍ୱନି କବିତାର ସାମଗ୍ରିକତାକୁ ନେଇ ଗଢ଼ା, ଯାହା 'ବାଗର୍ଥ' କବିତାଟିରେ ସମ୍ପୂର୍ଣ୍ଣ ରୂପେ ପ୍ରକାଶ ପାଇଛି । ଏହି ପରିପ୍ରେକ୍ଷୀରେ ପ୍ରଜ୍ଞା ଓ କରୁଣାର ମିଳିତ ବିନ୍ଦୁକୁ ସ୍ପର୍ଶ କରି ଉଚ୍ଚାରିତ ଧ୍ୱନିର ଏକ ଦୃଷ୍ଟାନ୍ତ ସ୍ୱରୂପ 'ଅଲୌକିକ ଏ ପୃଥିବୀ, ଅମାୟିକ ମଣିଷଟିଏ ମୁଁ...' କବିତାରେ 'ଅନ୍ନଦେଲେ ଶୂନ୍ୟଥାଳ ଭିକ୍ଷୁକକୁ, ତୃଷାର୍ତ୍ତ ମାଟିକୁ ଜଳ/ନଗ୍ନ ରୂପସୀକୁ କୁହୁଡ଼ିର ପର୍ଦ୍ଦାଟିଏ/ମଧୁରାତି ପାଇଁ ଦେଲେ ତୃଣ ଶଯ୍ୟା/ଆଉ ତପସ୍ୟା କରିବାକୁ ତୁଙ୍ଗ ଶୃଙ୍ଗ.../ନିଥର ଶୂନ୍ୟତା । (ପୃ-୫୫) ପଂକ୍ତି ସମୂହକୁ ଗ୍ରହଣ କରାଯାଇପାରେ । କବି ହରିହରଙ୍କ କବିତାରେ ଭାବୋଚ୍ଛ୍ୱାସ ଓ ଏହାର ଇଙ୍ଗିତ ଏପରି ବିଚ୍ଛୁରିତ ଯେ, ଶବ୍ଦ ଓ ପ୍ରୟୋଗାତ୍ମକ ଆଙ୍ଗିକ ତଥା ଏହାର ନାଟକୀୟ ପ୍ରଭାବରେ କବିତା ଗତିଶୀଳ ହୋଇ ଏକ ସମଗ୍ର ଧ୍ୱନିର ଇଙ୍ଗିତମୟ ପରିବେଶ ସୃଷ୍ଟି କରେ/ଅନେକ ସମୟରେ ଶବ୍ଦ ଗୁଡ଼ିକ ତାତ୍ତ୍ୱିକ ଓ ବସ୍ତୁନିଷ୍ଠ ହୋଇ କବିତାରେ ବୌଦ୍ଧିକ ତନ୍ମୟତା ମଧ୍ୟ ସୃଷ୍ଟି କରନ୍ତି/ଏଭଳି ତନ୍ମୟତାରୁ ଯେଉଁ ଛନ୍ଦର ସୃଷ୍ଟି ହୁଏ ତାହା ତାଙ୍କର ସାଧ୍ୟାତୀତ ହୋଇପଡ଼ିବା ମଧ୍ୟ ବିଚିତ୍ର ନୁହେଁ । ତଥାପି ଏହା ପଛରେ ଥିବା ଆନ୍ତରିକତା ଓ ସମ୍ପର୍କରେ ନିବିଡ଼ତା ତାଙ୍କ କବିତାକୁ ବୌଦ୍ଧିକ ପ୍ରବଞ୍ଚନାରୁ ବିମୁକ୍ତ କରିବାରେ

କମ୍ ସହାୟକ ହୋଇନାହିଁ । ଯେପରି—'ମୋର ପ୍ରତିପକ୍ଷ ସହତ ବାଜି ରଖିବାପାଇଁ/ନିଜ ହାଡ଼ ଖଣ୍ଡକୁ ବି ପଶାକାଠି କରିପାରିନାହିଁ/ଶତାବ୍ଦୀର ସଫଳ ବ୍ୟକ୍ତିଟିଏ ହେବାପାଇଁ/ମତେ ସେ ମନ୍ତ୍ରଣା ଆଉ ଚତୁରତା ଜଣା ନାହିଁ/ଅଥଚ ସବୁରି ସଙ୍ଗେ ମିଶି କେତେ କାନ୍ଧ ଲଗେଇନି/ନିଜେ ପୁଣି ଏକା ଏକା କେତେ ନିଜ ଲୁହ ମୁଁ ପିଇନି ।' (ମୁହୂର୍ତ୍ତର ଶତାବ୍ଦୀ—ପୃ-୨୫) । ଏ ପ୍ରଚେଷ୍ଟାକୁ ହରିହରଙ୍କ ବ୍ୟକ୍ତିଗତ ଦୁର୍ବଳତା ବୋଲି କୁହାଗଲେ ଓ ତାହା ଆପାତତଃ ଯଥାର୍ଥ ମନେ ହେଲେ ହେଁ ଭାବର ଗତିରେ ଛନ୍ଦର ଧ୍ୱନିରେ ଏହା ଯେ ଆଉ ଏକ ଭାବଲୋକକୁ ଉତ୍ତୀର୍ଣ୍ଣ ହେବାର ପ୍ରୟାସ, ଏଥିରେ ସନ୍ଦେହ ନାହିଁ । ଏହି ପ୍ରୟାସ, ଆଧୁନିକ କାବ୍ୟ କଳାର ଯେ ଏକ ବୈଶିଷ୍ଟ୍ୟ ପୂର୍ଣ୍ଣ ସର୍ଜନଶୀଳତା, ଏଥିରେ ଦ୍ୱିରୁକ୍ତି ଥାଇ ନ ପାରେ । ହରିହର ମିଶ୍ରଙ୍କର କାବ୍ୟ ବ୍ୟକ୍ତିତ୍ୱକୁ ଥରେ ଚିହ୍ନଟ କରିପାରିଲେ, ତାଙ୍କ ମୌଳିକ କାବ୍ୟ ସ୍ୱର ସହିତ କାବ୍ୟ ଦୃଷ୍ଟିର ବ୍ୟାପକ ପରିଚୟ ଘଟିଥାଏ । ଫଳରେ ଜଟିଳ ଜୀବନାନୁଭୂତି ସରଳ ଭାବରେ ପ୍ରକାଶ କରିବାରେ ଶ୍ରୀ ମିଶ୍ରଙ୍କ କାବ୍ୟନିଷ୍ଠା ସମସ୍ତ ରହସ୍ୟବୋଧରୁ ସ୍ୱଷ୍ଟ ବାରି ହୋଇପଡ଼େ । ଯେପରି—

'ତମରି ଭିତରେ ଦିଶେ ସବୁ ମୁହଁ
ଲାଗେ ସତେ ଅତି ଆପଣାର
ନିଜର ପରିଚୟ ହଜାଇ ମୁଁ
ପାଲଟି ଯାଏ ପରିଚିତ ପରିଜନ ମୋର
ପାରିକର ଏ ଦୁସ୍ତର ଜନ୍ମ ଜନ୍ମାନ୍ତର
ତୁମରି ବୁକୁରେ ଥାଏ
ମହକ ମୁଁ ଖୋଜୁଥାଏ
ଦୀର୍ଘ ମନ୍ୱନ୍ତର ଡେଇଁ
କାଳ କାଳାନ୍ତର ।' (ପ୍ରାର୍ଥନା: ବାହୁଡ଼ା ବେଳର—ପୃ-୧୦୧)

ପରିଶେଷରେ ଏତିକି କୁହାଯାଇପାରେ ଯେ, ଶ୍ରୀ ମିଶ୍ରଙ୍କର ସ୍ୱକୀୟ କାବ୍ୟଶୈଳୀ, ନିଜସ୍ୱ ଦୃଷ୍ଟିଭଙ୍ଗୀ ଏବଂ ଜଟିଳ ଜୀବନାନୁଭୂତି ଆଦି ପ୍ରତ୍ୟେକ କ୍ଷେତ୍ରରେ ଆଧ୍ୟାତ୍ମିକ ତଥା ରହସ୍ୟମୟ କାବ୍ୟ ଲକ୍ଷ୍ୟର ପରିଣତ ପରିପ୍ରକାଶ ଘଟିଛି, 'ଭିତିରି ଚନ୍ଦନ' କାବ୍ୟ ଗ୍ରନ୍ଥରେ । ସାମ୍ପ୍ରତିକ ଓଡ଼ିଆ କବିତାର ଅଭିବୃଦ୍ଧିରେ ଏହି ସଙ୍କଳନଟିର ସ୍ଥାନ ସ୍ୱତନ୍ତ୍ର ।



ଗୁହାଳ ପଡ଼ା, ନିମାପଡ଼ା

('ଇସ୍ତାହାର'ରେ ପ୍ରକାଶିତ)

କବିପତ୍ର
କଟକ
ତା. ୧୫.୧୧.୯୦

# — ଚାହାଣି ମଣ୍ଡପ —

ପ୍ରିୟବନ୍ଧୁ,

ତୁମ୍ଭର କବିତା ସଙ୍କଳନ ଚାହାଣି ମଣ୍ଡପ ଆଖି ଆଗରେ ରଖିରଖି ଏତେ ଦିନଗଲା । ସତେ ଯେମିତି କବିର ଭିତରକୁ ପ୍ରବେଶ କରିବାକୁ ମୁଁ ଏ ଯାବତ୍ ବାଟ ଟିଏ ହିଁ ଖୋଜୁଥିଲି ତଥାପି ଜାଣେନା ଠିକ୍ ବାଟଟି ପାଇଛି କି ନାହିଁ ।

ଯାହା ଦେଖିଲି– ତୁମ ଭିତରେ କବିତା ପରିପୂର୍ଣ୍ଣ ହୋଇ ରହିଛି । ତୁମେ ତ ସଦାସର୍ବଦା ଉନ୍ମୁଖ, ଜାଗ୍ରତ, ବିରଳ ଅନୁଭବ ଲାଗି ବ୍ୟାକୁଳ ଏବଂ ଅସହିଷ୍ଣୁ (‘ଅସହିଷ୍ଣୁ ସେ ଯେ ବଡ଼’ – ‘ଚମ୍ପୂ’) । ଆଉ ସେଇ ଆକାଂକ୍ଷାରେ ବଂଶୀର ନାନା ରନ୍ଧ୍ରରେ ସ୍ୱନିତ, ନାନା ସନ୍ଧିରେ ଅନୁପ୍ରବେଶ ପାଇଁ ପିପାସୁ ।

କବିତାଗୁଡ଼ିକ ପଢୁଥିଲାବେଳେ ତୁମେ ଗ୍ରହଣ କରିଥିବା କାନ୍‌ଭାସର ଜଟିଳତା ଓ ରଙ୍ଗଚର୍ଯ୍ୟାର ଜଟିଳତା ଅନୁଭବ କଲି । କାରଣ- ଅନେକ କ୍ଷେତ୍ରରେ କବି ସମ୍ମୋହିତ, ଅତୀତ ସହିତ ବନ୍ଧା, ଆଚରିତ ସଂସ୍କାର ସହିତ ଛନ୍ଦା, ଯେଉଁଟା ବେଳେବେଳେ ଜଂଜିର ପରି କାମ କରିଛି । ସମ୍ପର୍କ କାଟିଦେବାକୁ କବିଙ୍କର ଇଚ୍ଛା କିନ୍ତୁ ମୁହଁ ମୁଲାଜ୍‌ରେ କିଛି କାଟି ପାରୁନାହାନ୍ତି, ଯନ୍ତ୍ରଣାରେ ଛଟ୍‌ପଟ୍ ହେଉଛନ୍ତି । ମୁଁ ବୁଝିପାରୁଚି ତୁମର ମାନସିକ ଅବସ୍ଥା ।

“ଖାଲି ତୁମେ ଶୂନ୍ୟ ହୋଇ ରହିଥାଅ
ଆଉ ଅଦୃଶ୍ୟ ହୋଇ
ମୋର ଲୁହ-ଭିଜା ଅକ୍ଷର
ରହିଯାଉ...” (ପୃ-୩୩-ଭଳି ଆକୁଳତାରୁ)

କିନ୍ତୁ ବନ୍ଧୁ ତୁମ ଭିତରେ– 'ସତ୍ୟର ଉପଲବ୍ଧି ଛୁଆଁଇ ଚାଲିଯାଇଥିବା ଶ୍ରମଣ' – ବାସ୍ତବରେ ରହିଯାଇଚି । ସେ ହିଁ ତୁମକୁ ଥରକୁଥର କବି କରିଚି । ଅବଶ୍ୟ କବିତା ଗୁଡ଼ିକ ପଢ଼ିବା ବେଳେ–ପୃଥିବୀର ବହୁ ସାଧାରଣ ଦୃଶ୍ୟ ପ୍ରତି ତୁମେ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବ– ଯେପରି 'ଡଙ୍ଗା ଉପରେ ଶିଶୁଟିଏ/ ବେଲୁନ୍ ଉଡାଏ' (ପୃ-୨୫) କିନ୍ତୁ ଅଧିକାଂଶ ଦୃଶ୍ୟକୁ 'ଅଦୃଶ୍ୟ' ସହିତ ଯୋଡ଼ି ଦେବା ତୁମର ସ୍ୱଭାବ ଓ ରୁଚି । ଯେମିତି 'ମାଆ ସବୁଦିନ ପରି ବସୁଥିଲେ ବାରନ୍ଦାରେ ପାଉଁଶ କୁର୍ଚିରେ' (ପୃ-୬୧) ।

କିନ୍ତୁ ମୁଁ ଯାହା ଭାବୁଚି ତୁମ କାବ୍ୟନାୟକ ଅସଲରେ ଜଣେ ସାଂସ୍କୃତିକ ବ୍ୟକ୍ତି ଓ ପ୍ରେମିକ । ସାମାଜିକ ପୀଡ଼ନ ପ୍ରତି ନଜର ଥାଇ ମଧ୍ୟ ନଜର ନାହିଁ, ଯଦିଓ ପ୍ରତ୍ୟେକ କରୁଣ ଓ ଅସହଜ ମାନସିକ ଅବସ୍ଥା ପ୍ରତି ତୁମର ସହାନୁଭୂତି ଅଛି, ତତ୍‌ଜନିତ ମନସ୍ତାପ ଓ ପୀଡ଼ା ମଧ୍ୟ ଅଛି । 'ଯେପରି-କନ୍ୟାର ଗର୍ଭୋଦୟ ହେଲା ନାହିଁ କଣ୍ୱ ଆଶ୍ରମରେ/ଅଣ୍ଡାକ୍ଷୀର ଗ୍ଲାସ ଭଳି ଡ୍ରେସିଂ ଟେବୁଲ ପାଖରେ/ ବସି ରହିଲା ଝିଅ ଘଣ୍ଟା ଘଣ୍ଟା ଶୟନ କକ୍ଷରେ' (ପୃ-୬୦) । କିନ୍ତୁ ତୁମର କାବ୍ୟ ନାୟକ ଜଣେ ଉତ୍ତରିତ ବ୍ୟକ୍ତି । ଦୃଶ୍ୟ ଭିତରେ ସେ ଅଦୃଶ୍ୟକୁ ଖୋଜୁଥାଏ, ବିଶ୍ୱାସର ସହିତ– 'ହଜିଥିବା ଧୋବଲା ଗାଇଟି ତା'ର ଜହ୍ନରାତି ନପାହୁଣୁ/ ଫେରିଆସିବ...' (୭) 'କାଲି ପ୍ରଭାତରେ/ଅଭିଷେକ ହେବ ନିତ୍ୟ ସ୍ୱରୂପର' (୨୦), 'ପ୍ରତିଥର ଆବିର୍ଭାବ/ ହେବ ତୋର ନୂଆ/ଗର୍ଭବତୀ ହଂସୀମାନେ ନେଉଥିବେ/ତୋଳି ତୋତେ ରତ୍ନ ପଲଙ୍କରେ' (ପୃ-୧୫) । ଏବଂ ସେ ସମ୍ପୃକ୍ତ ଓ ସମର୍ପିତ ପରି ସବୁବେଳେ ଆଚରଣ ପ୍ରଦର୍ଶନ କରିଚି । ଅବଶ୍ୟ, ଏ ତୁମର ଦେଖିବାର ଭଙ୍ଗୀ । ଏ ଭଙ୍ଗୀ କାରୁକାର୍ଯ୍ୟ ପୂର୍ଣ୍ଣ ହୋଇଛି ବୋଲି ମାନିବାକୁ ହେବ 'ମୂର୍ଚ୍ଛନାର ତଡ଼ିତ୍‌ଲତାରେ' 'ହସର ଧ୍ରୁବତାରା' ସରଳବଣୀ ଭଳି ଛାଇଙ୍କର ଲଙ୍ଗଳା ଛୁଆମାନେ' ରେ ତୁମ କାରୁକମର ଐଶ୍ୱର୍ଯ୍ୟ ଫୁଟି ଉଠିଛି । ଏଇ ସଙ୍କଳନରେ ଥିବା– 'ଶିଶୁର ଗ୍ରୀଷ୍ମକାଳ' ଏକ ସ୍ୱତନ୍ତ୍ର ଅନୁଭବର କବିତା, ବୋଧହୁଏ ତୁମ ଜଗନ୍ନାଥ ସଂସ୍କୃତି ସହିତ ତା'ର ସମ୍ପର୍କ ନାହିଁ କିମ୍ବା ସେ ଚେତନାର ଛାଇରେ ତାହା ଗଢା ହୋଇନି । ତେଣୁ ସେ କବିତାରେ ଏକ ସାଧାରଣ ଭଲଲାଗିବା ଅଛି । 'ସେ କୁକୁର ନୁହେଁ ଯେ ଗେଲ ହେବ/ ଦାଦାଙ୍କର ସ୍ୱର ବି ରେଡ଼ିଓଠୁ ବଡ଼ ଭାରି' x x ବା 'ସରୁସରୁ ଲମ୍ବାଲମ୍ବା ଜିଭ ସବୁ ଛାଇର'– ଭାରି ଚମତ୍କାର । ତୁମ ଭିତରେ ଶିଶୁଟିଏ ତ ନିଶ୍ଚୟ ଅଛି, ଯଦିଓ ତମେ ତାକୁ ସ୍ୱାଧୀନତା ଦେବାକୁ ଇଚ୍ଛା କରିନ । ପ୍ରଜ୍ଞା ଓ ପ୍ରତିଜ୍ଞା ବଳରେ ତାକୁ ଚପେଇ ରଖିଚ । ଏଇଟା ଅନ୍ୟାୟ ନୁହେଁକି ?

ଜଣେ ପ୍ରାଜ୍ଞ ମଣିଷ ଭାବରେ ତୁମର ଅଭିଳାଷ–

'ତୁମ ସଙ୍ଗେ ଇଚ୍ଛା ମୋର ଜଳୁଥାଉ ଅଖଣ୍ଡ ଜ୍ୟୋତିରେ/ ମିଶିବାକୁ ଶକ୍ତିମୟ ଚେତନାର ଦିବ୍ୟ ସଂହତିରେ' (୮୯) ତୁମର ଅନ୍ୟାନ୍ୟ ସମସ୍ତ ବାସନାକୁ ଦମିତ କରି

ରଖିଚି ଭଳି ମନେହେଲା । ତୁମ୍ଭର କାବ୍ୟ ନାୟକ ସମୟ-ସମୟରେ ଭୟଭୀତ ବ୍ୟକ୍ତି ପରି ଘୋଷଣା କରିବା ଦେଖାଯାଏ– 'ଚାରି ଦିଗକୁ/ଖବର ଦିଅ ଆମେ ଏପରି ଅତଳ ଗହ୍ୱରରୁ ଆଉ ଉଠି ପାରିବୁନି ଏଥର' x x 'କାଲି ସକାଳ ହେବ କି ନହେବ/ଥିବ କି ନଥିବ କିଏ' (ପୃ-୭୧) 'ବେଠି ଖଟିଯାଅ ଚାଲ/ଆଗକୁ କିଛିହିଁ ନାହିଁ/କିଛି ଆଶ୍ରା ନାହିଁ' (ପୃ-୩୦) ଅବଶ୍ୟ ଏଇଟା ତାର ପ୍ରଧାନ ବକ୍ତବ୍ୟ ନୁହଁ । ସେ ଏକ ଅପାର୍ଥିବ ଆସ୍ୱାଦନ ପାଇଁ ଅପେକ୍ଷା କରିଥିବା ନାୟକ ଯଥା–

'ଥରେ ସବୁ ସମର୍ପି ଦେଲାପରେ
ଆଉ ଥିଲି କେଉଁଠି ମୁଁ ନିଜେ
ଆଉ ଥିଲା କଣ ମୋର
ଅଥଚ ସବୁଠି ଥିଲା ସେ
ସବୁଠି ମୁଁ ଥିଲି ବୋଲି' (ପୃ-୩୧) ।

['ଚାହାଣି ମଣ୍ଡପ'ରେ ଯେଉଁ କାବ୍ୟସତ୍ତା ଅଛି ତାହା ବେଶ୍ ରମଣୀୟ । ମେଟାଫିଜିକ୍ସରେ ଆଗ୍ରହୀ ପାଠକକୁ ଆହୁରି ଭଲ ଲାଗିବ । ସାଂସ୍କୃତିକ ମନ୍ତବ୍ୟ ଓ ବିଦ୍ରୂପ ଭଙ୍ଗୀଗୁଡ଼ିକ ମଧ୍ୟ ବେଶ୍ ଆଧୁନିକ । ଏଥିରେ ଯେଉଁ ଭୂମି ଓ ଆକାଶର ଛବି ତୁମେ ଦେଇଚ ସେସବୁର ଉପାଦାନ ଓଡ଼ିଆଙ୍କ ଆଚରିତ ସଂସ୍କୃତି ସମ୍ମତ । ସେ ସବୁର ଐତିହ୍ୟର ଐଶ୍ୱର୍ଯ୍ୟ ପ୍ରତି ତୁମ୍ଭର ମୋହ ଏବଂ ସେଇ କାରଣରୁ ଲବ୍‌ଧ 'ଅହଙ୍କାର' ମଧ୍ୟ ପ୍ରଜ୍ଞାପିତ ହୋଇଚି । କିନ୍ତୁ ତା ଭିତରେ ଯେଉଁ ସ୍ୱଚ୍ଛ ଜୀବନ ନଈଟି ବହିଯାଇଚି ତାର ଗତିପଥ ନିର୍ଦ୍ଧାରଣ କରିବା ପାଠକଙ୍କ ପକ୍ଷରେ ସହଜ ହେବନାହିଁ ।] ତେବେ ସାଧାରଣ ପାଠକଟିଏ– 'ମୁଁ ବି ସବୁ ନାରୀ ଭଳି/ଖୋଲିଦିଏ କିଳିଣି କବାଟ'– ରୁ କାହିଁକି ଆନନ୍ଦ ନପାଇବେ ।

ଶେଷରେ କବିତା ଗୁଡ଼ିକର ଭାଷାଗତ ସାଫଲ୍ୟ ପାଇଁ ବଧେଇ ଜଣେଇ ରହୁଚି ।

॥ ଇତି ॥

ସ୍ନେହାନୁବନ୍ଧ
**ପ୍ରସନ୍ନ କୁମାର ମିଶ୍ର**
ଦର୍ଜୀ ସାହି, କଟକ-୨



# ପ୍ରାର୍ଥନାର ଧୂଆଁ ଆଉ ମେଘର କପାଳରେ ଅସ୍ପଷ୍ଟ ଚିତ୍ରାଙ୍କନ : ଭିତିରି ଚନ୍ଦନ

*ତୀର୍ଥାନନ୍ଦ ମିଶ୍ର*

'ଭିତିରି ଚନ୍ଦନ' ଓଡ଼ିଶାର ସୁପରିଚିତ କବି ଶ୍ରୀ ହରିହର ମିଶ୍ରଙ୍କର ସଦ୍ୟତମ କବିତା ସଙ୍କଳନ । ପଇଁଚାଳିଶ ଗୋଟି କବିତାରେ ସଜ୍ଜିତ ଏଇ ପୁସ୍ତକଟି ୧୯୯୪ ମସିହାରେ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସଙ୍କ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି । ଏହି 'ସଙ୍କଳନର ଅଧିକାଂଶ କବିତା ପୂର୍ବରୁ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି କବିତାମାନଙ୍କର ଭାବଭୂମି ଭିନ୍ନ ଭିନ୍ନ ଅନୁଭୂତିସଞ୍ଜାତ ଏବଂ ସେହି ସମସ୍ତ ଚମତ୍କାର ଉପଲବ୍ଧିମାନଙ୍କର ସାରସ୍ୱତ ରୂପାୟନ ଅତି ଦକ୍ଷ ଭାବରେ କରାଯାଇଛି ଏହି କବିତା ମାନଙ୍କରେ । ସଙ୍କଳନଟିର ମୁଖ୍ୟ ସ୍ୱର ହେଉଛି ଜୀବନର ଅମାପ ଦୁଃଖ ଭିତରେ ସନାତନ ସୁଖବୋଧର ସନ୍ଧାନ । ଏ ସୁଖ କେତେବେଳେ ଆଶା ଓ ଆଶ୍ୱାସନା ମଧ୍ୟରେ ବିମ୍ବିତ ତ କେତେବେଳେ ଏକ ଉର୍ଦ୍ଧ୍ୱାୟିତ ଆଧ୍ୟାତ୍ମିକ ଅନୁଭବ ଭିତରେ ଅନୁରଣିତ । ଆଦିମ କାଳରୁ ଅଦ୍ୟାବଧି ପୃଥିବୀର ପ୍ରାୟ ପ୍ରତିଟି କବି ଜୀବନର ଦୁଃଖବୋଧକୁ ରୂପାୟନ କରିଛନ୍ତି ନିଜ ନିଜ କାବ୍ୟ କବିତାରେ । କେହି ବା ଦୁଃଖକୁ ଆପଣେଇ ନେଇଛନ୍ତି ଶେଷଧାପ ପର୍ଯ୍ୟନ୍ତ, କେହି ବା ଦୁଃଖ ବିରୁଦ୍ଧରେ ସଂଗ୍ରାମ କରି ଇନ୍ଦ୍ରିୟସର୍ବସ୍ୱ ଅଥବା ଅତିନ୍ଦ୍ରିୟ ସୁଖଲାଭ ପାଇଁ ପ୍ରୟାସ କରିଛନ୍ତି । କବି ଶ୍ରୀଯୁକ୍ତ ମିଶ୍ର ସଙ୍କଳନର ଅଧିକାଂଶ କବିତାରେ ଆପଣାର ଦୁଃଖବୋଧର ନିର୍ମୋକକୁ ଅତିକ୍ରମ କରିଛନ୍ତି । ଫିଙ୍ଗି ଦେଇଛନ୍ତି–ଆବରଣ ଦେହର, ଆପଣେଇ ନେବା ପରେ 'ଭିତିରି ଚନ୍ଦନ'ର ସୁଶୀତଳ ଅନୁପମ ଆଧ୍ୟାତ୍ମିକ ଉପଲବ୍ଧି ।

ଆପଣାର ବ୍ୟକ୍ତିକ ବେଦନାବୋଧ ଭିତରେ ନୁହେଁ, ପୃଥିବୀର ଦୁଃଖ କଷଣରେ ଅହରହ ଆପ୍ଲୁତ ଥାଏ କବିର ହୃଦୟ । ସ୍ୱର୍ଗାରୋହଣ ପର୍ବର 'ମୂକ ଧର୍ମରାଜ' ମାନଙ୍କ ପ୍ରତି ତାର ଥାଏ ଅସୀମ ଦରଦ । 'ରାମ ରାଜ୍ୟର କଳ୍ପିତ ସୁଖ ଭିତରେ ସେ ଶୁଣିପାରେ 'ପାତାଳ ଗମନ'ର ବିଷାଦ ବତୁରା କାହାଣୀ । ସେ ଉପଲବ୍ଧି କରେ ଯେତେ ସାତ୍ତ୍ୱିକ ଭାବ ବାହାରେ ପ୍ରକାଶ କଲେ ମଧ୍ୟ 'ନିଷାଦ ବୃତ୍ତିର'ର ବିଲୋପ ହୃଦୟ ଭିତରୁ କରିବା ସମ୍ଭବ ନୁହେଁ । ତେଣୁ

ଏ ଦୁଃଖ ପ୍ରତିକାରହୀନ ଆଉ 'ମାରଣାସ୍ତ୍ର ସମ୍ମୁଖରେ ବ୍ୟର୍ଥମଣିଷର ଚିତ୍କାର' ପରି ମୂଲ୍ୟହୀନ ଏବଂ ବେପାରୀଙ୍କ ଶୀକାରୀ ଜାଲରୁ ଆଗାମୀ ଯୁଗର 'ଶିଶୁ ସିଂହର' ଉଦ୍ଧାର ମଧ ଅସମ୍ଭବ । ବଞ୍ଚିବାର ସକଳ ସମ୍ଭାବନାମୟ ଭୂଶେତର ଏ ଗଜା ମରୁଡ଼ି ଦୃଶ୍ୟର ଚିତ୍ର କବି ଅତି ଚମତ୍କାର ଭାବେ ଆଙ୍କିଛନ୍ତି ଏଇମିତି, 'ଆଜି ମାଟିକୁ ଦେଖ, ତା'ର ବିହନ ପଚି ଯାଉଛି/ ବୃଥା ହୋଇ ଯାଉଛି/ ବିହନକୁ ଦେଖ ତା' ପାଇଁ ମାଟି ନାହିଁ । ସେ ବ୍ୟର୍ଥ ହୋଇ ଯାଉଛି । ('କୋଇଲି ନୁହନ୍ତି କାଠ ହଣା') । ତେଣୁ ଗଣତନ୍ତ୍ର ପ୍ରତି ଆସ୍ଥା, ଉଦାର ସହାବସ୍ଥାନକ୍ଷମ ମାନବ ସମାଜ ଗଠନ ପ୍ରତି ସ୍ୱପ୍ନ କବିଙ୍କର କ୍ରମେ କ୍ରମେ ମଉଳି ଯାଉଛି । ଗଣରାଜ୍ୟ, ବା ଗଣତନ୍ତ୍ର କହିଲେ ସେ ବୁଝି ବସିଛନ୍ତି କେତେ 'ସ୍ଥୂଳତା' ଓ 'ପୃଥୁଳତା' ଭଳି ନିରର୍ଥକ' ଶବ୍ଦମାନଙ୍କୁ । ବିଜ୍ଞାନର ଜୟଯାତ୍ରା ଉପରେ ଆଉ ଆସ୍ଥା ନାହିଁ ତାଙ୍କର । ଏ ସମ୍ପର୍କରେ ନିଜ ପ୍ରତି ତାଙ୍କର ଏକ ଅସମାହିତ ପ୍ରଶ୍ନ 'ଆଉ କେତୋଟି ମୁର୍ଦ୍ଧାର ଉପରେ/ ପରୀକ୍ଷା ଅଛି ବିଜ୍ଞାନର ('କୋଇଲି ନୁହଁନ୍ତି କାଠହଣା...')– ଏ ପ୍ରଶ୍ନ ଅଧିକ ତୀବ୍ର ହୋଇ ଉଠିଛି 'ମୂହୂର୍ତ୍ତର ଶତାବ୍ଦୀ' କବିତାରେ, କବି ଯେତେବେଳେ 'ମନ୍ଦ ଦିନକୁ' ସାମ୍ନା କରି ବସିଛନ୍ତି ଏବଂ ନେତା ଓ ଜନତାଙ୍କ ପରି ବଧୀର 'ଗଣତନ୍ତ୍ର'କୁ ବାଧ ହୋଇ ଆପଣାର କରି ବସିଛନ୍ତି । ପ୍ରଥମୋକ୍ତ କବିତାର 'ଅପସଂସ୍କୃତି' ଏଠି ବି ବଙ୍ଗୋପ୍ଳୋଳ ଉପସାଗରୀୟ ବାୟୁମଣ୍ଡଳରେ କଳଙ୍କି ଲଗା ଝର୍କା ଦୁଆର ଓ କଡ଼ି ବର୍ଗାର ରୂପ ନେଇଛି । ମାତ୍ର ଏ ସବୁ ସତ୍ତ୍ୱେ ଜୀବନ ପାଇଁ ଯେଉଁ ଶେଷତମ ସମ୍ଭାବନାଟି ଅଛି ତାହା ହେଉଛି ମଣିଷ ହୃଦୟ, ଯାହା ପୂର୍ବଭଳି ଅପରିବର୍ତ୍ତିତ ରହିଛି ପ୍ରସାରିତ ହୋଇ ରହିବାରେ । (ଏ ଯାବତ/ ଭାଙ୍ଗି ଯାଇନି ମୋର ହୃଦୟ ବରଂ ବଡ଼ଦାଣ୍ଡ ଭଳି ଖୋଲା ଅଛି), ଏହା ସତ୍ତ୍ୱେ ମଧ ପରିକଳ୍ପିତ ରାମ ରାଜ୍ୟର 'କଳ ଇଞ୍ଜିନ' ଚାଲି ପାରୁନାହିଁ । ତେଣୁ ରେରେ କାରର ହ୍ରେଷା ରାବରେ ପ୍ରମତ୍ତ ଥିବା ସମାଜବାଦ ଆଉ ବିଜ୍ଞାନ ପ୍ରତି କବିଙ୍କ ବ୍ୟଙ୍ଗବାଣର ଅନ୍ତନାହିଁ, 'ଏଇ ପୃଥିବୀରେ/ ମୂଷା ମଧ ଆଜିକାଲି ସମାଜବାଦର ହାତୀଟିଏ ପ୍ରସବ କରିବ/ ସବୁ କିଛି ଅଲୌକିକ ବିଜ୍ଞାନ ହିଁ ପ୍ରକଟ କରିବ/ ପାରିଦ ତ ତୁଳସୀକୁ ନିଳୁଆତି ସଙ୍ଗେ ଛନ୍ଦିଦେବ/ କିବା ଷଠୀ ଓଷାରେ ବାଉଁଶ ଓଲୁଅ, ବଣସାରୁ, ବଜ୍ରମୂଳୀ, କଣ୍ଟେଇ/ ସହିତ ସହକାରକୁ ଏକାଠି କରି ଝିଙ୍ଗି ବାଡ଼ିଆ କରିବ ।

ଜନ୍ମିବାଠାରୁ ଏ ପର୍ଯ୍ୟନ୍ତ ବଞ୍ଚି ଆସିଥିବା ପୁଣି ଭବିଷ୍ୟତ ପାଇଁ ଅମାପ ଆଶା ବୋଧ ସଞ୍ଚୟ କରି ରଖିଥିବା ଜୀବନଟି ପାଇଁ କବିଙ୍କର ତେଣୁ ଏହି 'ମନ୍ଦ ଦିନ' ମାନଙ୍କର ସମ୍ମୁଖୀନ ହେଲାବେଳେ ଚିନ୍ତାଗ୍ରସ୍ତତାର ଅନ୍ତ ନାହିଁ । ଏ ପର୍ଯ୍ୟାୟରେ ଆଶା ଅପେକ୍ଷା ନୈରାଶ୍ୟର ସ୍ୱର ହିଁ ସ୍ପଷ୍ଟ । ଏକ ପରିପୂର୍ଣ୍ଣ ପୃଥିବୀ ଭିତରେ ଅବସ୍ଥାନ କରି ମଧ ସେ କାହାକୁ ଆପଣାର କରିପାରିନାହାଁନ୍ତି । ମାୟାବିଷ୍ଟ ପ୍ରେମର ଧ୍ୟାନସ୍ଥ ମୁଦ୍ରା ତାଙ୍କର କେବଳ ଯାହା ରକ୍ତାକ୍ତ ଏବଂ ବେଦନାକ୍ତ ହୋଇଯାଇଛି । ଅନେକ ସହ ମିଶିବା ଓ ପରେ ପରେ ହରାଇ ବସିବାର ଅହରହ

ଦୁଃଖ ହିଁ ତାଙ୍କର ଏ ମୁହୂର୍ତ୍ତରେ ବିଧି ଲିପି ହୋଇଯାଛି । ନା କୌଣସି ବାହାରର ପ୍ରତ୍ୟୟ ନା ଆତ୍ମବିଶ୍ୱାସ କେହି କବିଙ୍କୁ ଘାଟର ସନ୍ଧାନ ଦେଇ ପାରିନାହାନ୍ତି । ଏଇ ବ୍ୟକ୍ତିଗତ ନୈରାଶ୍ୟ ବୋଧର ବିବିକ୍ତ ପଙ୍କ୍ତି କେତୋଟି ଲକ୍ଷ୍ୟ କରନ୍ତୁ । 'ଛିନ୍ନମୂଳ ତାଳପତ୍ର ଭଳି/ ଅବା ଢୋକେ ପିଇ ଦଣ୍ଡେ ଜିଇ/ ଭାସି ଯାଉଥିବା ଦରମଲା ଜନ୍ତୁ ମୁଁ' । ('ଅସମ୍ଭବ ସମ୍ଭାବନା') । ଏ ଅବସ୍ଥାରେ ତେଣୁ ଅଶ୍ରୁ ମୁକ୍ତା ପାଲଟିବାରେ ଅବା ନିର୍ଜନତାର ଶାମୁକାରେ ସ୍ୱପ୍ନ ମୁକ୍ତା ଭଳି ବିସ୍ତାରିତ ହେବାର ଆଦୌ ସମ୍ଭାବନା ନାହିଁ । ଏକ ନିର୍ଦ୍ଦିଷ୍ଟ ଅନାକାଙ୍କ୍ଷିତ ଭବିତବ୍ୟ ଛଡ଼ା ତାର ଗତ୍ୟନ୍ତର ନାହିଁ । ଆଉ ଭଲ ମନ୍ଦ ବାଛି ବସିବାର ସ୍ୱାଧୀନତା ଟିକକ ନାହିଁ । ଆପଣାର ଇଚ୍ଛା 'ମତେ ଆପଣାକୁ ଚଳାଇ ନେବାର ସ୍ୱାତନ୍ତ୍ର୍ୟ ଟିକକ ନାହିଁ । ଆଦୌ ଚାହିଁ ନଥିବା, ଜୀବନାବଧି ଘୃଣା କରି ଆସିଥିବା ଉପାଦାନଟି ହିଁ ତାଙ୍କ ଶେଷ ଭାଗ୍ୟଫଳ ହୋଇ ଆସି ପହଞ୍ଚିଯାଇଛି । କାବ୍ୟ ପୁରୁଷର ଏହି ଆନ୍ତରିକ ବେଦନାବିଧୂରତାର ଚିତ୍ର ଏଇ ପରି 'ତା ପାଇଁ ଅନ୍ୟ ପନ୍ଥା ନାହିଁ, ଭଳ ଆଉ ମନ୍ଦ ନାହିଁ । ବାଛିବାକୁ କେବଳ ଗୋଟାଏ ସଢ଼ା ପୋଚା ନାରିକେଳ/ ଆଉ ଗୋଟାଏ ଫିମ୍ପି ମାରି ସାରିଥିବା ଶୃଙ୍ଖଳା ଖୁରୁଢ଼' ('ଗୁହାରିଆ') । ନିଜ ହାଡ଼ ଖଣ୍ଡକୁ 'ପଶାକାଠି'ରେ ରୂପାନ୍ତରିତ କରି ଶତାବ୍ଦୀର ସଫଳ ବ୍ୟକ୍ତି' ହେବାର ଗୌରବ ମଧ୍ୟ ସେ ହାସଲ କରିପାରିନାହିଁ । କାରଣ ଏକ ସାମୂହିକ ପ୍ରଗତିରେ ଆସ୍ଥାରଖି ଆସିଥିବା ସାମାଜିକ ବ୍ୟକ୍ତି ସତ୍ତାଟିଏ ସ୍ୱାର୍ଥ ଲିପ୍‌ସୁମାନଙ୍କର ଅନାକାଙ୍କ୍ଷିତ ମୂଷା ଦୌଡ଼ରେ ବହୁ ପଛରେ ପଡ଼ିଯାଇଛି । ଏହି ଅମାପ ବେଦନାବୋଧରୁ ମୁକ୍ତି ପାଇଁ କାବ୍ୟ ପୁରୁଷର ଶକ୍ତି ନାହିଁ । ଧର୍ମର ସମସ୍ତ ସାମ୍ପ୍ରଦାୟିକତା ମଧ୍ୟରେ, ଦେବାଳୟ ମସଜିଦ୍ ଗୀର୍ଜା ବା ଗୁରୁଦ୍ୱାର ସବୁଠାରେ ସେହି ଅନାକାଙ୍କ୍ଷିତ 'କୁହୁଡ଼ି'ର 'ଅସୁରୁଣୀ ବୁଢ଼ୀ'ର ରାଜତ୍ୱ ଅଙ୍କ ଜାରି ରହିଛି ଏବଂ ସମସ୍ତ 'ଧର୍ମଗୁଳା' ବା 'ଯେତେ ମତ ସେତେପଥ' ସବୁ କ୍ରମେ ନିରର୍ଥକ ହୋଇଯାଇଛି । ବଞ୍ଚିବା ପ୍ରତି ସମସ୍ତ ଆସ୍ଥା, ଜୀବନର ସମସ୍ତ ଆଶାୟିତ ଆବେଦନ କାବ୍ୟ ପୁରୁଷ ନିକଟରେ ହୋଇ ଉଠୁଛି ନିରର୍ଥକ । 'ନିଃସଙ୍ଗ ସେନାପତି'ର ନିରୂପାୟତା ମଧ୍ୟରେ କବି ଏହି ହା-ହୁତାଶପଣର ଏକ ଚମତ୍କାର ଚିତ୍ର ଆଙ୍କିଛନ୍ତି କବିତାଟିରେ ('ଦେବଶିଶୁ') । ଆପଣା ଭିତରେ ଆପେ କୁହୁଳୁଥିବା ଏଇ କାବ୍ୟ ପୁରୁଷର ବାହାରେ ଭେକ କିନ୍ତୁ ଅତୀବ ଆକର୍ଷଣୀୟ । ନିଜର ଅମାପ ଦୁଃଖବୋଧ ଏବଂ ଅସହଜ ଏକାକୀ ପଣ ସତ୍ତ୍ୱେ କେବେ ସେ ବାହାରକୁ ପ୍ରକାଶ କରାଇଦେଇନି ତାଙ୍କ ଅସଫଳ ବ୍ୟକ୍ତି ସତ୍ତାକୁ, ବରଂ କଇଁଚ ପରି ସମାହିତ ହୋଇଯାଇଛି ଆପଣାର ଖୋଳପାରେ । ବାହାରେ ନିଜ ନିନ୍ଦାଳିଆ ବ୍ୟକ୍ତିତ୍ୱକୁ ପ୍ରଦର୍ଶନ କରିବାରେ ଆପଣାର ଚତୁରତାକୁ ପ୍ରକାଶ କରିଛି ଏବଂ ଏଥିପାଇଁ କିଛିଟା ଆତ୍ମସନ୍ତୋଷ ମଧ୍ୟ ପାଇଛି । ମାତ୍ର ଆତ୍ମ ସମୀକ୍ଷାର ଘାଟି ପାର ପର୍ଯ୍ୟାୟରେ ତାର ଭିତରର ଅସଫଳତା ହିଁ ସ୍ପଷ୍ଟ ହୋଇ ଉଠିଛି । କବି ଚେତନାରେ ରୂପାୟିତ ହୋଇ ଉଠିଥିବା ଚିତ୍ରଟି ଏଇମିତି, 'ନିଜେ ହିଁ ନିଜର ବିଚାରପତି/

ସବୁକାଟି ସବୁଠୁ କଟି ଆସିଥିବା ମଣିଷଟି/ ନିଜକୁ ଓଲାରି ବିଦାରି ସବୁ ଆବରଣ ଖୋଲି/ ବସିଛି ପିତଳ ପ୍ରତିମା ପରି ଖଟୁଲିରେ... ନଗ୍ନ କଣ୍ଠେଇଟି ('ବେଶବଦଳ') । ଏହି 'ନଗ୍ନ ପ୍ରତିମା' ତାକୁ ସଚେତନ କରି ଦେଇଛି ଯେ ଜୀବନରେ ବାଲ୍ୟ ଏବଂ ଯୌବନ ପରି ବାର୍ଦ୍ଧକ୍ୟ ଅନିବାର୍ଯ୍ୟ, ଜୀବନର ଉଜ୍ଜ୍ୱଳତମ ଦିଗ ଯାହା କବି ''ଅକ୍ୱାରିଆମ୍‌ର ମାଛ' ପ୍ରତୀକଟିରେ ଉତ୍ତୀର୍ଣ୍ଣ କରିଛନ୍ତି ଦିନେ ନା ଦିନେ ବାର୍ଦ୍ଧକ୍ୟର ବିଷାଦିତ ବଉଦ ଭିତରେ ତମୋଗ୍ରସ୍ତ ହୋଇଯିବ । ଏହାର ସ୍ୱଷ୍ଟ ଉଚ୍ଚାରଣ କବି ଏହି କବିତାଟିରେ କରି ବସିଛନ୍ତି ଏବଂ ଏ ପର୍ଯ୍ୟନ୍ତ ନିଜେ ବୋଲି ପ୍ରତିଭାତ ହୋଇ ଆସୁଥିବା ବ୍ୟକ୍ତିସତ୍ତା ମଧ୍ୟରୁ ପ୍ରତ୍ୟେକଟି ବ୍ୟକ୍ତି ସତ୍ତାକୁ ଆବିଷ୍କାର କରି ବସିଛନ୍ତି । ଏହି ଉପଲବ୍‌ଧିର ଏଇ ପୃଥକ୍ ଦିଗ ଫିଟିଯାଇଛି ବରଂ ନିଜେ ନିଜ ଭଳି କବିତାରେ କାବ୍ୟ ପୁରୁଷ ଆପଣାର ବନ୍ଧନହୀନ ସ୍ୱାଧୀନ ସତ୍ତାକୁ ଏକ ବିଶେଷ ସ୍ଥିତିରେ ଉପଲବ୍ଧି କରି ବସିଛି । ପାଇବା ଏବଂ ହରାଇବାର ସାମୟିକ ଉତ୍ତେଜନା ମଧ୍ୟରେ ଅବିଚଳିତ ତାର ଆତ୍ମସତ୍ତା କେତେବେଳେ ବି 'ନିଜପାଖ'ରେ ଅର୍ଥାତ ମୋହ ଗ୍ରସ୍ତ ଇନ୍ଦ୍ରିୟ ସର୍ବସ୍ୱତା ଭିତରେ ମଗ୍ନ ହୋଇଯାଇନାହିଁ ବରଂ ନିଜର ସ୍ୱତନ୍ତ୍ର ତଥା ପୃଥକ୍ ସ୍ଥିତିକୁ ଅବ୍ୟାହତ ରଖିପାରିଛି ଏବଂ କ୍ରୀତଦାସ ହେବାର ଅନ୍ଧ ନିମ୍ନଗାମୀ ସମର୍ପଣ ପ୍ରବୃତ୍ତିକୁ ଯୁଗେ ଯୁଗେ ଅସ୍ୱୀକାର କରି ଆସିଛି ।

ଜୀବନର ସମସ୍ତ ଯନ୍ତ୍ରଣାର ଅନୁଭୂତି ସତ୍ତ୍ୱେ କାବ୍ୟ ପୁରୁଷର ଜୀବନକୁ ଜୀଇଁବାର ସ୍ପୃହା କିନ୍ତୁ ଅଦମ୍ୟ । ଏଇ ସ୍ପୃହାର ଅରୁଣାୟିତ ଝଲକ କେତେବେଳେ ସେ ପ୍ରକୃତିରୁ ସଂଗ୍ରହ କରି ବସନ୍ତି ତ କେତେବେଳେ ଇପ୍‌ସିତା ରମଣୀର ପ୍ରେମରୁ ସଂଗ୍ରହ କରି ବସନ୍ତି । ଅବଶ୍ୟ ଏ ଆସ୍ପୃହା କେବଳ ଭାବନାର ଚୌହଦୀରେ ସୀମିତ । 'ସୁନ୍ଦରଗଡ଼ ଏକ ସୃଜନ ଅନୁଭବ' କବିତାରେ କବି ପ୍ରକୃତିର ମଧୁମୟ ମଧୁଶାଳାରେ ନିଜର ଅବଶିଷ୍ଟ ସ୍ୱପ୍ନିଳ ଆୟୁଷର ଆସନକୁ ସାମ୍ନାକରି ବସିଛନ୍ତି । 'ପାଞ୍ଚୋଟି ଫୁଲର ତୋଡ଼ା ଭଳି ପାଞ୍ଚୋଟି ଅକ୍ଷରରେ ସୁନ୍ଦରୀ'ଟିଏ ହୋଇଯାଇଛି ସୁନ୍ଦରଗଡ଼ କବି କଳ୍ପନାରେ । ଏ ପର୍ଯ୍ୟନ୍ତ ଏକ ବେଦନାକ୍ତ ଇସ୍ପାତି ଅନ୍ତର୍ଦାହ ଯାହା କାବ୍ୟ ପୁରୁଷର ବଞ୍ଚିବାର ସମସ୍ତ ସୁକୋମଳ ତନ୍ତୁକୁ ଗୋଟାପରେ ଗୋଟା କ୍ଷୟ କରି ଚାଲୁଥିଲା, ତାହା ପ୍ରକୃତିର ଏକ କମନୀୟ ସ୍ପର୍ଶରେ କାହିଁ କେଣେ ଲୁଚି ଯାଇଛି । ଏକ ଉପାୟହୀନ ଅଶ୍ୱସ୍ତିକର ମୃତ୍ୟୁମୟ ଭବିଷ୍ୟତକୁ ସାମ୍ନା କରିବାକୁ ପ୍ରସ୍ତୁତ ଥିବା ଭବତବ୍ୟଟି ପ୍ରକୃତିର ସୃଜନକ୍ଷମ ବିନ୍ଦୁ ବିନ୍ଦୁ ସଞ୍ଜିବନୀ ସୁଧାରେ ମଧୁମୟ ହୋଇଯାଇଛନ୍ତି; କାବ୍ୟ ପୁରୁଷ ପୁଣି ଥରେ ବଞ୍ଚିବାର ସ୍ୱାଦ ଉପଲବ୍‌ଧି କରିପାରିଛି । ପ୍ରକୃତି ପରି ଭାବମୟ ପାର୍ଥିବ ପ୍ରେମ ମଧ୍ୟ କାବ୍ୟପୁରୁଷକୁ କମ୍ ଉଚ୍ଚକିତ କରିନାହିଁ, କମ୍ ଜୀବନ ମନସ୍କ କରିନାହିଁ । 'ସେହିପରି ନଥାନ୍ତି କେହି' କବିତାରେ କବି ଏପରି ଏକ ଆଲୋକମୟୀ ପ୍ରଣୟିନୀର କଳ୍ପନା କରିଛନ୍ତି,

ଯିଏ କି ତାଙ୍କର ଜୀବନ ଧାରଣର ସମସ୍ତ ପ୍ରାତ୍ୟହିକ ଖସଡ଼ାକୁ କେବଳ ବିପର୍ଯ୍ୟସ୍ତ କରି ଦେଇନାହିଁ, ତାଙ୍କ ସମସ୍ତ ବେଦନାବୋଧକୁ ସନ୍ତପ୍ତ ବୈଶାଖ ବହ୍ନିକୁ ମଧ ଶ୍ରାବଣର ଶ୍ୟାମ ବାରିଧାରାରେ ଆର୍ଦ୍ର ଓ ଶୀତଳ କରିଦେଇଛି । ଏହି ଦୁର୍ଲଭ ଅଥଚ ଇପ୍‌ସିତ ପ୍ରିୟତମାଟି ପରମେଶ୍ୱରଙ୍କ ଭଳି କାବ୍ୟପୁରୁଷର ଓଠରେ ପ୍ରଶଂସିତ ହେବାର ସମସ୍ତ କଥାକୁ କେବଳ କୁହାଇ ଦେଇନାହିଁ, 'ଚୁମ୍ବନର ସ୍ୱର୍ଣ୍ଣ ମୁଦ୍ରାରେ ତାକୁ 'ରାଜ କବି'ର ସମ୍ମାନ ଦେଇଛି । ଏ ପର୍ଯ୍ୟାୟରେ ଏକ ଭାବ ବିହ୍ୱଳ ଆତ୍ମ ସମୀକ୍ଷାୟନ ମୁହୂର୍ତ୍ତରେ କାବ୍ୟ ପୁରୁଷ ତେଣୁ ସ୍ୱଗତୋକ୍ତି କରି ବସିଛି, 'ବସନ୍ତର ଏକାନ୍ତ ଶିମୁଳି ଫୁଲଟିଏ/ ମୁଁ, ମୋ ବୁକୁର ସୁନାକୂଅରୁ ସଞ୍ଚିତ ଶୀତଳ ଜଳ/ କେବଳ ପାନ କରନା, ସ୍ନାନ କର । ବିତାଇ ଦିଅ ସନ୍ତପ୍ତ ଅଣସର । ଏବଂ ଡ଼ାକି ଆଣ ଆଷାଢ଼, ଶ୍ରାବଣ ।'

କେବଳ ଉର୍ଣ୍ଣନାଭ ଭଳି ଇଚ୍ଛାଶକ୍ତି ବଳରେ ଆପଣା ଭିତରେ ନୁହେଁ, ବାହାର ପୃଥିବୀରେ ମଧ କାବ୍ୟ ପୁରୁଷ ଅହରହ ବିଚରଣ କରି ଚାଲିଛି । ଯେପରି ଯନ୍ତ୍ରଣାରୁ ମୁକ୍ତି ପାଇଁ ସ୍ୱପ୍ନ ଦେଖି ବସିଛି, ଏକ ଅନୁପସ୍ଥିତ ରାମ ରାଜ୍ୟର କଳ୍ପନାରେ ସେ ମଧ ବିମୋହିତ ହୋଇଯାଇଛି । ଲକ୍ଷ୍ୟ କରିବାର କଥା, ନୈରାଶ୍ୟ ନୁହେଁ ଏକ ଅଖଣ୍ଡ ଆଶାବୋଧ ହିଁ ତାର ସମଗ୍ର ସତ୍ତାରେ ପରିବ୍ୟାପ୍ତ ହୋଇଯାଇଛି । ପୃଥିବୀରେ ସରଳ ନିରୀହ ମଣିଷର ନ୍ୟାଯ୍ୟଦାବୀକୁ ଲୁଣ୍ଠନ କରୁଥିବା ତଥାକଥିତ ନେତା ଓ ଦେବତାମାନଙ୍କ ଅଧୋପତନର ସ୍ୱପ୍ନ ଦେଖିବା ପାଇଁ କାବ୍ୟନାୟକ ଏବେଠୁ ଆରମ୍ଭ କରି ଦେଇଛି । ଭୋକିଲା ଆଦିବାସୀମାନଙ୍କର ପ୍ରାପ୍ୟ ଯାହା କଳାହାଣ୍ଡି ଅଥବା ଆଫ୍ରିକାରେ ତଥାକଥିତ ନେତାମାନଙ୍କ ଦ୍ୱାରା ଅପହୃତ ହେଉଛି । ସେହି ନେତାମାନଙ୍କର ଦୁର୍ଗତିର ଚିତ୍ର କାବ୍ୟ– ନାୟକର ଦୃଷ୍ଟିରେ ଜଳ ଜଳ ହୋଇ ପ୍ରତିବିମ୍ୱ ହୋଇଯାଉଛି । ('କୋଇଲି ନୁହନ୍ତି' କାଠହଣା) ସେ ଦୃଢ଼ ବିଶ୍ୱାସ ସ୍ଥାପନ କରି ବସିଛି ଯେ ଦିନେ ନା ଦିନେ ଏହି ଅସୀମ କଳା ରାତିର ଅବସାନ ହେବ ଏବଂ ଧ୍ୱଂସର ଖତଗଦା ଉପରେ ସୃଜନର ବର୍ଣ୍ଣୋଜ୍ଜ୍ୱଳ ଶତଦଳ ବିକଶିତ ଉଠିବ । ଯୁଗ ଯୁଗରୁ ସେହି ସୃଜନର ସ୍ୱପ୍ନ ଦେଖି ଆସୁଥିବା ଏବଂ ପଚ଼ମାନ ସମାଜ ବ୍ୟବସ୍ଥା ଦ୍ୱାରା ବାରମ୍ୱାର 'ଅଜ୍ଞାନ' ଭାବେ ଭର୍ତ୍ସିତ ହୋଇ ଆସୁଥିବା ଅଗଣନ କବିମାନଙ୍କର ସ୍ୱପ୍ନର ସଫଳତା ନେଇ କାବ୍ୟ ନାୟକର ଆଉ କୌଣସି ସନ୍ଦେହ ନାହିଁ, 'ଅତି ଆପଣାର ଅତୀତର ପ୍ରସୂତି କକ୍ଷରେ/ ସୃଜନର ପରମ୍ପରା ବାରମ୍ୱାର ଦେବ ନବ ଜନ୍ମ/ ଶିଶୁଟିଏ ଅଜ୍ଞାନ କବିର ସ୍ୱପ୍ନଟିଏ/ ଧ୍ୱଂସର ଖତଗଦା ଉପରେ ପଡ଼ିଥିବା କଣ୍ଢେଇଟିଏ' ('ବର୍ଷାର ପୂର୍ବାପର') । ଏଥିପାଇଁ କାବ୍ୟ ପୁରୁଷର ଆପଣା ଭିତରେ ବିଶ୍ୱାସର ଅନ୍ତନାହିଁ । ସେ ଦୃଢ଼ତାର ସହିତ ଘୋଷଣା କରିଛି ଯେ ତା'ର ସ୍ପର୍ଶରେ ଦିଖଣ୍ଡ ହାଡ଼ରୁ ମଧ ସ୍ୱପ୍ନର ଝରଣା ଝରି ଆସିବ ଆଉ ଆକାଶ ଏବଂ ସମୁଦ୍ର

ଉଭୟ ନିଦର ଓଢ଼ଣା ଓ ମୁକ୍ତାର ବିଛଣା ପ୍ରସ୍ତୁତ କରିଦେବ । ସେହି ଦୂରନ୍ତ ଶିଶୁର ସ୍ୱପ୍ନରେ କାବ୍ୟ ନାୟକର ସମସ୍ତ ମୁହୂର୍ତ୍ତ ଉତ୍କଣ୍ଠା ପୂର୍ଣ୍ଣ ହୋଇଉଠିଛି ('ନଥିବା ଲୋକର କଥା') ।

ଆଶା ଓ ଆକାଶର ଏ ସମସ୍ତ ଛାଇ ଆଲୁଅ ଖେଳ ମଧ୍ୟରେ ଆପଣାକୁ ପରଖିବାର ପ୍ରବୃତ୍ତିଟି ଅହରହ କବି ହୃଦୟରେ ଜାଗରୁକ ହୋଇରହିଛି । ବିଚିତ୍ର ପଞ୍ଝୁଦୋଳର ମେଳନରେ ବିଜେ ହୋଇଥିବା ହସ୍ତପଦ ବିହୀନ ଯବ ପରିମିତ ବାମନ ପୁରୁଷଟି ପ୍ରତି କବିଙ୍କର କମ୍ ଲୋଡ଼ାପଣ ପ୍ରକାଶ ପାଇନାହିଁ । ସଙ୍କଳନଟିରେ ବାରମ୍ବାର ବିଭିନ୍ନ ପରିବେଶରେ ସେ ଏହି ଅନ୍ୱେଷଣକୁ ହିଁ ଅବ୍ୟାହତ ରଖିଛନ୍ତି । ବେଳେବେଳେ ଗୋଟିଏ ଦେହରେ ସେ ଏକାଦି କ୍ରମେ ତିନୋଟି ସତ୍ତାକୁ ଉପଲବଧି କରିଛନ୍ତି । ପ୍ରଥମଟି ହେଉଛି ଇନ୍ଦ୍ରିୟମାନଙ୍କ ଦ୍ୱାରା ଆତଯାତ ହେଉଥିବା ଅଥଚ ଚେତନାର ସ୍ତରରେ ସମ୍ପୂର୍ଣ୍ଣ ନୀରବ ରହିଥିବା ପଞ୍ଚଭୂତର ଦେହ ଯାହା କାବ୍ୟପୁରୁଷ ଦୃଷ୍ଟିରେ 'ଅସାଡ଼ ଦେହ', ଦ୍ୱିତୀୟଟି ହେଉଛି ଆଲୌକିକ ବର୍ଣ୍ଣୋଜ୍ଜ୍ୱଳମୟ ଶୂନ୍ୟ କ୍ରୀଡ଼ାରତ ସ୍ଥିତି ଏବଂ ତୃତୀୟଟି ହେଉଛି ନୀରବରେ ସମଗ୍ର ଦୃଶ୍ୟକୁ ଉପଲବ୍ଧି କରୁଥିବା ସମାହିତ ସାକ୍ଷୀ ପୁରୁଷ ('ଶୂନ୍ୟ ସଙ୍ଗମ') । ଏ ପର୍ଯ୍ୟାୟରେ କାବ୍ୟ ପୁରୁଷର ସମସ୍ତ ଅଲୋଡ଼ା ଅଭିମାନ କାହିଁ କୁଆଡ଼େ ଦୂରେଇଯାଏ । ପଞ୍ଚଭୂତରେ ଗଢ଼ା ଏଇ ଘଟ ସହ ପରତେ ହେବାର ବେଳ ପାଖେଇ ଆସେ । ସେ ଏକାନ୍ତ ବଶମ୍ବଦ ହୋଇ ସ୍ୱୀକାର କରି ବସେ, 'ସବୁ ତମ ଶକ୍ତିର କରାମତି, ତମ ସୃଷ୍ଟିର ସବୁ ଗତି ଓ ପ୍ରକୃତି, ନିତି ବେଶ ବଦଳାଏ ଋତୁ ମଧୁମତୀ, ମନ ଜାଣି ଭଗବତୀ ପଣତ ଉହାଡ଼େ ନିତି ଆଶ୍ରୟ ଦିଅନ୍ତି/ ଅଯତ୍ନ ବାଳୁତ ଅଜ୍ଞ ସଭ୍ୟତାକୁ ପୃଥିବୀର/ ପ୍ରଦୀପ ଦେଖାନ୍ତି,' ('ଅଲୌକିକ ଏ ପୃଥିବୀ') । ସୃଷ୍ଟିର ଏ ସମସ୍ତ ମାୟାମୟ ରହସ୍ୟ କ୍ରମେ ତା ଆଖିରେ ସ୍ପଷ୍ଟ ହୋଇଯାଏ । ଜଗତର ଆବିର୍ଭାବ ଏବଂ ତିରୋଧାନ ଜଗତର ସାମଗ୍ରିକ ସ୍ଥିତିରେ ପ୍ରତିପ୍ରାଣୀଙ୍କର ସାମୟିକ ଇଚ୍ଛା ପୂର୍ତ୍ତିପାଇଁ ବିଭିନ୍ନ ପ୍ରଚୋଦନା ସବୁ କ୍ରମେ ସ୍ପଷ୍ଟ ହୋଇଯାଏ । ଜୀବନକୁ ପ୍ରତିନିୟତ ଅପେକ୍ଷା ରଖିଥିବା ସ୍ନେହମୟ ଚରିତ୍ରର ଏକପାକ୍ଷିକ ଯାତ୍ରା ('ସଂସାର ନଉକା') ତା'ର ବାହିନିଏ ସେ କୂଳକୁ, ଯେଉଁଠାରୁ ଫେରିବାକୁ/ ନଉକା ନଥାଏ । ସେହି ପୌନପୌନିକ ଅନୁଷ୍ଠାନ ମଧ୍ୟରେ ସେ ଆଉ ଆଶ୍ଚର୍ଯ୍ୟ ବା ବିଚଳିତ ହୋଇ ଉଠୁନାହିଁ । ଏଇ ଦୃଶ୍ୟମାନ ଲୀଳା ଖେଳାକୁ ସୃଜି ଦେଇ ଅଦୃଶ୍ୟରେ ରହିଥିବା ସେହି ଶୂନ୍ୟ କାରିଗର ପ୍ରତି ତାର ଅନ୍ତରରେ ସ୍ନେହ ଓ ଶ୍ରଦ୍ଧାର ଅନ୍ତ ନଥାଏ । ଶବରୀକୁ ବ୍ରାହ୍ମଣ ସାଥିରେ ଯୋଡ଼ି ଦେଇଥିବା ପୁଣି ଅଗ୍ନାଅଗ୍ନି ବନସ୍ତର ନୈରାଜ୍ୟରେ ପତ୍ର ମର୍ମରିତ କଳରୋଳ ଭିତରେ ଆଶାର ସ୍ତିମିତ ସୂଚନା ଆଙ୍କି ଜୀବନର ଗତିପଥକୁ ଆକର୍ଷଣୀୟ ଭାବେ ନିୟନ୍ତ୍ରିତ କରୁଥିବା ସେଇ ଅଦୃଶ୍ୟ ପୁରୁଷର ରୂପ ଆଙ୍କି ବସିବା ବେଳେ କାବ୍ୟ ପୁରୁଷ ଯେଉଁ ବିଶେଷ ରୂପର କଳ୍ପନା କରି ବସିଛି, ତାହା ଏହିପରି, 'ଏ ବିଚିତ୍ର ସଂସାରର କିଏ ସିଏ କାରିଗର/ ମୋ ଠାରୁ ଭିନ୍ନ ଆଉ ଭିନ୍ନ ପୁଣି ସବୁତକ କାରଣରୁ ଏହି

ଜଗତର ।' ('ଦୈବାତ୍ ଦେଖିଥିଲି ତାଙ୍କୁ') । ଏହି ପ୍ରକାରର ଅନୁଭବର ଏକ ଚମତ୍କାର ଅଭିବ୍ୟକ୍ତି ହେଉଛି ସଙ୍କଳନର ଶୀର୍ଷକ କବିତା । 'ଭିତିରି ଚନ୍ଦନ' କବିତାଟିର ମୁଖ୍ୟ ସ୍ୱର ହେଉଛି 'ଯଦି ତମେ ଥିଲ କେବେ, ତମେ ଅଛ ମୋହରି ଭିତରେ' । ଜୀବନର ଏକମାତ୍ର ସ୍ଥିତି ସେ-ସେହି ଅଦୃଶ୍ୟ ରହସ୍ୟମୟ ସତ୍ତାର କଣିକାଏ ମାତ୍ର ଆତ୍ମପ୍ରକାଶ– ଏହା ହିଁ ଏହି କବିତାଟିରେ ସ୍ପଷ୍ଟ କରିଦିଆଯାଇଛି । ଯଦିଓ ବେଳେବେଳେ ଏହି ସର୍ବମୟ ସତ୍ତା ତାଙ୍କର ଅଲୌକିକ ଗତି ପ୍ରବାହ ହେତୁ ସାମୟିକ ଭାବରେ 'କପଟୀ ଓ ଧୂର୍ତ୍ତ ଯାଦୁକର' ଭଳି ପ୍ରତୀତ ହୋଇଛନ୍ତି, ମାତ୍ର ଏହି ଚେତନା ଦୀର୍ଘସ୍ଥାୟୀ ହୋଇପାରିନାହିଁ । 'ହଁ' ଏବଂ 'ନାହିଁ'ର ଯୁଗପତ୍ ଉପଲବ୍ଧିରେ ମୁହୂର୍ତ୍ତକ ପାଇଁ ସଂଶୟାଚ୍ଛନ୍ନ କାବ୍ୟ ନାୟକ ସେହି ସର୍ବମୟ ସତ୍ତାକୁ ପାରମ୍ପରିକ ନାସ୍ତି ବଚନ ମଧ୍ୟରେ 'ସ୍ପର୍ଶହୀନ, ରୂପହୀନ, ଶବ୍ଦହୀନ, ସ୍ୱାଦହୀନ, ଗନ୍ଧହୀନ ବୋଲି ପ୍ରକାଶ କରିବା ପରେ 'ନଥିବାର ପ୍ରତ୍ୟୟ ତମେ' ବୋଲି କହି ପୁନର୍ବାର ସ୍ୱୀକାର କରିନେଇଛି । ଜାଗତିକ ଯାତନା ଭୋଗୁଥିବା ତାର ଅସହାୟ ବ୍ୟକ୍ତିସତ୍ତା ଶେଷରେ ସ୍ୱୀକାର କରିବାକୁ ପଛାଇ ଯାଇନାହିଁ ଯେ, 'କେମିତି କରିବି ମନା ତମେ ଆସି ଚାଲିଗଲା ପରେ/ ପଲକଟି ପଡ଼ିବା ପୂର୍ବରୁ କେମିତି କରିବି ନାହିଁ ତମେ ନାହଁ ବୋଲି/ ମୋ ଛାତିରେ ହାତରଖି କେମିତି କରିବି ନାହିଁ/ ଏତେ ଗ୍ରୀଷ୍ମ ଅଣସର ତମ ସାଙ୍ଗେ ମୋ ଭିତରେ କଟାଇଲା ପରେ ।' ଏହି ନିବିଡ଼ ଅନୁତାପର ସର୍ବାସ୍ତିବାଦୀ ଚେତନା କାବ୍ୟ ପୁରୁଷର ବିମଳ ଆଧ୍ୟାତ୍ମିକ ଉପଲବ୍ଧିର ଏକ ସାର୍ଥକ ଅକ୍ଷରାତ୍ମିକା ଅଭିବ୍ୟକ୍ତି ।

ସଙ୍କଳନର ଦୁଇଟି କବିତାରେ ଦୁଇଜଣ ପୃଥକ୍ କାଳର କବିଙ୍କର କାବ୍ୟଜୀବନ ଓ କବିତାକୁ ନେଇ ମନ୍ତବ୍ୟ ଉପସ୍ଥାପନ କରାଯାଇଛି । ମଧ୍ୟକାଳୀନ ଓଡ଼ିଆ ସାହିତ୍ୟର ପ୍ରତିଷ୍ଠିତ ଦୀନକୃଷ୍ଣ ଦାସଙ୍କ ବ୍ୟାଧିଗ୍ରସ୍ତ ଦାରିଦ୍ର୍ୟ ପ୍ରପୀଡ଼ିତ ଜୀବନ ପ୍ରତି ସମ୍ବେଦନା 'କବି ଦୀନକୃଷ୍ଣ ଭଳି'ରେ ପ୍ରୋଜ୍ଜ୍ୱଳ । ଅହରହ ଦୁଃଖ ଓ ଦୈନ୍ୟ ମଧ୍ୟରେ ଆତଯାତ ହେଉଥିବା ସେହି ଅଦ୍ଭୁତ କର୍ମ କାବ୍ୟ ପୁରୁଷଙ୍କ ପାଇଁ କବି କମ୍ ଦୁଃଖ ଭୋଗି ନାହାନ୍ତି ଆତ୍ମାରେ । ସେଇ ଅନ୍ତର୍ଦହନର ଏକ ବାତ୍ୟାବିକ୍ଷୁବ୍ଧ ପ୍ରଳୟଙ୍କରୀ ରୂପ ପ୍ରକଟିତ ହୋଇଛି କବିତାର ଶେଷ ପଂକ୍ତିମାନଙ୍କରେ ଯେଉଁଠାରେ କି ଅସହାୟ ବର୍ତ୍ତମାନକୁ ଅସ୍ୱୀକାର କରାଯାଇ ଏକ ଅତିମାନସର ସମ୍ଭୂତ ନିଟୋଳ ସତ୍ୟମୟ ନଗ୍ନ ଭବିତବ୍ୟକୁ ସ୍ୱୀକାର କରାଯାଇଛି । ଅନ୍ୟ କବିତାଟି ହେଉଛି 'ବାଗର୍ଥ' ଯାହା ଆଧୁନିକ ଯୁଗର କବି କମଳାକାନ୍ତ ଲେଙ୍କାଙ୍କ 'ସ୍ରୋତର ନାମ ରତ' କବିତା ସଙ୍କଳନର ନାମ ଉପରେ ହିଁ ପର୍ଯ୍ୟବସିତ । ଶବ୍ଦ ଓ ଅର୍ଥକୁ ନେଇ ବହୁ ପୂର୍ବରୁ ଉଚ୍ଚାରିତ ହୋଇ ଆସିଥିବା ଦର୍ଶନର କାବ୍ୟାୟନ ପୁଣି ଥରେ କରି ବସିଛନ୍ତି କବିତାର ଆରମ୍ଭରେ କବି, 'ଶବ୍ଦ କଣ କେବଳ ପୋଷାକ/ ଯାହାକୁ କାଢ଼ି ଫୋପାଡ଼ି ଦେଲେ/ ଅର୍ଥ ହେବ ଶବ୍ଦ ଭଳି ନୀରବ... ନିର୍ବାକ' ପାରମ୍ପରିକ ବୋଲି ମନେହେଉଥିବା ଏହି ଅନ୍ୱେଷା କିନ୍ତୁ ଶେଷ ବେଳକୁ

ଏକ ନୂତନ ଭାବର ଦ୍ୟୋତନା ଦିଏ, ତାହା ହେଉଛି ଶବ୍ଦ ଏକ ନିର୍ଦ୍ଦିଷ୍ଟ ଅର୍ଥକୁ ସବୁବେଳେ ବହନ କରେ ନାହିଁ, ତାହା ସମୟ କ୍ରମେ ତାର ସତ୍ତା ବଦଳାଉଥାଏ । ପରିବର୍ତ୍ତନ ଭିତରେ ସତ୍ୟାନ୍ୱେଷା ଜାରି ରଖିଥାଏ ଏବଂ ଭିନ୍ନ ଭିନ୍ନ ନୂତନ ଅର୍ଥର ଦ୍ୟୋତନା ମଧ୍ୟରେ ଅପହଞ୍ଚ ଜଗତର ସୂଚନା ମଧ୍ୟ ଦେଉଥାଏ, 'ପରିବର୍ତ୍ତନ ହିଁ ସତ୍ୟ ଯାହା ଘଟେ ଅପରିବର୍ତ୍ତିତ । ଗଢ଼ିଦିଏ ନୂଆ ଶବ୍ଦ, ଯୋଡ଼ିଦିଏ ଶବ୍ଦ ସାଙ୍ଗେ/ନୂଆ ଏକ ଅର୍ଥ' । ମାତ୍ର ଏହି ପରିବର୍ତ୍ତନ ଘଟାଇବାର କ୍ଷମତା ସମସ୍ତଙ୍କର ନଥାଏ, କେବଳ ପରିବର୍ତ୍ତିତ ଦେଶ କାଳ ଏବଂ ପାତ୍ରର ଉର୍ଦ୍ଧ୍ୱରେ ଅପରିବର୍ତ୍ତିତ ସତ୍ତା ନିକଟରେ ହିଁ ତାହା ନିହିତ ଥାଏ ।

ସଙ୍କଳନର ଅଧିକାଂଶ କବିତା ହରିହରଙ୍କ ଯାଦୁକରୀ ଲେଖନୀ ସ୍ପର୍ଶରେ ବେଶ୍ ରସୋତ୍ତୀର୍ଣ୍ଣ । ଆପାତତଃ ଦୁର୍ବୋଧ ଭଳି ଅନୁଭୂତ ହେଉଥିବା ଅନେକ କବିତା ସ୍ୱୀୟ ଶବ୍ଦ ଚାତୁର୍ଯ୍ୟ ଦ୍ୱାରା ମଧ୍ୟ ପାଠକର ହୃଦୟ ହରଣ କରିନିଅନ୍ତି । ଶବ୍ଦ ପ୍ରୟୋଗରେ ଏକ ପରିପକ୍ୱତା ଅନେକ କବିତାରୁ ସ୍ପଷ୍ଟ ହୋଇଯାଏ । କବି ସଙ୍କଳନରେ ଚମତ୍କାର ଚିତ୍ରକଳ୍ପ ତଥା ବିମ୍ବ ଯୋଜନା କରିବାକୁ ଭୁଲିନାହାନ୍ତି । ଉଦାହରଣ ଭାବେ 'କଳାହଂସ ନିଗ୍ରୋର ଗଳା ମୁଗ ହଂସ', 'ଅଧାମେଲା ଗ୍ରାମଫୋନ ଭଳି ସାପର ଫଣା', 'ହମ୍ପସରେ ଭରିରହିଥିବା ଦୁର୍ଘଟଣାଗ୍ରସ୍ତ ଜାତୀୟ ରାଜପଥ ଭଳି ବନ୍ଧୁର ହୋଇ ପଡ଼ିଥିବା ପ୍ରଭୁଙ୍କ ବଡ଼ଦାଣ୍ଡ', 'ମିଳେଇ ଯାଉଥିବା କାଛରେ ଝୋଟିର ଧାନକୋଠି', 'ଚିତାର ବୋଇତ ଭଳି ବର୍ତ୍ତି ଯାଇଥିବା ଏକ ମାନଚିତ୍ର—ଆମରି ଭାରତ', 'ଚାଳରୁ ଦିଶୁଛି ଜହ୍ନ'-'ବୁଢ଼ୀର ଫୁଟା ଫୁଟା ଚିତଉ ପିଠାର ମୁହଁ', 'ବିଡ଼ିଆ ପାନରେ ଲବଙ୍ଗ ଭଳି ଖୋସି ଦେଇଥିବା ଅହଙ୍କାରର ଏକକ ସତ୍ତା', 'ଉଜ୍ଜ୍ୱଳ ବଖରାରେ ଆକ୍ୱାରିୟମ୍‌ରେ ମାଛ ଭଳି ନିଜ ଠାରୁ ଭିନ୍ନ ହୋଇ ଦିଶୁଥିବା ମଣିଷ' ଏବଂ 'ବୈଷ୍ଣବଜନ ଭଳି ଉର୍ଦ୍ଧ୍ୱମୁଖ କୀର୍ତ୍ତନରତ ଲଙ୍କା ଆମ୍ବ ଗଛ' ଆଦିକୁ ଗ୍ରହଣ କରାଯାଇପାରେ । କବି ହରିହର ମୁଖ୍ୟତଃ ଆତ୍ମନିଷ୍ଠ ଏକ ଜୀବନବାଦୀ କବି । ଶବ୍ଦର ଖେଳରେ ଜୀବନର ବିଚିତ୍ରତାକୁ ଉପଲବ୍ଧି କରିବା ଭିତରେ ଆକାଶର ଶୂନ୍ୟ ନୀଳ ଶୋଷ ପ୍ରତି ଆଶାୟିତ କବି ଚିତ୍ତ 'ଭିତିରି ଚନ୍ଦନ'ରେ ଆପଣାକୁ ସାଧ ମତେ ପ୍ରକାଶ କରିବାର ପ୍ରୟାସ କରିଛି ।

ଆୟତପୁର, କିଶୋର ନଗର,
କଟକ-୭୫୪୧୩୧

('ଜୀବନ ରଙ୍ଗ' ୧୯୯୮ରେ ପ୍ରକାଶିତ)



# ଏକାକୀ ନୀରବ ଶୃଙ୍ଗ ଓ ଲୁହ ପୋଛୁଥିବା ଅଚିହ୍ନା ମଣିଷ

*ମାନସ ରଞ୍ଜନ ମହାପାତ୍ର*

ସାହିତ୍ୟ ସୃଷ୍ଟିର ମୂଳ ଉତ୍ସ ହେଉଛି ଜଟିଳ ବ୍ୟକ୍ତି ମାନସର ଚେତନାପ୍ରବାହ । ଏହି ଚେତନା-ପ୍ରବାହର ଧାରା କେବେ ଅତି ମାତ୍ରାରେ ବାସ୍ତବତାର ରୂପକଳ୍ପ ତ ପୁଣି କେବେ ମିଥ୍ ମାଧ୍ୟମରେ ଲୌକିକତାର ରୂପାନ୍ତର । ବିଶ୍ୱଯୁଦ୍ଧୋତ୍ତର କାଳର ଓଡ଼ିଆ କବିତାରେ ଏହି ଅଲୌକିକତା ମାଧ୍ୟମରେ ଲୌକିକତାର, ଅନ୍ଧାର ମାଧ୍ୟମରେ ଆଲୁଅର, ମୃତ୍ୟୁନାଚ ଭିତରେ ବଞ୍ଚିବାର ଆସ୍ୱାଦ ସନ୍ଧାନ ଓ ଜିଜ୍ଞାସା ଅତ୍ୟନ୍ତ ତୀବ୍ର ସନ୍ଧାନର ଏହି ଧାରାରେ କବି କେବେ ଗତଦିନର ସ୍ମୃତିକୁ ରୋମନ୍ଥନ କରି ମୋହାନ୍ୱିତ ତ କେବେ ଚଳନ୍ତି ଦିନକୁ ସୁନ୍ଦର କରିବା ଲାଗି ବିଦ୍ରୋହ ପଥର ଯାତ୍ରୀ । ଗୁରୁ ପ୍ରସାଦ ମହାନ୍ତି ଓ ଭାନୁଜୀ ରାଓଙ୍କ 'ନୂତନ କବିତା' (୧୯୫୫) ଠାରୁ ସାମ୍ପ୍ରତିକ କାଳର ନବୀନତମ ସ୍ୱର ପର୍ଯ୍ୟନ୍ତ ଅନୁଧ୍ୟାନ କଲେ ଆମେ ଏଇ ସିଦ୍ଧାନ୍ତରେ ଉପନୀତ ହୋଇଥାଉ ।

ତେବେ, ଯୁଗ ବିଭାଜନର ଧାରାନୁସାରେ ବିଚାର କଲେ ଏହି ଅର୍ଦ୍ଧ ଶତାବ୍ଦୀର ଓଡ଼ିଆ କବିତାର ଉତ୍ତରଣକୁ ତିନୋଟି ସୋପାନରେ ବିଭକ୍ତ କରାଯାଇପାରେ । ବିଶ୍ୱଯୁଦ୍ଧୋତ୍ତର ସମୟର ଓଡ଼ିଆ କବିତାରେ ଗତ ଦିନକୁ ମନେ ପକାଇ ରୋମାଞ୍ଚିତ ହେବା ବା ଉଦାସ ହୋଇଯିବା (ଯଥା ଗୁରୁପ୍ରସାଦଙ୍କ 'ଚିଠି') ଥିଲା ପ୍ରମୁଖ କାବ୍ୟାଦର୍ଶ ଯାହା ଷାଠିଏ ଦଶକରେ ବାସ୍ତବ ଜୀବନର ସୁଖ-ଦୁଃଖ, ଯନ୍ତ୍ରଣା, ଅବକ୍ଷୟ, ପ୍ରଚଳିତ ରୀତି-ନୀତି ଓ ଘଟଣାବଳୀ ପ୍ରତି ବ୍ୟଙ୍ଗ ବିଦ୍ରୂପ-ଶ୍ଳେଷ । (ଯଥା—ରମାକାନ୍ତ ରଥଙ୍କ 'ବ୍ୟାଘ୍ରାବଲୋକନ') ଏହି ସୋପାନ ଦେଇ ଉତ୍ତର ସତୁରିଠାରୁ ଅଦ୍ୟାବଧି ସମୟ ପର୍ଯ୍ୟନ୍ତ ଧ୍ୱଂସ ବିଧ୍ୱସ୍ତ, ଯନ୍ତ୍ରଣା, ଦୁଃଖ, ଅବକ୍ଷୟ ମଧ୍ୟରୁ ପୁନରୁଭ୍ୟୁଦୟ ଲାଗି ପ୍ରୟାସର ସ୍ୱରରେ ପରିଣତ ହୋଇଛି । ଏହି କାଳ କ୍ରମରେ ଅନାମ (ସତୁରି ଦଶକ) କାବ୍ୟଧାରା ଶେଷ ଦୁଇ ସୋପାନ ମଧ୍ୟରେ ସେତୁଭଳି ପ୍ରତୀତ ହୋଇଥାଏ ।

ହରିହର ମିଶ୍ର (୧୯୪୧) ଏହି ଦୃଷ୍ଟିରୁ ସମକାଳୀନ ଓଡ଼ିଆ ସାହିତ୍ୟରେ ଏକ ସଂଧିକ୍ଷଣର କବି । ଷାଠିଏ ଦଶକଠାରୁ ସାମ୍ପ୍ରତିକ କାଳ ମଧ୍ୟରେ 'ଶଙ୍ଖନାଭି' (୧୯୭୩)ଠାରୁ 'ଭିତିର ଚନ୍ଦନ' (୧୯୯୪) ଯାଏଁ କବିଙ୍କ ଚେତନାର ଦିଗବଳୟ ବ୍ୟାପ୍ତ । ଅନାମ କାବ୍ୟାଦର୍ଶର ରୂପକାର ହୋଇଥିବାରୁ ସେ ସାମାଜିକ-ରାଜନୈତିକ ବୈଷମ୍ୟ ବା ଅନାଚାର ବିରୋଧି । ମାତ୍ର, ତାଙ୍କ କବିତାର ମୁଖ୍ୟ ବିଭାବ ହେଉଛି ସାମାଜିକ ଅଙ୍ଗୀକାର ଓ ଆଧିଭୌତିକ ଜିଜ୍ଞାସା ।

'ଶଙ୍ଖନାଭି'ରୁ 'ଭିତିର ଚନ୍ଦନ' ଯାଏ ହରିହର ମିଶ୍ରଙ୍କର କାବ୍ୟଯାତ୍ରାରୁ ନାୟକ ଏକ ସ୍ଥିତପ୍ରଜ୍ଞ ଏକକ, ସତେ ଅବା ନୀରବ ଶୃଙ୍ଗଟିଏ ।

'ସମୟର ଶିଳାଲିପି ଲେଖୁଥିବା ନୀରବ ଶୃଙ୍ଗଟି
ବିଶେଷ ବିଚଳିତ ହେବ ନାହିଁ
କୌରବମାନେ ଟୁରିଷ୍ଟ ବସ୍‌ର
କୁମାରୀ ଗାଇଡ୍‌ଟିକୁ
ଅବା ଏୟାର ହୋଷ୍ଟେସ୍‌ଟିକୁ ବିବସ୍ତ୍ରା କଲେ
ଶୃଙ୍ଗ ଖାଲି ଚାହିଁଥିବ ନୀରବରେ
ଅଚିହ୍ନା ମଣିଷଟିଏ ଖାଲି ଚଷମା ଖୋଲି
ଲୁହ ପୋଛିଦେବ ଗରୁଡ଼ ଖମ୍ବ ତଳେ'

('ଦକ୍ଷିଣାୟନ' : 'ଭିତରି ଚନ୍ଦନ', ପୃ-୧୧୩)

ସେଇ ଲୁହ ପୋଛୁଥିବା ଅଚିହ୍ନା ମଣିଷଟି ଓ ଶୃଙ୍ଗପରି ସ୍ଥିତପ୍ରଜ୍ଞ ଏକକ—ଏ ଦୁହେଁ ବେଳେ ବେଳେ ଦ୍ୱୈତ ତ ବେଳେ ବେଳେ ଅଦ୍ୱୈତ । କେହି ଜଣେ କୁଆଡ଼େ ନେଇଯାଉଥାଏ, ଯାହା କେବଳ ତାକୁଇ ଜଣାଯାଏ । କାବ୍ୟନାୟକ ପଚାରେନି କାରଣ ବାଟ ଜାଣିଗଲେ ବାଟବଣା ହୋଇଯିବାର ଭୟ । ବାଟ ଖୋଜୁଥିବା ବେଳେ ଯେତିକି ବଢ଼ୁଥାଏ, ନିଜକୁ ଚିହ୍ନିବାର ଜିଜ୍ଞାସା, ସେତିକି ବି ସମାଜର ପ୍ରାଣ ସ୍ପନ୍ଦନକୁ ଚିହ୍ନିବାର ମୋହ;

ଏଥର ଡାକିବାକୁ ହେବ ଲଙ୍ଗଳା ପିଲାଟିକୁ ତା'ର ହାତ ମୁଠାରେ ହଉ ପଛେ ଧରା ପଡ଼ିଯାଉ ମୋର ଭୟ ଆଉ ଛଟପଟ ପଣ ।

('ଅଥଚ ମାଛଟିଏ')
('ଭିତିରି ଚନ୍ଦନ'—ପୃ-୧୧୦)

ଏଇ ଭୟ ଆଉ ଛଟପଟ ପଣ ଭିତରେ କାବ୍ୟ ନାୟକ ସତେ ଅବା ସାରସ ପକ୍ଷୀଟିଏ, ନିଜ ଛାଇ ସହ, ଜାଲ ଓ ପଞ୍ଜୁରୀ ସହ ଯିଏ ଏକାକାର ହୋଇଯାଉଥାଏ;

କାବା ତୀର୍ଥରୁ ଶ୍ରୀମନ୍ଦିର ଚେମେଣି ଦ୍ୱାର ପର୍ଯ୍ୟନ୍ତ
ତୁଷାର ହ୍ରଦରୁ ଲବଣ ହ୍ରଦ—ଶୃଙ୍ଗରୁ ଶୃଙ୍ଗ—
ଯା' ଉପରେ ସାମୟିକ ଥକା ମାରୁଥିବା
ପକ୍ଷୀ ମୁଁ ସାରସ
x x x
ପକ୍ଷୀ ଓ ତା'ର ଛାଇ
ଏକ ହୁଏ ବାରମ୍ବାର
ଜାଲ ଓ ପଞ୍ଜୁରି ଯେତେ
ପକ୍ଷୀ ସହ ମିଶି ଏକାକାର

('ଛାୟା ପକ୍ଷୀ': 'ଭିତରି ଚନ୍ଦନ'—ପୃ-୧୦୫)

ପ୍ରଚଳିତ ବ୍ୟବସ୍ଥାକୁ ସେଇ ପକ୍ଷୀଟି ମାନି ପାରୁନଥାଏ, ଅବା କାହାକୁ ମନେଇ ପାରୁନଥାଏ । ତେଣୁ ସତେ ଅବା ମନେ ମନେ ବିଦ୍ରୂପୋକ୍ତି କରୁଥାଏ ସେ; ''ମନେହେଉଛି ମନେଇପାରିଲେ ସବୁ ସୁନ୍ଦର ।'' ('ହୁକୁମନାମାର ନକଲ ନାମା') ତେଣୁ କେବଳ ଅନ୍ତଃହୀନ ଖୋଜିବା ଚାଲିଥାଏ : ଭିତରେ ଓ ବାହାରେ ବିଶ୍ୱାସର ସେଇ ମହାସତ୍ତାର) । (ବିସର୍ଜିତ ବିଗ୍ରହର ଦୃଶ୍ୟ ସକଳ) ସେଇ ଖୋଜିବା ଭିତରେ ବାରମ୍ବାର ନିଆଁରେ ଜଳିବାକୁ ପଡ଼େ, ନଦୀ ଗର୍ଭରେ ବିସର୍ଜିତ ହେବାକୁ ପଡ଼େ ('ଭକ୍ତ ଚରଣ') ତଥାପି ଭାଗ୍ୟ ଯାହା ସ୍ଥିର କରିଥାଏ, ତାହା ହିଁ ଘଟୁଥାଏ, ପ୍ରଳୟରେ ବଟପତ୍ରରେ ଶିଶୁଟିଏ ପାର୍ ହେଉଥାଏ । ସେଇଥି ପାଇଁ ତ ସ୍ରଷ୍ଟାଟି ଚିରକାଳ ତା' ରୁଚିର, ତା ଇପ୍‌ସିତ ସୃଜନ ଭୂମିଟି ସଂଗ୍ରାମର ଭୂମି ହେଉ ବୋଲି ଇଚ୍ଛୁକଥାଏ । ('ସୋମପାର ଚର୍ଯ୍ୟାପଦ') ।

ଏଇ ସଂଗ୍ରାମର ରୂପ ଓ ରଙ୍ଗ କିପରି ? ଏ ସଂଗ୍ରାମର ଅର୍ଥ କ'ଣ କେବଳ ଖୋଜିବା :

''କିବା ଏକ ମୃତ ବୃକ୍ଷରୁ ଫେରାର ହୋଇଯାଇଥିବା
ଧୂର୍ତ୍ତ ପରମାତ୍ମା ପଛେ ପଛେ ଖୋଜୁ ଆମେ ଝାମୁନାଚ ଗାତ ପାଖେ କଳା

କଳା ଛାଇର ଘେରରେ ବୃକ୍ଷର କଳସ ଥାପି ମେରୁଦଣ୍ଡ ପରେ

('ଅଙ୍ଗାର ପୁରୁଷ' : 'ଭିତିରି ଚନ୍ଦନ' ପୃ-୭୨)

କାରଣ ବୋଧହୁଏ ଏୟା ଯେ :

ମାଟିକୁ ଛୁଇଁବା ମାତ୍ରେ ମୁଁ ଏକ ଉତପ୍ତ ଅନ୍ଧାର

ମୁଁ ଝରିଛି ଟୋପା ଟୋପା ସ୍ତନରୁ ତାହାର

କବି ଦୃଷ୍ଟିରେ ତେଣୁ 'ସୁଖ ଯେବେ ସମାନ, ଦୁଃଖ ଅତି ବାସ୍ତବ ଭାବରେ ଭିନ୍ନ ଭିନ୍ନ, ଦୁଃଖ ଯେବେ ସମାନ, ସୁଖ ଭିନ୍ନ ଭିନ୍ନ । ('ଦେବ ଶିଶୁ') ଭିନ୍ନ ଭିନ୍ନ ଦୁଃଖ ଏକାଠି ହେବାରେ କେହି କାହାକୁ ପ୍ରଶ୍ନ ପଚାରୁ ନଥାଏ, ସମସ୍ତେ ନୀରବ ଉତ୍ତର ପାଲଟି ଯାଇଥାନ୍ତି ('ବିପ୍ଳବୀ କବିଟି ମରିଗଲା ପରେ') ସେଇ ନୀରବ ଉତ୍ତର ପରିସରରେ :

'ବାଟଯାକ ମନେହୁଏ, ପବନ ହିଁ ଚଳାଉଛି

ତା'ର ଶକ୍ତି ନଥିବା ହାତର ଆହୁଲାକୁ

ଆଉ କାଳ କାଳର ଜୀର୍ଣ୍ଣ ପୋତକୁ

ଅଜଣା ପୋତାଶ୍ରୟକୁ ।

'ଗୁହାରିଆ' : 'ଭିତିରି ଚନ୍ଦନ', ପୃ: ୫୮ ।

ତେଣୁ ସଂଗ୍ରାମର ସବୁ ଗୀତ ଏକାପରି ଲାଗେ । ସ୍ୱତନ୍ତ୍ରତା ବାରିହୁଏ ନାହିଁ । ରାତ୍ରିର ଟ୍ରେନ୍‌ଟି ଏକ ପ୍ରାଚୀନ ସହରର ନୂତନ ସକାଳରେ ପ୍ରବେଶ କରି ଯାଇଥାଏ । ଭିନ୍ନ ମନେ ହେଉଥାଏ ବର୍ତ୍ତମାନ ଓ ଅତୀତ । ବହୁଦିନ ପରେ ନିଜ କୁଟୁମ୍ବ ଭିତରେ କେହି ଜଣେ ପହଞ୍ଚି ସାରିଥାଏ ('ଯାତ୍ରୀ') । ସେହି ଯାତ୍ରା କିନ୍ତୁ ସରେ ନାହିଁ,ସରେ ନାହିଁ ସମୟକୁ ପରିକ୍ରମା କରିବା ।

'କାଉ, ଚିଲ, ପେଚା ଓ ଶାଗୁଣା ଭିତରେ

ଧୂର୍ତ୍ତ ପରିକ୍ରମା ଏ ଡାଳରୁ ସେ ଡାଳକୁ,

ଏ ଘରୁ ସେ ଘର, କଲୋନିରୁ କଲୋନି

ୟୁନିଟ୍‌ରୁ ୟୁନିଟ୍, ସହରରୁ ସହର, ତୀର୍ଥରୁ ତୀର୍ଥ

ସମ୍ପର୍କରୁ ସମ୍ପର୍କ, ଅତ୍ମୀୟରୁ ଘନିଷ୍ଠ ଆତ୍ମୀୟ

ସବୁ ପରେ ବାକି ଅଛି ମୂର୍ଦ୍ଧାରର ପରିକ୍ରମା
ସାତଥର, ଆପଣା ଲୁଇର ।'

('ବେଶ ବଦଳ' : 'ଭିତରି ଚନ୍ଦନ', ପୃ-୪୯)

ସେଇ ପରିକ୍ରମାର ବିଭୋର ନୃତ୍ୟ ଅନେକଙ୍କ ହୃଦୟରେ ହସର ସଞ୍ଚାର କରେ ଜନ୍ମ ମୃତ୍ୟୁ ବଞ୍ଚିବାର ବିଶେଷ ପର୍ବରେ ('ନୃତ୍ୟ') । କାବ୍ୟ ନାୟକ ଯାହା ଦେଖୁଥାଏ, ସବୁ ଦର୍ପଣ ପାଲଟି ଯାଇଥାଏ ('କ୍ଷେତ୍ରବାସୀ') । ସେଇ ଦୃଶ୍ୟକୁ ଦେଖି ପ୍ରଶ୍ନ କରୁଥାଏ କାବ୍ୟ ନାୟକ ।

କେବେ ତମ ଆଁଉ ମୋ ଭିତରେ
ଜନ୍ମ ନେବ ପ୍ରୟୋଜନଟିଏ
ପ୍ରତିହତ କରିବାକୁ ସମ୍ଭାବନାମୟ
ସବୁ ଚିତ୍ରିତ ଜଗତ

('ଅମାୟିକ' : 'ଭିତିରି ଚନ୍ଦନ', ପୃ-୪୪)

ଦର୍ପଣର ସବୁ ଦୃଶ୍ୟ ଅଚିହ୍ନା ଓ ଅଭାବିତ । ଯେ ଯାହା ଅଭ୍ୟନ୍ତରରେ ନିଜ ନିଜ ଇଚ୍ଛା ସଜାଇ ରଖନ୍ତି—ସତେ ଯେପରି ଶକ୍ତିଶାଳୀ ମାଇନ୍ ଯିଏ ବିସ୍ଫୋରଣର ଅପେକ୍ଷାରେ ଚିରକାଳ ('ଭିତର ମଣିଷ') । ପ୍ରକୃତରେ ଯେଉଁମାନେ ଯେଉଁଭଳି ଭୂମିକାରେ ରହିଥାନ୍ତି, ଚାରିପାଖେ ସେଭଳି ନଥାନ୍ତି କେହି ବି ସମ୍ପର୍କିତ ହୋଇ ସାତ ଜନମରେ ('ସେ ପରି ନଥାନ୍ତି କେହି'), ଥିବା ନ ଥିବାର ସେହି ଚଲା ବୁଲା କରୁଥିବା ବାରଣ୍ଡାରେ ଭୁଲିଯାଇଥିବା ଘରଟିର ଝର୍କା ଦିଶେ । (ବୁଢ଼ା ବୁଢ଼ୀ) ଅଥଚ ସମୟ ଏମିତି ଅସହାୟ କରେ ଯେ ନଈରେ ବହି ବସ୍ତାନି ଭାସିଯାଏ ବଇଁଶୀର ସ୍ୱର, ଗୋରୁ ଗୋଠ, ଆଣ୍ଠୁଯାକ ଯାହା ଖାଲି ବାନ୍ଧି ରଖିଥାଏ ମଧ୍ୟାହ୍ନର ମରୀଚିକା ଜାଲ ('କବି ଦୀନକୃଷ୍ଣଙ୍କ ଭଳି') ।

କବି ଅନୁଭୂତି କେତେ ବିଚିତ୍ର ଯେ
କି ଅବା ଅନୁଭୂତି କବିର
ଚିତ୍ରକରର ଫଟୋଗ୍ରାଫରର ତା'ର
ମଡ଼େଲ୍ ପାଇଁ
('ବରଂ ନିଜେ ନିଜ ଭଳି' : 'ଭିତିରି ଚନ୍ଦନ', ପୃ-୨୮)

କବିଙ୍କ କାବ୍ୟନାୟକ କିନ୍ତୁ- ଅନୁଶୀଳନ କରୁଥାଏ
'ସେ' ତ ନିଜେ ମୁଁ, ସେ'ତ ମୁଁ ନିଜେ
ଯିଏ ନିତି ମନା କରେ, କ୍ରୀତଦାସ ହେବା ପାଇଁ
ନିଜେ ନିଜ ପାଶେ ।'

('ବରଂ ନିଜେ ନିଜ ଭଳି' : 'ଭିତିରି ଚନ୍ଦନ', ପୃ-୨୯)

ତେଣୁ ଦୁଃଖକୁ ମାନିନବାକୁ ହୁଏ, କାରଣ ଏଠି ଯିଏ ଜନ୍ମ ନିଏ ଦିଗ୍ ବିଜୟୀ ଅବତାର, ଅନ୍ତଃହୀନ ଦୁଃଖ ତା'ର ସତେ ଅବା ଭାବର ସମୁଦ୍ର' (ବାଗର୍ଥ) । ଏଠି ପ୍ରତିପକ୍ଷ ସହ ବାଜି ରଖିବା ପାଇଁ ନିଜ ହାଡ଼ ଖଣ୍ଡକୁ ବି ପଶାକାଠି କରିହୁଏ ନାହିଁ । ତେଣୁ ପଙ୍କ ଭିତରୁ ଫେରି ନଥିବା ମଣିଷମାନଙ୍କ ଭଳି ମନ୍ଦ ଦିନର ଦୁର୍ଘଟଣାକୁ ଭୁଲିଯିବା ହିଁ ଶ୍ରେୟସ୍କର ମନେହୁଏ । ('ମୁହୂର୍ତ୍ତର ଶତାବ୍ଦୀ')

ସକଳ ରୋମାଣ୍ଟିକ୍ ପ୍ରତ୍ୟୟ, ପାହାଡ଼, ଆକାଶ ଓ ସମୁଦ୍ର-ପ୍ରତି ତନ୍ମୟ ମନଟି ତେଣୁ ଅନାହାର ଗର୍ଭର ଶିଶୁ ଆଉ ତା'ର ଦରୋଟି କଥାକୁ ଅପେକ୍ଷା କରିଥାଏ ('ନଥବା ଲୋକର କଥା') ।

ସେଇ ଅପେକ୍ଷା ଭିତରେ ଜନ୍ମ ମୃତ୍ୟୁର ଛକରେ ଜାଣତରେ ଅଜାଣତରେ ଏକ ଦିଗରେ ସ୍ୱପ୍ନ ଜନ୍ମୁଥାଏ ତ ଆର ଦିଗରେ ଏମିତି ଇଚ୍ଛା ବି ଥାଏ, ଯେ

'ତମେ ଆସ, ଉଭା ହୁଅ
କାଢ଼ିନିଅ ପାଦ ତଳୁ ସ୍ୱପ୍ନର ତରଙ୍ଗ ପୋତିଦିଅ ନୂପୁରର ପ୍ରତ୍ୟୟକୁ
କୁଢ଼ କୁଢ଼ ବାଲିତଳେ
ନିଃସ୍ୱ କରିଦିଅ ମତେ ବଡ଼ ଦାଣ୍ଡ ମଝିଟାରେ

('ଶୂନ୍ୟ ସଂଗମ' : 'ଭିତିରି ଚନ୍ଦନ', ପୃ-୧୯)

ନିର୍ଜନ ଶାମୁକା ଗର୍ଭରେ ଲୁଚି ରହିବାର ସ୍ୱପ୍ନଟି ତେଣୁ ଅତଳ ସାଗରରେ ମୁକ୍ତିର ସାର୍ଥକତା ପାଏ ('ଅସମ୍ଭବ ସମ୍ଭାବନା') । ଧ୍ୱଂସର ଖତଗଦା ଉପରେ ପଡ଼ିଥିବା କଣ୍ଢେଇଟିଏ ('ବର୍ଷାର ପୂର୍ବାପର') ପଶମ ପୋଷାକ ପିନ୍ଧା ପକ୍ଷୀମାନଙ୍କୁ ଲୌକିକ ଜଗତର ଖବର ପଚାରି ପାରେ ନାହିଁ ସତ ('ଆରୋହ ଅବରୋହ') ମାତ୍ର ନିଜ ସ୍ୱପ୍ନର ସମ୍ମୋହନରେ ନିଜେ ଜଳିବାରୁ କିଏ ତାକୁ ରୋକିପାରିବ ('ପଲଙ୍କ') ? ଏ ଜ୍ୱଳନ ସାର୍ବଜନୀନ : କଳାହାଣ୍ଡି ବା ଆଫ୍ରିକାର ଭୋକିଲା ଆଦିବାସୀର ହେଉ ଅବା ହେଉ ମୂକ ଧର୍ମରାଜଙ୍କ ଠାରୁ ପାକଲୋ

ନେରୁଦା ଓ ନିରାପତ୍ତା ପରିଷଦ ଯାଏଁ ମାରଣାସ୍ତ୍ର ସମ୍ମୁଖରେ ଚିତ୍କାର କରୁଥିବା ବ୍ୟର୍ଥ ମଣିଷମାନଙ୍କର, ('କୋଇଲି ନୁହନ୍ତି- କାଠ ହଣା')। ବିନୀତ ସ୍ୱରଟି ତେଣୁ ଦେଖୁଥାଏ, ନିଜ ଚାରି ପାଖକୁ, ସମାଜକୁ, ଚଳନ୍ତି ଦିନକୁ ଓ ସୁଖ ଦୁଃଖଠୁ ଊର୍ଦ୍ଧ୍ୱରେ ଥିବା ମହାଶକ୍ତିକୁ ।

ଇଚ୍ଛୁଥାଏ :

'ସ୍ଥିର ବା ଅସ୍ଥିର ହୁଅ, ସ୍ଥାବର ବା
ଜଙ୍ଗମରେ ଥାଅ
ତମ ଭଳି ମୂକ କର, ଅନ୍ଧ କର, ଦୁଃଖରେ
ପାପରେ ମତେ
ଅନେକ ମୋହରେ, ତମରି ଦୟାରେ ପୁଣି
ଧ୍ୱଂସକର
ଅଥର୍ବ ବଧିର
ମୋ ସାଥିରେ ମୋ ସ୍ଥିତିର ପୃଥିବୀକୁ'

x x x

ମୂର୍ଚ୍ଛାହତ କରି ମତେ ଅଲୌକିକ ଆବେଗରେ କ୍ଳାନ୍ତ ଓ ଅବଶ କରି ହାତଗୋଡ଼ ମୋର କରିଦିଅ ତୁମ ଭଳି ମୂକ, ଅପାରଗ ଅବା—('ଭିତିରି ଚନ୍ଦନ'. ପୃ-୨-୩)

ଏଇ ଈଶ୍ୱରାନୁଭୂତି, ଯାହାର ପରମ ବିଭୂତି ବା ପ୍ରକାଶ ଜଗନ୍ନାଥ ବା ଯିଶୁ ବା ଆଲ୍ଲା ସବୁରି ପରି ନିର୍ବିକଳ୍ପ, ସ୍ଥିର ଓ ନୀରବ ଅନୁଭବର କେନ୍ଦ୍ର, ତାହା ବି ସାମାଜିକ-ପରିବର୍ତ୍ତନର ସ୍ୱର ଲାଗି ପ୍ରେରଣା । ଅବକ୍ଷୟ ଗର୍ତ୍ତରୁ ମଣିଷର ପୁନରଭ୍ୟୁଦୟ ଲାଗି ଓଡ଼ିଆ କବିତା ସଙ୍ଘର୍ଷଶୀଳ ଥିବାବେଳେ ଯୁଗ ସନ୍ଧିକ୍ଷଣର କବି ହରିହର ମିଶ୍ରଙ୍କ 'ଭିତିରି ଚନ୍ଦନ' କାବ୍ୟଗ୍ରନ୍ଥ ଯେ ଏକ ଦିଗ୍‌ଦର୍ଶକ ଭୂମିକା ଗ୍ରହଣ କରି ଚନ୍ଦନର ଶୀତଳତାରେ ପାଠକ ମନକୁ ଭରିଦେବ, ଏଥିରେ ସନ୍ଦେହ ନାହିଁ !

ଏନ୍.ବି.ଟି. କାର୍ଯ୍ୟାଳୟ .
ନୂଆ ଦିଲ୍ଲୀ

('ସମାବେଶ'ରେ ୧୯୯୭ରେ ପ୍ରକାଶିତ)



# ସ୍ୱପ୍ନ ବିନିମୟ ଓ ସଂଧ୍ୟାଦର୍ଶନ

## (୧)

*ଆଶୁତୋଷ ପରିଡ଼ା*

ସ୍ୱପ୍ନର ଅର୍ଥ କଣ ? ନିଦ୍ରିତ ଅବସ୍ଥାରେ ମଣିଷ ଯାହା ଦେଖେ—ଯାହାକୁ ମନସ୍ତତ୍ତ୍ୱବିତ୍‌ମାନେ ମଣିଷର ଅବଚେତନର ଅନ୍ୟତମ ସୃଷ୍ଟି ଭାବରେ ବ୍ୟାଖ୍ୟା କରନ୍ତି ? ନା ସ୍ୱପ୍ନର କିଛି ବୃହତ୍ତର ଅର୍ଥ ଅଛି ଯେଉଁଠି ଏହା ମଣିଷର ଚିରନ୍ତନ ଆଶା ଆକାଂକ୍ଷା ସହିତ ଜଡ଼ିତ ହୋଇଯାଏ ? ନା ଏକ ପଳାୟନର ପନ୍ଥା ଭାବରେ ଗୃହୀତ ହୁଏ ? କବି ହରିହର ମିଶ୍ର ମଧ୍ୟ ଏହିପରି ପ୍ରଶ୍ନ ଉଠାଇଛନ୍ତି ତାଙ୍କର କାବ୍ୟ ପଂକ୍ତିରେ—

'ତେବେ ସ୍ୱପ୍ନର ଅର୍ଥ କଣ...
ନିରାପତ୍ତା, କଷ୍ଟ ଲାଘବର ପନ୍ଥା
ଅଜ୍ଞାତ ଆର୍ଶୀବାଦ କିମ୍ବା ପୁରସ୍କାର ସମର୍ଥନ—' (ପୃ-୯୯)

ଏହି କବିଙ୍କର ଶ୍ଳେଷୋକ୍ତି—କିନ୍ତୁ ସ୍ୱପ୍ନର ଏକ ଉଦ୍ଦେଶ୍ୟ ଅଛି ବୋଲି କବି ସ୍ୱୀକାର କରନ୍ତି ଓ 'ବିନା ଉଦ୍ଦେଶ୍ୟରେ ସ୍ୱପ୍ନ ଅର୍ଥହୀନ' ବୋଲି ବ୍ୟକ୍ତ କରନ୍ତି । ସ୍ୱପ୍ନର ଏପରି କିଛି ମହତ୍ ଉଦ୍ଦେଶ୍ୟକୁ ସେ କବିତାରେ ରୂପାନ୍ତରିତ କରନ୍ତି, ଯାହାର ଫଳଶ୍ରୁତି ହେଉଛି ୧୯୯୨ରେ ପ୍ରକାଶିତ ତାଙ୍କର କାବ୍ୟ ଗ୍ରନ୍ଥ 'ସ୍ୱପ୍ନ ବିନିମୟ' ।

ସ୍ୱପ୍ନଠାରୁ କବିତାକୁ ବିଚ୍ଛିନ୍ନ କରିବାର ଦୁଃସାହସ ଏଯାବତ୍ କେହି କରି ନାହାନ୍ତି । ଅନ୍ୟ ପକ୍ଷରେ କବିତାର ମନସ୍ତାତ୍ତ୍ୱିକ ଦିଗ ଆଲୋଚନା ବେଳେ ସ୍ୱପ୍ନ ସହିତ ଏହାର ସାମଞ୍ଜସ୍ୟ ଉପରେ ଗୁରୁତ୍ୱ ଦିଆଯାଇଛି । କାରଣ ଉଭୟ କ୍ଷେତ୍ରରେ ମଣିଷର ପ୍ରବୃତ୍ତି ଓ ଅବଚେତନର ପ୍ରଭାବ ସ୍ୱୀକାର୍ଯ୍ୟ । ଏଠାରେ କ୍ରିଷ୍ଟୋଫର୍ କଡ୍‌ୱେଲ୍‌ଙ୍କ ନିମ୍ନୋକ୍ତ ବିଶ୍ଳେଷଣଟି ପ୍ରଣିଧାନ ଯୋଗ୍ୟ ।

Dream moulds reality to the instincts, and is therefore of little use except to guard the dreamer from external reality and so

keep him sleeping. Poetry moulds the instincts to reality, and is therefore useful for it does not protect the reader from reality but puts him in good heart to grapple with it. Poetry is inverted dream– (Illusion and Reality)

କବିତାକୁ ଏକ ଓଲଟ ସ୍ୱପ୍ନ (inverted dream) କହିବାର ତାତ୍ପର୍ଯ୍ୟ ହେଉଛି–ଏହା ସ୍ୱପ୍ନ ସହିତ ବାସ୍ତବତାକୁ ସଂଯୁକ୍ତ କରେ ଓ ସେଇ ଭାବରେ ଏହା ମଣିଷର ସ୍ଥିତି, ପ୍ରବୃତ୍ତି ତଥା ସମାଜ ସହିତ ସମ୍ପର୍କୀଭୂତ ହୁଏ । ଏଇ ପରିପ୍ରେକ୍ଷୀରେ କବି ହରିହର ମିଶ୍ରଙ୍କ ସ୍ୱପ୍ନାଭିଳାଷ ଦୁଇଟି ସ୍ତରରେ ପର୍ଯ୍ୟବସିତ । ଗୋଟିଏ ହେଉଛି ବ୍ୟକ୍ତିଗତ ସ୍ତର ଓ ଅନ୍ୟଟି ସାର୍ବଜନୀନ ସ୍ତର । ଉଭୟ ସ୍ତର ଭିତରେ ଏକ ନିଗୂଢ଼ ସମ୍ପର୍କ ରହିଛି ଓ ରହିବା ସ୍ୱାଭାବିକ । କବି ଏଠାରେ ସ୍ୱପ୍ନ ବିନିମୟ କରିବାକୁ ଚାହାଁନ୍ତି ନିଜ 'ଜୀବନର ପ୍ରତିଟି ସ୍ଖଳନ ସହିତ' । ପୁଣି ବୃହତ୍ତର ଅର୍ଥରେ 'ବିନିମୟ' ହେଉଛି ନିଜର ସ୍ୱପ୍ନକୁ ଅନ୍ୟକୁ ବାଣ୍ଟିବା ଓ ଅନ୍ୟମାନଙ୍କର ସ୍ୱପ୍ନକୁ ନିଜ ପାଇଁ ମାଗିନେବା । ତେଣୁ 'ସ୍ୱପ୍ନ ବିନିମୟ'ର କାବ୍ୟ–ଯାତ୍ରାରେ ଗୋଟିଏ ପର୍ଯ୍ୟାୟରେ ଅସ୍ତିତ୍ୱର ଦ୍ୱନ୍ଦ, ପ୍ରେମ, ବିବାହ ଇତ୍ୟାଦି ଓ ଅନ୍ୟ ପର୍ଯ୍ୟାୟରେ ଆସନ୍ତି ମଣିଷର ସାର୍ବଜନୀନ ସମସ୍ୟା, ତାର ଭବିତବ୍ୟ ଓ ସେଥିପ୍ରତି ଏକ ସଚେତନ ଦୃଷ୍ଟିଭଙ୍ଗୀ ।

ଜୀବନ ଯାତ୍ରାର ଦୃଶ୍ୟ ଭିତର କଥା ଏ ସଙ୍କଳନର ପ୍ରାୟ ପ୍ରତ୍ୟେକ କବିତାରେ କବି ସ୍ୱପ୍ନକୁ ଭେଟନ୍ତି । ଏ ସବୁ ସ୍ୱପ୍ନର ରୂପ ଭିନ୍ନ ଭିନ୍ନ, କେଉଁଠି ଏହା କରୁଣ ତ କେଉଁଠି ଏହା କୋମଳ, ଯାହାର ଉଦାହରଣ ଏହିପରି :

'ଘୂରିବା ନିଶ୍ଚିତ କିନ୍ତୁ ଘରେ 'ତା'ର
ସ୍ତମ୍ଭ ଓ ଖୀଲାଣର ଧୂଆଁ ଏବଂ ଆଲୋକର
ଟଳମଳ ସ୍ୱର୍ଗ ଦିଶେ ଭୟଙ୍କର... ସର୍ପର ବିବର-'

(ସ୍ୱପ୍ନ ବିନିମୟ–ପୃ-୨)

'ସ୍ୱପ୍ନ ସବୁ ଲାଜକୁଳୀ ଫୁଲ ଭଳି
ଛୁଇଁଲେ ହିଁ ଆଖିପତା ନଇଁ ଯାଏ
ସଂସାରର ବୋଝ ସବୁ ଲଦି ହୋଇଯାଏ' (ଆବିଷ୍କାର ମୁହୂର୍ତ୍ତର–ପୃ-୩୨)

ସ୍ୱପ୍ନ ସହିତ ଆସେ ଭଲ ପାଇବା ଓ ପ୍ରେମ । ପ୍ରେମ ଓ ଶୃଙ୍ଗାର ମାନବୀୟ ଅସ୍ତିତ୍ୱର ଏକ ଅବିଚ୍ଛିନ୍ନ ଅଂଶ । କବି ଶୃଙ୍ଗାର ଭିତରେ ଦେଖନ୍ତି ମହାକାଳକୁ ! 'ଲୀନ ହେଲା ମହାକାଳ/ ନିଜ ଦେହେ ନିଜର ଶୃଙ୍ଗାର ।' ('ରଥ ଚାଲିଗଲା ପରେ'–ପୃ-୮), 'ଶୃଙ୍ଗାର', 'ମଧ୍ୟଯୁଗ',

'ନିଜସ୍ୱ ସାମ୍ରାଜ୍ୟ',–'ଥାଅ ବା ନଥାଅ ତୁମେ' ପ୍ରଭୃତି କବିତାରେ କବି ପ୍ରେମର ଏକ ସ୍ୱପ୍ନିଳ ଅବସ୍ଥାକୁ ସୁନ୍ଦର ଭାବେ ବ୍ୟକ୍ତ କରନ୍ତି ଯେପରି–'କେହି ସୁନ୍ଦର ନୁହେ ଏତେ ଆମ ବ୍ୟତୀତ/ହଜିବାର ଆଶ୍ଲେଷ ପଥରେ ଏ ଦେହର ।' (ପୃ-୧୦) ବା 'ଆଇନା ଭାଙ୍ଗି ଗଲେ ଲକ୍ଷ ଲକ୍ଷ ମୁଁ ହୋଇ/ଲକ୍ଷ ଲକ୍ଷ ତୁମେ ହୋଇ ମୃତ୍ୟୁ ଆସେ' (ପୃ-୨୫) । କାବ୍ୟ ପୁରୁଷ ମୁହଁଟି ଏଠି ସ୍ୱପ୍ନ ପରି ଝାପ୍‌ସା ଅଥଚ ଝଲମଲ । ସ୍ୱପ୍ନ ହିଁ ତାର ଅସ୍ତ୍ର ଯାହାକୁ ନେଇ ସେ ବାସ୍ତବତାର ମାଟି ଖୋଜିବାକୁ ଆଗେଇଯାଏ । କବିଙ୍କ ଭାଷାରେ–'ହୁଏ ତ ମୋ' ଜୀବନର ଦୃଶ୍ୟାରମ୍ଭ ହେବ ସେହିଦିନ/ଯେଉଁଦିନ ହସୁଥିବ ଚିନ୍ତାଗ୍ରସ୍ତ ପୃଥିବୀ/ମୋ' ସ୍ୱପ୍ନ ମୁତାବକ' ('ପ୍ରଶ୍ନୋତ୍ତର'–ପୃ-୩୨) । ଏ କ୍ଷେତ୍ରରେ 'ପ୍ରଶ୍ନ ସବୁ ସ୍ୱପ୍ନ ହୋଇଯା'ନ୍ତି ଓ ସ୍ୱପ୍ନ ସବୁ ପ୍ରଶ୍ନରେ ରୂପାନ୍ତରିତ ହୁଅନ୍ତି । ତେଣୁ ସ୍ୱର୍ଗତଃ କବି ବିବେକ ଜେନାଙ୍କୁ ସମ୍ବୋଧନ କରି କବି ସେଇ ସ୍ୱପ୍ନର ଆବାହନ କରନ୍ତି–'ତାରାରେ ତାରାରେ ଦିଅ ଯୁଦ୍ଧର ଖବର/ସ୍ୱପ୍ନରେ ସ୍ୱପ୍ନରେ ଦିଅ ମରଣର ଭୟ/ବଞ୍ଚିବାର ପ୍ରଶ୍ନ ଦିଅ, ଯୋଜନ ଯୋଜନ/ପୁଣି ସ୍ୱପ୍ନକୁ ଲମ୍ବାଇଦିଅ/ନିରୁତ୍ତର ନିତି ସକାଳରେ । ('ହ୍ୟାଲି', ପୃ-୪୮) ।

କାବ୍ୟ ଭାବନାର ଏପରି ଏକ ସ୍ତରରେ ସ୍ୱପ୍ନ ପରିବ୍ୟାପ୍ତ ହୋଇଯାଏ ଓ ବଞ୍ଚିବାର ପ୍ରଶ୍ନ ମଣିଷର ଜୀବନ ସଂଗ୍ରାମର ଇଲାକାକୁ ପ୍ରବେଶ କରେ । କବି ଅଗଣିତ ମଣିଷଙ୍କ ସ୍ୱପ୍ନକୁ ଗ୍ରହଣ କରନ୍ତି ଓ ତାକୁ କାବ୍ୟାୟିତ କରନ୍ତି । ଏ ସଙ୍କଳନର ସମୁଦାୟ ଏକାବନଟି କବିତା ଭିତରୁ ପ୍ରାୟ ଅର୍ଦ୍ଧାଧିକ କବିତାରେ ସାମାଜିକ ଚେତନା ବିଭିନ୍ନ ରୂପ ନେଇ ପ୍ରତିଫଳିତ । ବ୍ୟଙ୍ଗ, କରୁଣା, ଆଶା ଓ ସମ୍ଭାବନା ଭିତରେ ସ୍ୱପ୍ନ ବିନିମୟରେ ଏଇ ପର୍ଯ୍ୟାୟଟି ଉନ୍ମୋଚିତ । କବି ସ୍ୱପ୍ନକୁ ଇସ୍‌ପାତ ଠାରୁ ଶକ୍ତ କରିବାକୁ ଚାହାନ୍ତି ଯେପରି–'ଶୋକର ଫର୍ଣ୍ଣେସ୍‌ରେ ସ୍ୱପ୍ନର ତାରକସୀ/ଫୁଲସବୁ ଇସ୍ପାତଠୁ ଟାଣ ହୋଇ ଫୁଟୁଥାଉ ଗଢ଼ା ହେଉଥାଉ ।' ('ତାରକସୀ'-ପୃ-୩୮) ବା କୌଣସି ଧର୍ମଘଟର ସଫଳତା କାମନା କଲାବେଳେ ଉଚ୍ଚାରଣ କରନ୍ତି–ଦିଗନ୍ତରୁ ଫେରିଆସୁଥିବା ଘଣ୍ଟା ଧ୍ୱନି/ଦୁକ୍ ଦୁକ୍ ମୋର ସ୍ୱର/ସ୍ଥିର କାଚ ଆଖି ଗୁଡ଼ିକରେ/ଲୁହ ଆଉ କିରଣର ଲେଖନୀରେ ଲେଖା ଅନୁନୟ/ଏହିଥର ନିଶ୍ଚିତ ବିଜୟ' ('ସଫଳ ହେବାକୁ ଥିବା ଧର୍ମଘଟ', ପୃ-୪) । ସେହିପରି କଳାହାଣ୍ଡିର ଅକାଳ ଦୁର୍ଭିକ୍ଷକୁ ଲକ୍ଷ୍ୟ କରି ନିଜ ସମାଜ ପ୍ରତି ତୀବ୍ର ବିଦ୍ରୂପ କରନ୍ତି–'ସତେ ଅବା ଆମେ ସବୁ ଅସମର୍ଥ ବିଦୂଷକ/ତାଳିମାରି ହସିବା ବ୍ୟତୀତ ଆଉ କିଛି ହେବ ନାହିଁ/ଉତ୍କଳୀୟ ହାତରେ ଆମର' ('ସେ ଜିଲ୍ଲା କିମ୍ବଦନ୍ତୀ'–ପୃ-୨୮) କୌଣସି ସ୍ୱପ୍ନଭଙ୍ଗର ଲଗ୍ନରେ କବି ଆହତ ହୁଅନ୍ତି ଓ ମଣିଷର ଦୁର୍ଭାଗ୍ୟରେ ତାଙ୍କରି ସ୍ୱର ବ୍ୟାକୁଳ ହୋଇଉଠେ–'ସ୍ୱପ୍ନର ଅଟ୍ଟାଳିକା ଗଢ଼ା ହେବ ଆଗାମୀ ଶତାବ୍ଦୀର ନିର୍ଜନ ଘାଟରେ/ଯାହା ପାଇଁ ମଣିଷ ନଥିବ' । ('ସ୍ୱପ୍ନ ପାଇଁ କେହି ନାହିଁ'–ପୃ-୮୮) । 'ଶୁନଃଶେଫର

ପ୍ରାର୍ଥନା' ଭିତରେ ସେ ଦେଖନ୍ତି କ୍ଷମତା ଓ ସ୍ୱାର୍ଥର ନିଷ୍ଠୁରତା ପାଖରେ ସମଗ୍ର ଯୁବ ସମାଜର କାତରତା, ଅଥଚ ସେଠି ମଧ ମଣିଷର ଚିରନ୍ତନ ଭଲପାଇବାର ସ୍ୱର । କବିଙ୍କର ଆଶାବାଦ ଏକ ଦୀପ୍ତ ଆବେଗ ନେଇ ଅନେକ କବିତାରେ ରୂପାୟିତ ହୁଏ ଯାହାର ଗୋଟିଏ ସୁନ୍ଦର ଉଦାହରଣ ହେଉଛି–

ତାରାଟିଏ ଖସୁଥିବ.......ତାରାଟିଏ

କଣ୍ଠନଳୀର ସୁଡ଼ଙ୍ଗରେ.......ଗର୍ଭଭୂମିରେ

ତାରାଟିଏ............ତାରାଟିଏ

ଯୁଗ ଯୁଗ ଅନ୍ଧାରର ପ୍ରତିମାରେ

ଏହ ମାତ୍ର ନୀରବ ଚିତ୍କାର କରେ ବୀଜଟିଏ ('ସମ୍ଭାବନା',–ପୃ-୧୯)

ଆଶା ଓ ବିଶ୍ୱାସର ବିନିମୟ ଭିତରେ କବି ନିଜ କାବ୍ୟ ଚେତନାକୁ ଉତ୍ତରିତ କରନ୍ତି । ମଣିଷ ପାଇଁ ନିଜର ଦରଦ ବ୍ୟକ୍ତ କରନ୍ତି । ବ୍ୟକ୍ତିଗତ ଦ୍ୱନ୍ଦ୍ୱ ଓ ଅସହାୟତା ସେଠି ଗୌଣ ହୋଇଯାଏ । ସ୍ୱପ୍ନ ବାସ୍ତବତା ସହିତ ସଂଯୁକ୍ତ ହୁଏ ଓ ଏକ ବିଶ୍ୱଜନୀନ ସ୍ୱର୍ଶ ଭିତରେ ରୂପାନ୍ତରିତ ହୁଏ । କବି ସେଠି ସ୍ୱପ୍ନବାଦୀ ହୋଇ ରହେ ନାହିଁ । ସ୍ୱପ୍ନର ବିନିମୟ ଭିତରେ ହିଁ ସ୍ୱପ୍ନବାଦରୁ ମୁକ୍ତି ମିଳେ ।

କବିତା ରଚନା କ୍ଷେତ୍ରରେ କବି ହରିହର ମିଶ୍ର ଜଣେ ପ୍ରବୀଣ ସିଦ୍ଧହସ୍ତ କବି । ବିଗତ ତିନି ଦଶନ୍ଧି ଧରି ଅବିରାମ କାବ୍ୟ ସାଧନା ଭିତରେ ସେ ନିଜସ୍ୱ ସ୍ୱର ଓ ଶୈଳୀକୁ ପ୍ରତିଷ୍ଠିତ କରିଛନ୍ତି ଓ ଅନେକ ସଫଳ କବିତା ଗ୍ରନ୍ଥ ଓଡ଼ିଆ ସାହିତ୍ୟକୁ ଦାନ କରିଛନ୍ତି । 'ସ୍ୱପ୍ନ ବିନିମୟ' ସେଥିରୁ ବ୍ୟତିକ୍ରମ ନୁହେଁ । ଏ ପୁସ୍ତକର ପ୍ରତ୍ୟେକ କବିତାରେ ତାଙ୍କ କାବ୍ୟ ଶୈଳୀର ଚମତ୍କାରିତା ଲକ୍ଷ୍ୟ କରାଯାଇପାରେ । ତାହାର କିଛି ଉଦ୍ଧୃତି ଏହିପରି :

'ସୁନ୍ଦରୀ ଛାତିରେ ଏତେ ତାତି ଯେ / ସମସ୍ତ ଆଲୋକ ସଜ୍ଜା ହୁଏ ନଗରୀର
ସୁନ୍ଦରୀ ରକ୍ତରେ ଏତେ ଅନ୍ଧାର ଯେ / ପରିବ୍ୟାପ୍ତ କାଳପରି ପରବର୍ତ୍ତୀ ମହାସମରର' ।
(ପୃ-୫)

'ଇସ୍ତାହାର'ରେ ପ୍ରକାଶିତ ।



# ସଂନ୍ଧ୍ୟା ଦର୍ଶନ

## (୨)

ପ୍ରତ୍ୟେକ କବି ପାଇଁ ତା'ର କାବ୍ୟ ସୃଷ୍ଟିର ଏକ ନିର୍ଦ୍ଦିଷ୍ଟ ଉତ୍ସ ଥାଏ । ସେଇ ଉତ୍ସ ଭିତରେ ଥାଏ ତା'ର କବିତାର ଆତ୍ମା; ନିଜର ସମସ୍ତ ସମ୍ମୋହନ ନେଇ ତା' ଭିତରୁ ବାହାରି ଆସନ୍ତି କବିତାର ଶବ୍ଦମାନେ । କବିତା ଜ୍ଞାତସାରରେ ହେଉ ବା ଅଜ୍ଞାତ ସାରରେ- ଏହି ଉତ୍ସର ରଂଗ- ସ୍ୱାଦ' ଆଉ ଗନ୍ଧ କବିର କବିତାରେ ପ୍ରକଟିତ ହୁଏ । କବିର ପ୍ରତ୍ୟେକ ଅନ୍ୱେଷଣ, ଆବେଗ ଓ ସ୍ୱପ୍ନ ସେଇ ଉତ୍ସର ଆଦି ମୂଳକୁ ସ୍ପର୍ଶ କରିବାକୁ ପ୍ରଧାବିତ ହେଉଥା'ନ୍ତି । କବି ସେଥିରେ କେତେଦୂର ସଫଳ ହୁଏ, ତାହା ତା'ର ସାମର୍ଥ୍ୟ ଓ ଉପଲବ୍ଧି ଉପରେ ନିର୍ଭର କରେ । କିନ୍ତୁ ସୃଜନର ଅନୁଭବ ଓ ପ୍ରକ୍ରିୟା ଭିତରେ ଏହି ଉତ୍ସ ହିଁ କବିର କାବ୍ୟ ସୃଷ୍ଟିକୁ ତା'ର ସ୍ୱାତନ୍ତ୍ର୍ୟ ପ୍ରଦାନ କରେ ।

ଓଡ଼ିଆ କବିତା କ୍ଷେତ୍ରରେ କବି ହରିହର ମିଶ୍ର ନିଜ କାବ୍ୟ ସ୍ୱରର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିସାରିଛନ୍ତି । ଏକଥା ତାଙ୍କର ପ୍ରଥମ କାବ୍ୟ ଗ୍ରନ୍ଥଠାରୁ ଆରମ୍ଭ କରି ଏ ଯାବତ୍ ପ୍ରକାଶିତ ବାରଖଣ୍ଡ କବିତା ସଙ୍କଳନ ମାଧ୍ୟମରେ ପ୍ରତିଫଳିତ । ସଦ୍ୟ ପ୍ରକାଶିତ କବିତା ଗ୍ରନ୍ଥ 'ସନ୍ଧ୍ୟା ଦର୍ଶନ' ମଧ୍ୟ ଏହାର ବ୍ୟତିକ୍ରମ ନୁହେଁ ।

ସାଧାରଣ ଭାବରେ କହିବାକୁ ଗଲେ, କବି ହରିହରଙ୍କ କାବ୍ୟ ସୃଷ୍ଟିର ଉତ୍ସ ହେଉଛି ଏକ ଐତିହ୍ୟ, ଯାହାର ମୂଳରେ ବିଦ୍ୟମାନ ଏକ ଜଗନ୍ନାଥ ଚେତନା । ଏହା କବିଙ୍କ ପାଇଁ କୌଣସି ଧର୍ମୀୟ ଚେତନା ନୁହେଁ । ଏହା ମୁଖ୍ୟତଃ ଏକ ଉତ୍କଳୀୟ ଚେତନା, ଏକ ଉତ୍କଳୀୟ ଐତିହ୍ୟ । ଏହାକୁ ଗଠନ କରିଥା'ନ୍ତି ଏଇ ମାଟିର ଇତିହାସ, ସଂସ୍କୃତି, ଏହାର ଜନଗଣଙ୍କ ଜୀବନଧାରା ଓ ଜୀବନ ଦୃଷ୍ଟି । ଆଧୁନିକ ଓଡ଼ିଆ କବିତା ତା'ର ଯାତ୍ରାରମ୍ଭ କାଳରୁ ବିଶେଷ ଭାବେ ପାଶ୍ଚାତ୍ୟ ଭାବଧାରା ଦ୍ୱାରା ପ୍ରଭାବିତ ହୋଇ ଆସିଛି । ଅନେକ କ୍ଷେତ୍ରରେ ତେଣୁ ତା'ର ଉତ୍ସକୁ ଚିହ୍ନିତ କରିବା ଦୁରୂହ ମନେ ହୋଇଛି । ନିଜ ମାଟି ଠାରୁ ବହୁ ମାତ୍ରାରେ ଦୂରେଇ ରହିଛି ଆଧୁନିକ କବିତା । ଅନ୍ୟ ପକ୍ଷରେ ହରିହର ମିଶ୍ର ଜଣେ ବିଶିଷ୍ଟ ଆଧୁନିକ କବି ହୋଇ ମଧ୍ୟ ଐତିହ୍ୟ ସହିତ ନିଜକୁ ସଂଯୁକ୍ତ କରିଛନ୍ତି । ଏହି ପରିପ୍ରେକ୍ଷୀରେ କୁହାଯାଇପାରେ

ଯେ ଐତିହ୍ୟ ଓ ଆଧୁନିକତା ପରସ୍ପର ସହିତ ସମନ୍ୱିତ ହୋଇପାରିବା ସମ୍ଭବ । କବି ହରିହର ଆଧୁନିକତାକୁ ଏକ ଚାବି ଭାବରେ ଗ୍ରହଣ କରନ୍ତି । ('ସନ୍ଧ୍ୟା ଦର୍ଶନ'ର ଭୂମିକା ଦ୍ରଷ୍ଟବ୍ୟ) । ହୁଏତ ଏ ଆଧୁନିକତା କେବଳ ଏକ ରଚି ଭିତରେ ସୀମିତ ନୁହେଁ । ଏହା ତାଙ୍କର କାବ୍ୟାନୁସନ୍ଧାନର ପ୍ରକ୍ରିୟା, ଯେଉଁଠି ଅବଚେତନ ଓ ଅଚେତନର ସ୍ତର ଦେଇ ସେ ଐତିହ୍ୟର ମୂଳରୂପକୁ ଉଦ୍‌ଘାଟନ କରିବାକୁ ସାଧନାରତ ।

କବି ହରିହରଙ୍କ ଶଙ୍ଖନାଭି, ଅକ୍ଷମ ଦେବତା, ଚାହାଁଣି ମଣ୍ଡପ, ସ୍ୱପ୍ନ ବିନିମୟ, ଭିତିରି ଚନ୍ଦନ ଇତ୍ୟାଦି କବିତା ସଂକଳନରେ, ତାଙ୍କର ଏହି ଐତିହ୍ୟ ଚେତନାର ଉତ୍ତରଣ ଘଟିଛି । ମୁକ୍ତ କାବ୍ୟ 'ଦର୍ପଣ ଶିଳା'ରେ ଏହି ଚେତନା ସାମଗ୍ରିକ ରୂପ ଗ୍ରହଣ କରି କବିଙ୍କ ପାଇଁ ବିଶ୍ୱଦୃଷ୍ଟି ସୃଷ୍ଟି କରିପାରିଛି । ଦର୍ପଣ-ଶିଳାରେ ଶିଳାର ସ୍ୱରୂପ ହେଉଛି- ମଣିଷର ପାର୍ଥିବ ସ୍ଥିତି, ତା'ର ରକ୍ତ, ମାଂସ, ଅସ୍ତିତ୍ୱ ତଥା ପୃଥିବୀ । ଏହି ଦର୍ପଣରେ ପ୍ରତିଫଳନର ସ୍ୱରୂପ ହେଉଛି- ସମୟ ଇନ୍ଦ୍ରିୟ, ଚେତନା, ଆବେଗ, ଆତ୍ମା ଓ ସର୍ବୋପରି ଆତ୍ମଜ୍ଞାନ । ଏଇ ଦୁଇ ବିଭାବର ସମନ୍ୱୟରେ ରହିଛି ମଣିଷ ପାଇଁ ଏକ ସାମଗ୍ରିକତା । ଆବାହନ, ଅଭ୍ୟୁଦୟ, ଅବକ୍ଷୟ ଓ ଅପବର୍ଗର ପଥ ଦେଇ ଆସୁଛି ଐତିହ୍ୟ ଓ ଇତିହାସର ଅବବୋଧ । ଆତ୍ମଜ୍ଞାନ ଓ ଆମ ପରିଚୟ ଭିତରେ ମୁକ୍ତିର ଉପଲବ୍‌ଧି । କବିତା ସଙ୍କଳନ 'ଅଣ ଅକ୍ଷର'ରେ କବିଙ୍କ ଐତିହ୍ୟାନୁରକ୍ତି ସାମାଜିକ ଚେତନା ସହିତ ସଂଯୁକ୍ତ ହୋଇଛି 'ଅନାମ' ଚେତନା ମାଧ୍ୟମରେ । ଏଠି ମଧ୍ୟ ମାନବିକ ସଙ୍ଘାତ ଭିତରେ କବି ଐତିହ୍ୟର ମୂଳ ଉତ୍ସକୁ ଖୋଜନ୍ତି । 'ସନ୍ଧ୍ୟା ଦର୍ଶନ'ରେ ଏହି ଅନ୍ୱେଷଣ ଆଉ ଏକ ଦିଗନ୍ତକୁ ସ୍ପର୍ଶ କରେ । ଏଠାରେ ଭୌତିକ ଓ ଆଧିଭୌତିକ ଦ୍ୱନ୍ଦ୍ୱ ଏକ ପ୍ରେମାନୁଭୂତି ସହିତ ବିଜଡ଼ିତ । 'ସନ୍ଧ୍ୟା ଦର୍ଶନ' ତେଣୁ ଦାର୍ଶନିକତାର ନାନ୍ଦୀପାଠ ନୁହେଁ, ଏହା ଏକ କାବ୍ୟିକ ଉତ୍ତରଣ- କବିତାର ଗତିଶୀଳ ତଥା ଅନ୍ତର୍ଭେଦୀ କ୍ରିୟା ଭିତରେ ସତ୍ୟ ଦର୍ଶନର ପ୍ରଚେଷ୍ଟା କବିଙ୍କ ନିଜ ବକ୍ତବ୍ୟ ଅନୁଯାୟୀ-['ଶବ୍ଦ ବ୍ରହ୍ମର ସୂକ୍ଷ୍ମ ସତ୍ୟକୁ ରୂପ ଦେବାର ପ୍ରାଞ୍ଜିକ ପ୍ରୟାସ ଠାରୁ ରସାଣିତ ଆବେଗ, କାରୁଣିକ ହୃଦୟବତ୍ତା ଉପରେ ଅଗ୍ରାଧିକାର ଦେଇ କାବ୍ୟିକ ପ୍ରୀତିବୋଧକୁ ବିଶ୍ୱବୋଧ ସ୍ତରକୁ ଉନ୍ନୀତ କରାଇବାରେ ଏହାର ପ୍ରୟୋଗ ହୋଇଅଛି । ଦେହର ବାସ୍ତବତାକୁ ସ୍ୱୀକାର କରି ମରଣର ଅନିବାର୍ଯ୍ୟ ସତ୍ୟକୁ ଗ୍ରହଣ କରିବା ସତ୍ତ୍ୱେ ବି ଦେହାତୀତ ଓ ଚିରନ୍ତନ ପ୍ରତି ଆସ୍ଥାବୋଧ କେବଳ ଜୀବନ ବିକାଶର ଜୟଗାନ କରିବା ନୁହେଁ, ମାନବ ସ୍ଥିତିକୁ ଶୂନ୍ୟତାର ମହାପ୍ରସାର ଭିତରେ ଅମରତ୍ୱର ଚେତନାରେ ପହଁଚାଇବା ହିଁ, ଏହାର ଲକ୍ଷ୍ୟ । ଏହି ନିତ୍ୟ ନୂତନ ଅମୃତ ଦର୍ଶନ ହିଁ 'ସନ୍ଧ୍ୟା ଦର୍ଶନ' ।']

(ନିଜର ଦୁଇପଦ, ସନ୍ଧ୍ୟା ଦର୍ଶନ)

'ସନ୍ଧ୍ୟା ଦର୍ଶନ'ର କବିତା ମାନଙ୍କୁ ଚାରୋଟି ପର୍ଯ୍ୟାୟରେ ଯଥା :- ଶୂନ୍ୟ ବନ୍ଦନା, ଯୋଡ଼ା ଆଷାଢ଼, ଅପୋଡ଼ା ଭୂଇଁ ଓ ନିତ୍ୟଲୀଳାରେ ବିଭକ୍ତ କରାଯାଇଛି । ସଙ୍କଳନର କବିତା ସବୁ ଗୋଟିଏ ଭାବଭୂମିରେ ପରସ୍ପର ସହିତ ସଂଯୁକ୍ତ ହୋଇ ପରସ୍ପରର ପରିପୂରକ ମନେ ହୁଅନ୍ତି । ଶୂନ୍ୟର କଳନାରୁ ଆରମ୍ଭ ହୁଏ 'ସନ୍ଧ୍ୟା ଦର୍ଶନ'ର କାବ୍ୟଯାତ୍ରା । ଏଠାରେ ଶୂନ୍ୟତାର ରୂପ ପାଶ୍ଚାତ୍ୟ ଧର୍ମୀ ସ୍ଥିତିବାଦୀ ଶୂନ୍ୟତା ନୁହେଁ, ଯାହା ସହିତ ମଣିଷର ନିଃସଙ୍ଗତା ଓ ବିଚ୍ଛିନ୍ନତା ବୋଧ ଜଡ଼ିତ । ଏହି ଶୂନ୍ୟତାର ଚିତ୍ର ଭାରତୀୟ ଭାବାବଳୀ ତଥା ଆଧ୍ୟାତ୍ମିକ ଭାବଧାରାର ଅନୁଗାମୀ । ତେଣୁ ଏକ ମହାଶୂନ୍ୟତା ଭିତରେ ଆସେ ଏକ ଅନନ୍ତ ଜୀବନର ଉପଲବ୍ଧି । ମହାଶୂନ୍ୟ ଏଠି ନିସ୍ତବ୍ଧ, ନିର୍ଜନ ନୁହେଁ; ଏହା ସୃଷ୍ଟିର ସମସ୍ତ ସଂଭାରକୁ ନେଇ ଜୀବନ୍ତ ଓ ମୁଖରିତ । ଏହା ସେହି ମହାକାଶ ଯା'ର ତଳେ ରହିଛି 'ଆଶ୍ୱାସନାର ମାଟି' । ଏଠି ସୃଜନର ତଥା ଜୀବନର ଅସରନ୍ତି ନୃତ୍ୟ :-

'ହୋଇଥାଇ ଶୂନ୍ୟର ଜନନ ଭୂମି/ ସୃଷ୍ଟିର ସ୍ପନ୍ଦନରେ ନକ୍ଷତ୍ର ମାଳିନୀ ସେ ଯେ ଇଚ୍ଛାମୟୀ/ ଶକ୍ତି ପ୍ରବାହିନୀ ପ୍ରତିରନ୍ଧ୍ରେ ଜଡ଼ ଅବା ଚେତନରେ ଛନ୍ଦେ ଛନ୍ଦେ ଝୁଲି ନାଚେ/ ଅପୂର୍ବ ମାହାରୀ'

(ମଙ୍ଗଳାଚରଣ, ପୃ- ୧)

ଏକ ଅନ୍ତରଙ୍ଗ, ସ୍ୱପ୍ନିଳ ମୁହୂର୍ତ୍ତରେ କବି ଏଇ ଶୂନ୍ୟତା ଭିତରୁ ପୁନରୁଦ୍ଧାର କରନ୍ତି, ଐତିହ୍ୟକୁ, ଦେଖିପାରନ୍ତି 'ଅଶ୍ୱ ପୃଷ୍ଠରେ ଠିଆ ହୋଇଥିବା ପୂର୍ବ ପୁରୁଷଙ୍କ ଛାଇ' । କବି ସବୁଠି ଦେଖନ୍ତି ଶୂନ୍ୟତାର ସମାରୋହ - ସମ୍ପର୍କରେ, କର୍ମ ବନ୍ଧନରେ, ସଟିକ ପାଚେରିର ଦୁଇ-ପାଖରେ, ଶୂନ୍ୟ ଦେବୀଘରେ, ପୁଣି ଶ୍ମଶାନରେ ।

'ଶୂନ୍ୟଗୋସାଣୀ'ଙ୍କ ଭିତରେ ଆବିଷ୍କାର କରନ୍ତି ମାତୃତ୍ୱକୁ, ଯେପରି- 'ପ୍ରତିଟି ଦେବୀଙ୍କ ସ୍ତନରେ/ ଅର୍ଦ୍ଧମାତ୍ରା ଓ ବିନ୍ଦୁର ଲୟ ରଖି/ ମୁଁ ପ୍ରଣାମ କରେ କାଳୀଦାସ/ ଅନ୍ଧାରର ଶୂନ୍ୟ ବୁକେ ଭାସି ଆସେ/ ମଗ୍ନ ରାଜହଂସ (ଶୂନ୍ୟ ଗୋସାଣୀ, ପୃ- ୧୪) । ପୁଣି ନାୟିକା ଧରିତ୍ରୀ ସାମ୍ନାରେ ଆସି ଠିଆ ହୁଏ ଶୂନ୍ୟ ପୁରୁଷ । ଶୂନ୍ୟ ଭିତରେ ସୃଷ୍ଟି ହୁଏ ବିଭିନ୍ନ ଋତୁଙ୍କ ଆଡ଼ମ୍ବର । ପ୍ରେମ ଓ ଶୂନ୍ୟତା ପରସ୍ପରକୁ ଭେଟନ୍ତି ଓ ଏକାକାର ହୋଇଯା'ନ୍ତି । 'ଶୂନ୍ୟ ବନ୍ଦନା' ଭିତରେ ପ୍ରେମ ଓ ଶୂନ୍ୟତାର ମିଳନ ଶରୀର ଓ ମୃତ୍ୟୁର ଦ୍ୱନ୍ଦ୍ୱ ଭିତର ଦେଇ କାବ୍ୟାୟିତ ହୁଏ । କାୟା ପ୍ରବେଶ ଘଟୁଥାଏ କବି ପାଇଁ କାଳ କାଳ । ଏହା ଭିତରେ ଥାଏ ଦେହ ଓ ଦେହାତୀତର ଦ୍ୱନ୍ଦ୍ୱ, ଭୋଗ ଓ ବୈରାଗ୍ୟର ଦ୍ୱନ୍ଦ୍ୱ । କବି କିନ୍ତୁ ଗ୍ରହଣ କରନ୍ତି ଶରୀର, ଶୃଙ୍ଗାର ଓ ଶୂନ୍ୟତାର ଅନୁଭବକୁ- 'ଯେଉଁଠି ସବୁ ଯାହା ମିଶିଯାଏ/ ଏକ ହୋଇ ଲୁଚିଯାଏ

ଧୀରେ/ ହସର ଝରଣା ଛୁଟେ/ ଶୂନ୍ୟତାର ବୋଧ ଦିଏ/ ବର୍ଷାର ଲୟରେ'' (ଶୂନ୍ୟ ବନ୍ଦନା, ପୃ- ୧୮)

ଶୂନ୍ୟତାର ଏ ରସବୋଧ ନିର୍ଦ୍ଦିଷ୍ଟ କାବ୍ୟାକୃତି ଗ୍ରହଣ କରେ 'ଯୋଡ଼ା ଆଷାଢ଼' ପର୍ଯ୍ୟାୟର କବିତାମାନଙ୍କରେ । ଉତ୍କଳୀୟ ସଂସ୍କୃତି ପାଇଁ ଯୋଡ଼ା ଆଷାଢ଼ ଶବ୍ଦଟି ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ; କାରଣ ଏହି ସମୟରେ ହିଁ ଜଗନ୍ନାଥ ନବକଳେବର ଗ୍ରହଣ କରନ୍ତି । ପୁରୁଣା କଳେବରକୁ ଶବ ଭଳି ସମାଧି ଦିଆଯାଏ । ଲୋକାଚାର ଭିତରେ ଏହିପରି ପରିପୁଷ୍ଟ ହୁଏ ଆତ୍ମାର ଅବିନଶ୍ୱରତା ଓ ଶରୀର ପୁନରାଗମନର ଧାରଣା । ଏଠାରେ ମୃତ୍ୟୁ ଓ ପୁନର୍ଜନ୍ମ ଏକତ୍ର ପ୍ରତିଭାତ ହୁଅନ୍ତି । ନୂଆ ରୂପ ନେଇ ପୁଣି ଫେରିଯାଆନ୍ତି ଦେବତା ମଣିଷ ପାଖକୁ 'ଲୋଡ଼ିଲେ ସେ ଆସିଥାଏ/ ଭାସି ଭାସି ଧାଡ଼ି ପହଣ୍ଡିରେ/ ଅବା ଗୋଟି ପହଣ୍ଡିରେ/ ମରଣଠୁ ଭିନ୍ନ ଏକ ସତ୍ୟ ପୁଣି/ ଫେରି ଆସେ ପବନରେ/ ନିବିଡ଼ ଏ ଯୋଡ଼ା ଆଷାଢ଼ରେ' (ଅଗରୁ ବୃକ୍ଷ ଓ ଅଙ୍ଗାର ପୁରୁଷ, ପୃ.- ୨୨)

କବି ହରିହର ମିଶ୍ରଙ୍କର କବିତାର ଯୋଡ଼ା ଆଷାଢ଼ ପୁଣି ପ୍ରତିଫଳିତ ହୁଏ ମଣିଷର ବାସ୍ତବ ଜୀବନରେ, — ଦେହ, ପ୍ରେମ ଓ ମୃତ୍ୟୁର ଅବବୋଧରେ । ପ୍ରେମ ଭିତରେ ଦୁଇଟି ଦେହ ଯେପରି ଦୁଇଟି ଆଷାଢ଼ ଭଳି ମିଳିତ ହୋଇଯାଇପାରନ୍ତି, ଦୁଇଟି ପ୍ରଦୀପ ଭଳି ଜଳି ପାରନ୍ତି ଓ ଅଖଣ୍ଡ ଦୀପ ଓ ଅଖଣ୍ଡ ପ୍ରେମରେ ରୂପାନ୍ତରିତ ହୁଅନ୍ତି । ପ୍ରେମର ରହସ୍ୟକୁ କବି ଅନ୍ୱେଷଣ କରନ୍ତି 'ଶ୍ରୀରାଧାଙ୍କ ପାଦଦର୍ଶନରେ' । ପ୍ରେମ ଓ ପ୍ରେମିକାର ପଦାଘାଦ ଏଠି କବି ପାଇଁ ସମାନ । କାରଣ ସେ ପାଦ ପ୍ରେମର; ପୁଣି କବିଙ୍କ ଭାଷାରେ 'ଏକ କୋମଳ ପାପର' । ଏହା ହୁଏତ ପ୍ରେମର 'ଗୁପ୍ତଯାତ୍ରା' ଯାହାକୁ କେଉଁଠି, ନା କେଉଁଠି ବିଚ୍ଛେଦ ଅପେକ୍ଷା କରିଥାଏ । ଏ ବିଚ୍ଛେଦ ମୃତ୍ୟୁ ବି ହୋଇପାରେ । ସେଠି ଦେହର ଅବସାନ ଘଟେ କିନ୍ତୁ ପ୍ରେମ ତା'ର ଚିରନ୍ତନ ରୂପ ନେଇ ମୃତ୍ୟୁ ଉତ୍ସରେ ଝଟକୁ ଥାଏ । ଏଇ ଦାର୍ଶନିକ ଭାବନା ଚମତ୍କାର କାବ୍ୟ ରୂପ ଧାରଣ କରେ ଯେତେବେଳେ କବି କହନ୍ତି— 'ଦେହକୁ ଅନ୍ୟ ଏକ ଦେହରେ/ ବଦଳାଇ ଚାଲ ପ୍ରିୟତମା/ ତମେ ହିଁ ତ ଦେହ ମୋର/ ମୁଁ ଦେହ ତୁମର' ବା 'ଯୁଗଳ ଅଙ୍ଗରେ/ ମୃତ୍ୟୁ ହୁଏ ଦେହ/ ପୁଣି ପ୍ରେମ ହୁଏ ଆତ୍ମା ତା'ର/ ନିତ୍ୟ ସହବାସ ଏଠି ଜୀବନ ମୃତ୍ୟୁର' (ନବଯୌବନ) ।

ଯୋଡ଼ା ଆଷାଢ଼ କବିଙ୍କ ପାଇଁ କେବଳ ନିର୍ଦ୍ଦିଷ୍ଟ ସମୟ ବା ଋତୁ ନୁହେଁ, ଏହା ହୁଏତ ଦୁଇଟି ମିଳନାକାଂକ୍ଷୀ ପ୍ରାଣ, ଦୁଇଟି ବିଚ୍ଛେଦ ଜର୍ଜରିତ ଆତ୍ମା ଓ ସର୍ବୋପରି ଏକ ଯୋଗସୂତ୍ର, ଯାହା ଭିତରେ ଘଟ ରୂପାନ୍ତରିତ ହୁଏ ଓ ପ୍ରେମର ଦୀପ୍ତି ଘଟରୁ ଘଟକୁ ସଞ୍ଚରି ଯାଏ । ଏହି ପରିପ୍ରେକ୍ଷୀରେ ବ୍ୟଞ୍ଜନା ଲକ୍ଷଣୀୟ—

'ଅଛି ଚର୍ଚ୍ଚିତ କଳେବର/ ଅଥଚ ଖାତ ଖୋଳା ଚାଲିଛି
କୋଇଲି ବୈକୁଣ୍ଠରେ/ ଏକ ଯୋଡ଼ା ଆଷାଢ଼ରେ
ବିରହ ଓ ମିଳନରେ/ ବାହା ବେଦୀ ସୁଖ ପଲଙ୍କରେ'

(ଯୋଡ଼ା ଆଷାଢ଼, ପୃ- ୪୫)

ଏହିପରି ଯୋଡ଼ା ଆଷାଢ଼ର ଐତିହ୍ୟ ସହିତ ପ୍ରେମ ଓ ମୃତ୍ୟୁର ଜଟିଳ ଜିଜ୍ଞାସା ସମ୍ପର୍କୀଭୂତ ହୁଏ । ଐତିହ୍ୟ ଭିତରେ ହିଁ ତାକୁ ସମାହିତ କରନ୍ତି କବି । ଏକ ଅପୋଡ଼ା ଭୂମି ଉପରେ ଅଧିଷ୍ଠିତ ହୋଇଥା'ନ୍ତି ଐତିହ୍ୟର ପ୍ରତୀକ ଜଗନ୍ନାଥ, ଯିଏ ଘଟ ପରିବର୍ତ୍ତନ କରୁଥାନ୍ତି କିନ୍ତୁ ପ୍ରେମ, ମୈତ୍ରୀ ଓ କରୁଣାର ଧାରା ଅବାରିତ ଭାବରେ ବହି ଚାଲିଥାଏ ।

କବି ହରିହରଙ୍କ ଭାବ ଭୂମିରେ ଏହି 'ଅପୋଡ଼ା ଭୂଇଁ' ହୁଏତ ଶ୍ରୀକ୍ଷେତ୍ର, ହୁଏତ ଏ ଉତ୍କଳ ଦେଶ ଯାହା ନିଜସ୍ୱ ସଂସ୍କୃତି ଓ ଇତିହାସ ଭିତରେ ନିଜର ଐତିହ୍ୟକୁ ବଞ୍ଚାଇ ରଖେ । କବି ପୁନଃ ପୁନଃ ଆବିଷ୍କାର କରନ୍ତି ଏହି ଅପୋଡ଼ା ଭୂଇଁରେ ନିଜର ଜନ୍ମମାଟିକୁ । ମାଟିର ବି ନିଜସ୍ୱ ରହସ୍ୟ ଥାଏ ଯାହା ମହାଶୂନ୍ୟର ରହସ୍ୟଠାରୁ କୌଣସି ଗୁଣରେ କମ୍ ନୁହେଁ । ଅପୋଡ଼ା ଭୂଇଁର ଧାରଣା ଭିତରେ କବି ପରୋକ୍ଷଭାବରେ ଇଲିୟଟ୍‌ଙ୍କ ୱେଷ୍ଟଲ୍ୟାଣ୍ଡର ଏକ ବିପରୀତ ଚିତ୍ର ସୃଷ୍ଟି କରନ୍ତି । ଅପୋଡ଼ା ଭୂଇଁରେ ଅବକ୍ଷୟ ନଥାଏ, ଥାଏ ଉଦାର ସହନଶୀଳତା ଓ ସମନ୍ୱୟ । କବିଙ୍କ ବର୍ଣ୍ଣନା ଅନୁଯାୟୀ–

'ଏବେ ଆଉ ଅଛି କ'ଣ
ଏକା ଏକା ଥିବା କେଉଁ ଅସମାପ୍ତ ସ୍ପନ୍ଦନରେ
ଅଭିନ୍ନ ଉଚ୍ଚାରଣ
ଯେତେ ମୋହ ଭଲ ପାଇବାର
ମନ୍ତ୍ର ସବୁ ପରସ୍ପର ଲୋଡ଼ିବା ପଣର' (ଅପୋଡ଼ା ଭୂଇଁ- ପୃ.- ୫୦)

ଏହି ଭୂମିର ଗ୍ରାମ୍ୟ ସଂସ୍କୃତି ତଥାପି ରଖିଥାଏ ତା'ର ପ୍ରାଚୀନତା କୋମଳତା, ତା'ର ମଣିଷମାନଙ୍କ ନିଷ୍ପାପ ଅନ୍ତରାତ୍ମା । କବି ନିଜର ସୂକ୍ଷ୍ମ ଦୃଷ୍ଟିରେ ଅବଲୋକନ କରନ୍ତି ଏ ଭୂମିର ଇତିହାସକୁ, ଯେଉଁଠି ବାଲିସ୍ତୂପ ତଳେ ପୋତି ହୋଇଯାଇଥିବା ମନ୍ଦିରର ଚୂଡ଼ାଗ୍ର ବାଜି ଆହତ ହୁଏ ରାଜାର ଘୋଡ଼ା, ଯେଉଁଠି 'ସ୍ୱପ୍ନ, ସର୍ପ ଓ ସୁନାକଳସ'ର କିମ୍ବଦନ୍ତୀ ଭିତରୁ ସାଧାରଣ ମଣିଷଙ୍କ ରାଜା କପିଳେନ୍ଦ୍ର ହୋଇ ବାହାରି ଆସେ ଇତିହାସକୁ । ସେହି ପୁଣି 'ମାଣିକ ପାଟଣା'ର ରହସ୍ୟମୟ ସତ୍ତା ଝୁଣ୍ଟୁଥାଏ ସାମ୍ପ୍ରତିକ ବାସ୍ତବତାକୁ । ରାଜାଟିଏ ଚଣ୍ଡାଳ ସାଜି ରଥରେ 'ଛେରା

ପହଁରା କରେ କିନ୍ତୁ କବିର୍ ଦୃଷ୍ଟି ତା' ଭିତରେ ଦେଖେ ଆଉ ଏକ ତାତ୍ପର୍ଯ୍ୟ, ଯଥା :– "ଏବେ ଆପଣ ଈଶ୍ୱରଂକ ରାଜ୍ୟରୁ ନିର୍ବାସିତ/ ହାତରେ ପଂହରା ଧରିଥିବା ଅସ୍ପୃଶ୍ୟ ଚଣ୍ଡାଳ/ ଚଣ୍ଡାଳ ବୋଲି ତ ରାଜା ଆପଣ ଈଶ୍ୱର" (ଛେରା ପହଁରା, ପୃ- ୬୨)।

ଅପୋଡ଼ା ଭୂଇଁର କବି ହରିହରଙ୍କ ଅନ୍ୱେଷଣ ଏକ ଆଧ୍ୟାତ୍ମିକ ଯାତ୍ରା । ତାଙ୍କ ପାଇଁ ଅନ୍ୱେଷଣର ପଥ ଏକ ଆକାଶୀ ନୀଳ ପଥ, ଚେତନାର ପାହାଚ । ସେ ପଥ ପୁଣି ସ୍ୱର୍ଗ ଓ ପାତାଳ ଘୂରିସାରି, କ୍ଳାନ୍ତ ହୋଇ ଏଇ ମାଟିର ଅରଣ୍ୟରେ ଶୋଇପଡ଼େ । ସେଇ ଯାତ୍ରା ପାଇଁ ଥାଏ ଏକ ଅଗ୍ନିମନ୍ତ୍ରର ଆହ୍ୱାନ । ସେଠି କାଠ ଓ ପଥରରେ ଖୋଦିତ ହୋଇଥାଏ ଏକ ଯୋଗାବିଷ୍ଟ ଚେତନା । କବି ହୁଏତ ଆବିଷ୍କାର କରନ୍ତି ସେଇ ଚେତନାର ଭିତ୍ତିମୂଳକୁ ଶ୍ରୀକ୍ଷେତ୍ରରେ, ଜଗନ୍ନାଥଙ୍କ ଭିତରେ । ସେ ଯେପରି ଉପନୀତ ହୁଅନ୍ତି ଯାତ୍ରାର ଲକ୍ଷ୍ୟ ସ୍ଥଳରେ ତେଣୁ ଉଚ୍ଚାରଣ କରନ୍ତି– 'ଏହିଠାରେ ବନ୍ଦହେଉ/ ଯେତେସବୁ ବ୍ୟାକୁଳ ସନ୍ଧାନ/ ବନ୍ଦ ହେଉ ମୂହୂର୍ତ୍ତର ନିରନ୍ଧ୍ର କବାଟ/ ତମେ ଥାଅ ଯେଉଁଠାରେ/ ଅପହଁଚ ଯେତେ ଦୂରତାରେ/ ଅର୍ଦ୍ଧମାତ୍ରା ପରି ସେଠି ଘେରି ରହେ/ ଯେତେକ ପ୍ରଗାଢ଼ ଇଚ୍ଛା/ ଇତସ୍ତତଃ ମନ' (ଧ୍ୟାନାସନ– ପୃ- ୭୨)।

ତଥାପି କବିଙ୍କର ଏ ବ୍ୟାକୁଳ ସନ୍ଧାନର ଶେଷ ନାହିଁ । ତାଙ୍କ ଆଗରେ ଦିଶିଯାଏ ଏକ ନିତ୍ୟଲୀଳା । ହୁଏତ ଏ ଲୀଳା ଜଗନ୍ନାଥଙ୍କର, ହୁଏତ ଜୀବନ, ଜନନ, ମୃତ୍ୟୁର । ତା'ର ରହସ୍ୟକୁ ଭେଦ କରିବାକୁ ଚାହାନ୍ତି କବି ଏକ ବିଶ୍ୱାସ ଭିତରେ । ବିଶ୍ୱାସକୁ ନେଇ ଲୀଳାତତ୍ତ୍ୱକୁ ହୁଏତ ଅନୁଧ୍ୟାନ କରାଯାଇପାରେ କିନ୍ତୁ ସେଥିରେ କବିତା ସୃଷ୍ଟି ହୁଏନା । ସେଥିପାଇଁ ଆବଶ୍ୟକ ହୁଏ ଏକ କାବ୍ୟିକ ବିଶ୍ୱାସ । କବି ହରିହର ନିଜର ଆଧ୍ୟାତ୍ମିକ ଓ କାବ୍ୟିକ ବିଶ୍ୱାସକୁ ସମନ୍ୱିତ କରି ଦେଖନ୍ତି ସେଇ ଲୀଳାକୁ । ସେଥିପାଇଁ ସବୁ ସ୍ଥୂଳଦୃଷ୍ଟିକୁ ହଜାଇ ଦେଇ ଅନ୍ଧ ହୋଇ ଯିବାକୁ ବି ପ୍ରସ୍ତୁତ ହୁଅନ୍ତି– 'ଅନ୍ଧ ନ ହେଲେ ଦେଖି ହୁଅନ୍ତା ନାହିଁ/ ସେ ଶୂନଗର୍ଭ କୂଟସ୍ଥ ରହସ୍ୟ/ ମାୟା ବୀଜର ଅପ୍ରତିହତ ଲୀଳା/ ଦୁଃଖ ଶୋକ ଯନ୍ତ୍ରଣାର ସ୍ତର ପରେ ସ୍ତର' (ଛପନ ଭୋଗୀ, ପୃ-·୭୫)।

ନିତ୍ୟଲୀଳା' ପର୍ଯ୍ୟାୟର ସମସ୍ତ କବିତା ଜଗନ୍ନାଥଙ୍କୁ ନିବେଦିତ । କବି ଗଭୀର ଆବେଗ ଓ ବ୍ୟାକୁଳତା ନେଇ ଅନୁଭବ କରନ୍ତି ତାଙ୍କର ମହିମାକୁ । କବିଙ୍କ ପାଇଁ କେତେବେଳେ ସେ 'ଚଷମା ବିକାଳୀ' ତ କେତେବେଳେ 'ସ୍ୱୟଂ ବିଶ୍ୱକର୍ମା', କେତେବେଳେ ପୁଣି 'ନବଗୁଞ୍ଜର' । କବି ଜଗନ୍ନାଥଙ୍କ ଦର୍ଶନ ପାଆନ୍ତି ଶୂନ୍ୟତା ଭିତରେ, ଦେହ ଭିତରେ, ସ୍ୱପ୍ନ ଭିତରେ । ତାଙ୍କରି ଭିତରେ ପୁଣି ପାଆନ୍ତି ନିଜସ୍ୱ ପରିଚୟ, ଆତ୍ମଜ୍ଞାନ :–

'ମୁଁ ଆଉ ମୁଁ ନୁହେଁ
ମୁଁ ତା'ର ସୃଜନର ଅନ୍ତରାଳେ ମିଶିଯାଏ
ସୁଷୁପ୍ତିର ଅଧେ ମାତ୍ର ଅନ୍ଧାରରେ
ସ୍ଫୁରଣର ଶୁଭ୍ର ବିନ୍ଦୁ
ଶ୍ମଶାନର ଜଡ଼ଘନ ନୀରବତା ଭାଙ୍ଗି
ପ୍ରଣବର ଶଙ୍ଖନାଭି ଥରେ' (ସ୍ୱର୍ଗ ଦ୍ୱାର, ପୃ- ୧୦୦)

'ଶଙ୍ଖନାଭି'ରୁ ଆରମ୍ଭ କରି କବି ହରିହରଙ୍କ ଅବାରିତ କାବ୍ୟଯାତ୍ରା । ଏଇ ନାଭିକେନ୍ଦ୍ରକୁ ପ୍ରଦକ୍ଷିଣ କରି କାବ୍ୟ ଚେତନା ଉର୍ଦ୍ଧ୍ୱରୁ ଉଠୁଥାଏ, ଉତ୍ତରିତ ହେଉଥାଏ । ଆଶ୍ଚର୍ଯ୍ୟ ଲାଗେ ଏଇ ଗୋଟିଏ ଭାବ କେନ୍ଦ୍ରରୁ ଏତେ କବିତା ସୃଷ୍ଟି ହୁଏ କିପରି ? କିପରି ଏତେ ବିସ୍ତାର ଲାଭ କରେ ?

କବିଙ୍କ ଅନ୍ୟାନ୍ୟ କାବ୍ୟକୃତି ତୁଳନାରେ 'ସନ୍ଧ୍ୟାଦର୍ଶନ'ରେ ରହସ୍ୟାନୁଭବ ଅଧିକ ସାନ୍ଦ୍ର, ସେଥିପାଇଁ ହୁଏତ ଏହାର କବିତା ସବୁ ଅଧିକ ରହସ୍ୟାଛନ୍ନ । ପଂକ୍ତି ପରେ ପଂକ୍ତି ନେଇ ଏଇ କାବ୍ୟ ସର୍ଜନାକୁ ବ୍ୟାଖ୍ୟା କରିବା ସହଜ ନୁହେଁ । ତାକୁ ବୁଝିବା ପାଇଁ କବିଙ୍କ ଅନୁଭବ ସହିତ ଏକାତ୍ମ ହେବା ଆବଶ୍ୟକ ହୋଇପଡ଼େ । କବି ହରିହର ମୁଖ୍ୟତଃ ଅବଚେତନ ଓ ଅଚେତନ ସ୍ତରରୁ ହିଁ ଆହରଣ କରନ୍ତି ନିଜର କବିତାର ଶବ୍ଦ । ସେଇଥିପାଇଁ ସେ ସବୁ ଏତେ ସ୍ୱପ୍ନିଳ ଓ ସମ୍ମୋହନ ମନେହୁଅନ୍ତି । ସେଇଥିପାଇଁ ବୋଧହୁଏ କବିତାର ଭାବବିନ୍ଦୁର ଶବ୍ଦ ଓ ଦୃଶ୍ୟ ଭିତରେ ପ୍ରସରିଯିବା ତାଙ୍କ ପାଇଁ ଆୟାସ ସାଧ୍ୟ ହୁଏ ନାହିଁ । ଖୁବ୍ କମ୍ କବିଙ୍କ ଭାଗ୍ୟରେ ଏପରି ଘଟିଥାଏ ।

ଆଧୁନିକ କବିତାର ଯୁକ୍ତିବାଦିତା, ଏହାକୁ ଅନେକ ସମୟରେ ରସହୀନ ଓ ସୀମିତ କରିଦିଏ । ଏଥିରୁ ମୁକ୍ତ ହେବାର ଅନ୍ୟତମ ଉପାୟ ହେଉଛି ଅନୁଭବକୁ ଇନ୍ଦ୍ରିୟାତୀତ କରିବା, ଚେତନାର ଭୌତିକ ସ୍ତର ଅତିକ୍ରମ କରି ଆଧିଭୌତିକ ସ୍ତରରେ ପହଞ୍ଚିବା । କବି ହରିହର ଐତିହ୍ୟକୁ ଏହି ଆଧିଭୌତିକ ସ୍ତରରେ ଅନୁଭବ କରିଛନ୍ତି । ତା' ସହିତ ନିବିଡ଼ ଭାବରେ ଜଡ଼ିତ ହୋଇଛି ତାଙ୍କର ଗଭୀର ପ୍ରେମାନୁଭବ, ଯାହା କି ବାସ୍ତବତା ଭିତରେ ଆଣିଛି ପବିତ୍ରତାର ସ୍ପର୍ଶ । କବିଙ୍କ କାବ୍ୟିକ ପ୍ରୀତିବୋଧ ଏକ ବିଶ୍ୱବୋଧରେ ରୂପାନ୍ତରିତ ହୋଇଛି । କବିଙ୍କର ଏହି ବ୍ରହ୍ମାଣ୍ଡୀୟ ଭାବନା ଭିତରେ ତାଙ୍କ କାବ୍ୟପୁରୁଷର ଉପସ୍ଥିତିକୁ ଅନୁମାନ କରିହୁଏ । ସେ ଯେପରି ଠିଆ ହୋଇଛି ଏକ ଅନନ୍ତ ଆବେଗର ଅପୋଡ଼ା ଭୂଇଁ ଉପରେ । ନିଜର ସତ୍ତା ଭିତରେ ଧରି ରଖିଛି ଜୀବନ, ମୃତ୍ୟୁ ଓ ପ୍ରେମର ରହସ୍ୟକୁ, ପ୍ରସାରିତ ହେଉଛି

ଦେହରୁ ଦେହାତୀତକୁ । ଶୂନ୍ୟକୁ ହାତ ବଢ଼ାଇଛି, ଶୂନ୍ୟର ବନ୍ଦନା କରୁଛି ଓ ପ୍ରୀତି, ମୈତ୍ରୀ ଓ ମୁକ୍ତିର ଚିରନ୍ତନତା ଭିତରେ ସନ୍ଧାନ କରୁଛି ମଣିଷ ପାଇଁ ଅମୃତ ।

କବି ହରିହର ମିଶ୍ରଙ୍କ 'ସନ୍ଧ୍ୟା ଦର୍ଶନ' ଏକ ଦାର୍ଶନିକ ଜିଜ୍ଞାସା ଭିତରେ କବିତାର ଉନ୍ମୁକ୍ତ ପ୍ରବାହ । ଐତିହ୍ୟ ହିଁ ତାଙ୍କ କବିତାର ଉତ୍ସ, ତେଣୁ ତାଙ୍କର ସ୍ୱତନ୍ତ୍ର କାବ୍ୟ ଭାବନା ଓ କାବ୍ୟ ଶୈଳୀକୁ ଆହୁରି ମର୍ଯ୍ୟାଦାବନ୍ତ କରିବା ଦିଗରେ ଏ ସଙ୍କଳନର ଅବଦାନ ଯେ ଅତୁଳନୀୟ ହୋଇ ରହିବ, ସେଥିରେ ସନ୍ଦେହର ଅବକାଶ ନାହିଁ ।

ଆର୍.ଆର୍.ଏଲ୍, ଭୁବନେଶ୍ୱର-୫
'ଇସ୍ତାହାର'ରେ ପ୍ରକାଶିତ



ଅନ୍ଧାରରେ ଯାଇପାର ତମେମାନେ ସେ ଆଲୁଅ ନେଇ

# ସନ୍ଧ୍ୟା ଦର୍ଶନ ଓ ଅଣ ଅକ୍ଷର

*ଭାରତ ମାଝି*

## (ଏକ)

କବି ହରିହର ମିଶ୍ରଙ୍କର ପାଇଁ ଐତିହ୍ୟର ଅର୍ଥ କେବଳ ଅତୀତ ନୁହେଁ ଆଉ ତା'ର ସ୍ୱଭାବ ମଧ୍ୟ ସ୍ଥାଣୁ ନୁହେଁ । ତାଙ୍କ ଐତିହ୍ୟ ଭିତରେ ଯେଉଁ ଦେଶ ନିହିତ ଓ ସମୟ ଖଣ୍ଡର ସୂଚନା ମିଳେ, ତା ମାଧ୍ୟମରେ ଦେଶୋତ୍ତର ସମୟର ସାମ୍ନା କରି ହୁଏ । ଏହି ଚେତନା ଆମ ପୁରୁଷୋତ୍ତମ ଚେତନାର ସମବାଚ୍ୟ । ଏହା ପ୍ରେମାନୁଭୂତି ପ୍ରଧାନ । ପ୍ରେମାନୁଭୂତି ନେଇ ଆତ୍ମ ଆବିଷ୍କାରକୁ ବାଟ କାଢ଼ିବା ଭିତରେ ଯେଉଁ ଦ୍ୱନ୍ଦ୍ୱ , ତାହା ହିଁ ବୋଧେ କବିଙ୍କ କବିତା, ଏ ଦ୍ୱନ୍ଦ୍ୱ ଭୌତିକ ଓ ଆଧିଭୌତିକ ସମ୍ପର୍କର ଦ୍ୱନ୍ଦ୍ୱ । ଏ ଦ୍ୱନ୍ଦ୍ୱକୁ ବ୍ୟକ୍ତିଟିଏ ସାମ୍ନାକରି ବ୍ୟଷ୍ଟି ପାଲଟିଯାଏ ଓ ବ୍ୟଷ୍ଟି ବି ବ୍ୟକ୍ତି । ଠିକ୍ ଏଇ ମୁହୂର୍ତ୍ତରେ ଚିରନ୍ତନତା ପ୍ରତି ଆସ୍ଥା ଜମିବା ସ୍ୱାଭାବିକ । ପ୍ରକାରାନ୍ତରରେ, ମାନବସ୍ଥିତିକୁ ଶୂନ୍ୟତାର ମହାପ୍ରସାର ଭିତରେ ଅମରତ୍ୱର ଚେତନାରେ ପହଞ୍ଚାଇ ଦେବା ପ୍ରେମାନୁଭୂତିର ଲକ୍ଷ୍ୟ । ଏହି ଅମୃତ ଦର୍ଶନ ହିଁ 'ସନ୍ଧ୍ୟାଦର୍ଶନ' ।

କବି ଶ୍ରୀ ମିଶ୍ରଙ୍କ ଏ ସଙ୍କଳନରେ ଥିବା କବିତା ଗୁଡ଼ିକ ପୂର୍ବବର୍ତ୍ତୀ ସଙ୍କଳନମାନଙ୍କଠୁ ଆଉ ଟିକେ ଉନ୍ମୁଖ ଓ ଆଉ ଟିକେ ସାଂସ୍କୃତିକ ଭାବାଶ୍ରୟୀ । ଏହା ଅନୁଭୂତି ସଘନତାର ଫଳ ନୁହେଁ, ବରଂ ଏକ ବିଶ୍ୱାସନୀୟ ସଂସ୍କୃତିର ପ୍ରାମାଣିକତା । ଏହାକୁ କବିଙ୍କ କାବ୍ୟିକ ଉନ୍ନୟନ କୁହାଗଲେ ସନ୍ଧ୍ୟାଦର୍ଶନ ଏକ ଉର୍ଦ୍ଧ୍ୱ ଚେତନା (ଯୋଗରେ ଯା'କୁ ଅର୍ଦ୍ଧ ଚେତନା କୁହନ୍ତି)ର କ୍ରିୟା (ପ୍ରତିକ୍ରିୟା) !

'ସନ୍ଧ୍ୟାଦର୍ଶନ'ରେ ସଙ୍କଳିତ ଛୟାଳିଶ ଗୋଟି କବିତାକୁ କବି ଚାରିଗୋଟି ବିଭାଗରେ ରଖିଛନ୍ତି । ତା ହେଲା— 'ଶୂନ୍ୟ ବନ୍ଦନା' କ୍ରମରେ ୧୧ଟି କବିତା, 'ଯୋଡ଼ା ଆଷାଢ଼', ରେ ୯ଟି, 'ଅପୋଡ଼ା ଭୂଇଁ'ରେ ୧୪ଟି ଓ 'ନିତ୍ୟ ଲୀଳା' କ୍ରମରେ ୧୨ଟି କବିତା । ପୁଣି କ୍ରମର ପ୍ରାରମ୍ଭରେ ଓଡ଼ିଆ ଭାଗବତରୁ ପଦେ ଦି' ପଦ ସ୍ଥାନିତ ।

ଶ୍ରୀ ମିଶ୍ରଙ୍କ ସମ୍ପୂର୍ଣ୍ଣ ବାଙ୍ମୟରୁ ଏହା ସ୍ପଷ୍ଟ ଯେ ନୈତିକ ଓ ସାଂସ୍କୃତିକ ମୂଲ୍ୟ ଉପରେ ତାଙ୍କ ଆସ୍ଥା ବେଶ୍ ଗହନ । ତେବେ ଏହି ମୂଲ୍ୟ ଭିତରେ ଆଧ୍ୟାତ୍ମିକତାର ସନ୍ଧାନ ଅଛି । ଏହାକୁ ପ୍ରାଚୀନ ଓଡ଼ିଆ କାବ୍ୟାଦର୍ଶ ଦେଇ ଉତ୍ତରାଧିକାର ସୂତ୍ରରେ ଜଣେ ଓଡ଼ିଆ କବି ପାଇଛନ୍ତି ବୋଲି କୁହାଯାଇପାରେ । ପଞ୍ଚସଖାଙ୍କ ଶୂନ୍ୟ ଆରାଧନା, ଆତ୍ମାର ଅବିନଶ୍ୱରତା, ଦେହାତୀତ ଯୋଗସୂତ୍ର, ଯୋଗର ଜୟକାର, ମୃତ୍ୟୁର ସ୍ୱାଭାବିକତା, ଦାର୍ଶନିକ ବିଧାନ, ଏ ସବୁର ଏକୀଭୂତ ନିର୍ଯ୍ୟାସ ଦେଇ କବିଙ୍କ ସ୍ୱର କେବେ କର୍ତ୍ତା ଭାବରେ ତ କେବେ ଭୋକ୍ତାଭାବରେ ଶୁଭୁଚି ।

'ସନ୍ଧ୍ୟାଦର୍ଶନ'ର ପୃଷ୍ଠା ସଂଖ୍ୟା ଶହେ ଦୁଇ' । 'ଶ୍ରୀ ଜଗନ୍ନାଥ ନନ୍ଦନତତ୍ତ୍ୱ' ଏଥିରେ ବେଶ୍ ଦୃଶ୍ୟ ଓ ହୃଦ୍ୟ । ପ୍ରାରମ୍ଭରୁ କବି ଏହାକୁ ଐତିହ୍ୟର ପୁନରୁଦ୍ଧାର ଓ ବିଶ୍ୱ ବ୍ୟାପକ ଶ୍ରୀ ପୁରୁଷୋତ୍ତମ ଚେତନାର ପ୍ରାସଙ୍ଗିକ ଦୃଷ୍ଟି ଉପରେ ଆଧାରିତ ବୋଲି ସ୍ୱୀକାର କରିଛନ୍ତି । ତେଣୁ ଏଥିରେ ଆନନ୍ଦର ଯେଉଁ ରୂପ ପ୍ରତିଷ୍ଠିତ, ତାହା ସ୍ପଷ୍ଟତଃ ଆତ୍ମସ୍ଥ । ଏହାକୁ 'ଆତ୍ମାନନ୍ଦ' କୁହାଯାଇପାରେ । ବିଶ୍ୱମାଧୁର୍ଯ୍ୟର ଦୃଷ୍ଟିଗତ ସଞ୍ଚାର ଏହାର ପ୍ରତିଛାୟା ମାତ୍ର । ଇଚ୍ଛା, କ୍ରିୟା ଓ ଜ୍ଞାନର ସାମଞ୍ଜସ୍ୟରୁ ଉତ୍ପନ୍ନ ମନସ୍ଥିତି ଏହାର ଭୂମିକା । ଆସ୍ତିକ ବୁଦ୍ଧି ବା ଅଭେଦ ଭାବନା ଏହି ଆନନ୍ଦର ସାଧକ ଓ ଭେଦ-କଳ୍ପନା ଏହାର ବାଧକ । ଏହି ଆନନ୍ଦ ଉପନିଷଦୀୟ ପରମ୍ପରା ପ୍ରଭାବିତ ଯେତେ, ତା'ଠୁ ଢ଼େର୍ ପ୍ରଭାବିତ ପ୍ରାଚୀନ ଓଡ଼ିଆ ସାହିତ୍ୟ ପରମ୍ପରାର ।

'ସନ୍ଧ୍ୟା ଦର୍ଶନ'ର ଆଉ ଏକ ଆଲୋଚନା ଯୋଗ୍ୟ କଥା ହେଉଛି— ଏଥିରେ ସନ୍ନିବେଶିତ କବିତା ମାନଙ୍କରେ କେତେକ ଓଡ଼ିଆ ଲୋକ ତତ୍ତ୍ୱର ପ୍ରୟୋଗ । କେଉଁଠି ବିସ୍ମୟ ଭାବନାଟିଏ ତ କେଉଁଠି ପୁରାତନ ଓଡ଼ିଆ ମାନ୍ୟତାଟିଏ ବ୍ୟକ୍ତ ହୋଇଛି । ଜୀବନର 'ବସ୍ତୁସତ୍ୟ'କୁଅଭିନବ ରୂପରେ ପ୍ରକାଶ କରାଯାଇଛି କେତେକ କବିତାରେ । କେତେକ ପୌରାଣିକ କଥା- କାବ୍ୟ, ରହସ୍ୟାକୁଳତା, ଦାର୍ଶନିକତା ତଥା ଛନ୍ଦ ବିଧାନରେ କାବ୍ୟ-କଳା ଅଭିବ୍ୟଞ୍ଜିତ । 'ଶୂନ୍ୟବନ୍ଦନା' କବିତାରୁ ଛୋଟ ଉଦାହରଣଟିଏ ନିଆଯାଇପାରେ । ଯୋଗୀ ଶଙ୍କରାଚାର୍ଯ୍ୟ ମୃତ ରାଜାଙ୍କ ଦେହ ଭିତରକୁ ପଶିବା ବର୍ଣ୍ଣନା ଓ ତା'ର ଦାର୍ଶନିକତାରୁ ପଦଟିଏ— 'କେଉଁ ରାଣୀଙ୍କ ଆଦେଶରେ/ ସନ୍ନ୍ୟାସୀର ଶବଦାହ ହେବା ପୂର୍ବରୁ/ ପୁନଶ୍ଚ ଜୀବନ ନେଇ ସନ୍ନ୍ୟାସୀର/ ରାଜାର କଳେବରୁ/ ଗୁମ୍ଫାର ଶବ ନିକଟକୁ/ ପହଞ୍ଚିବା ଭାରି କଷ୍ଟ/ ମୁଗ୍ଧ ଏକ ଅନୁଭବ ନେଇ/ କେଉଁ ବ୍ରହ୍ମାସ୍ୱାଦ ଶୃଙ୍ଗାରର/ 'ରସବୈସ'ରୁ ଉଚ୍ଚାରଣ କରିବାକୁ/ 'ସୋ ଅହମ୍ର/' । ଏମିତି ଉଦାହରଣର ଉଣା ରଖିନାହାନ୍ତି କବି ।

କବି ହରିହର ମିଶ୍ର ଏ ସଙ୍କଳନରେ ନୂତନ ଶବ୍ଦ ପ୍ରୟୋଗ ଉପରେ ଗୁରୁତ୍ୱ ଦେଇନଥିବା ଭଳି ମନେ ହୁଏ । ସେ ବରଂ ଶବ୍ଦର ନୂତନ ପ୍ରୟୋଗ ଉପରେ ଧ୍ୟାନ କେନ୍ଦ୍ରିତ କରିଛନ୍ତି ।

ଏହା ମଧ୍ୟ ପ୍ରାଚୀନ ଅଳଂକାର ସାହିତ୍ୟ ସିଦ୍ଧ । (ଶବ୍ଦ ଆବିଷ୍କାରରେ/ ଶବ୍ଦ ଶବ୍ଦ କରଣେ) ତେଣୁ ଅନେକତ୍ର ଶବ୍ଦ ଏ କବିଙ୍କ ପାଇଁ ସଫଳ ଭାବଉଦ୍ରେକ କାରୀ । ଚିତ୍ର ଗଠଣରେ କବି ବେଶ୍ ସ୍ୱତଃସ୍ଫୂର୍ତ ଅଥଚ କେତେବେଳେ ମପାଚୁପା । ଲାଗୁଛି, ତାଙ୍କ ଦୃଷ୍ଟି ଯେମିତି କୌଣସି ବି ଜାଗା ଛାଡ଼ିନି । ଅଧିକନ୍ତୁ ଓଡ଼ିଶାର ପୁରାତନ ସାହିତ୍ୟ ତାଙ୍କ ପାଇଁ ନବେ ପ୍ରତିଶବ୍ଦ ପୃଷ୍ଠଭୂମି । ଏହା ସ୍ୱାଗତ ଯୋଗ୍ୟ । ଯେଉଁ ସମୟରେ ନୂତନତାର ନାଁ ନେଇ ଆଉ ଏକ 'ରୁଢ଼ିବାଦ' ଆଡ଼କୁ ଓଡ଼ିଶାର କିଛି କବି ଧାବିତ, ସେ ସମୟରେ ଏହି ଉଦ୍ୟମକୁ ଆମେ ସ୍ୱାଗତ ହିଁ କରିପାରିବୁ ।

ସାମଗ୍ରିକ ରୂପେ ଦେଖିବାକୁ ଗଲେ 'ସନ୍ଧ୍ୟାଦର୍ଶନ' ସାମ୍ପ୍ରତିକ ବୌଦ୍ଧିକ ତଟସ୍ଥତା ଓ ନିର୍ମମତା ପରିପ୍ରେକ୍ଷୀରେ ଏକ ବିଚାରଉଦ୍ରେକ କାରୀ ପ୍ରଚେଷ୍ଟା । କବି ହରିହର ମିଶ୍ରଙ୍କ କାବ୍ୟ ଚେତନାର ଉତ୍ତରଣର ଏକ ପ୍ରମାଣ ରୂପେ ଏହାକୁ ପରଖି ହେବ । ସାଧାରଣ ପାଠକଙ୍କ ପାଇଁ ସଙ୍କଳନଟି ରସୋତ୍ତୀର୍ଣ୍ଣ ହୋଇ ନ ପାରେ, ତେବେ ଆତ୍ମ ସଂରକ୍ଷଣ ଓ ଆତ୍ମଦାନର ଦ୍ୱନ୍ଦ୍ୱ ନେଇ କାବ୍ୟ ପୁରୁଷକୁ ପରୀକ୍ଷଣ କରାଗଲେ ଏକ ସନ୍ତୁଳିତ ସାବଲୀଳତା କବିତାମାନଙ୍କୁ ଚହଟ କରିଛି । ପ୍ରଚ୍ଛଦ ଓ ଗେଟ୍– ଅପ୍ ଦୃଷ୍ଟିରୁ ଉଲ୍ଲେଖନୀୟ । ସାମାନ୍ୟ ମୁଦ୍ରଣ ତ୍ରୁଟି ପରିଲକ୍ଷିତ ହୁଏ ।

ରବିବାର 'ସମ୍ବାଦ'ରେ ପ୍ରକାଶିତ ।



# ଅଣ ଅକ୍ଷର

## (ଦୁଇ)

ଓଡ଼ିଆ କବିତାର ଚଲାପଥରେ 'ଅନାମ କବିତା' ଏକ ସୁପରିଚିତ କାବ୍ୟାଦର୍ଶ । ଓଡ଼ିଶାର ବଳିଷ୍ଠ ପରମ୍ପରାର ସାରବତ୍ତା, ଜାତୀୟ ମହତ୍ୱର ମୌଳିକ ନିର୍ଯ୍ୟାସ ତଥା ଓଡ଼ିଆ ଐତିହ୍ୟର ଉପଲବ୍‌ଧି ହିଁ 'ଅନାମ କବିତା'ରେ ଦୃଶ୍ୟମାନ । ଏ ଭଳି ଲେଖାଲେଖି କରୁଥିବା 'ଅନାମ ଗୋଷ୍ଠୀ' ମଧ୍ୟରେ ହରିହର ମିଶ୍ର ଅନ୍ୟତମ । 'ଅଣଅକ୍ଷର' କବି ଶ୍ରୀ ମିଶ୍ରଙ୍କ ପଚାଶ ଗୋଟି ଅନାମ କବିତାର ଏକ ସମାହାର । ଭୀମ ଭୋଇଙ୍କ 'ଅଣକ୍ଷରକୁ ଅନାମ କହି' ତଥା ଅଚ୍ୟୁତାନନ୍ଦଙ୍କ 'ଅଣ ଅକ୍ଷର ବ୍ରହ୍ମବୀଜ ଜାଣ' ଆଦିର ପରିଚିତି ପରେ କବି ହରିହର ମିଶ୍ରଙ୍କ ବୟାନବେ ପୃଷ୍ଠା ବିଶିଷ୍ଟ ସଙ୍କଳନ 'ଅଣ ଅକ୍ଷର' ।

ସଙ୍କଳନସ୍ଥ କବିତାମାନଙ୍କରେ ଐତିହ୍ୟର ପରିସର ଭିତରେ ଥାଇ କବିଟିଏ କେମିତି ନୂତନତାକୁ ନିର୍ଯ୍ୟାସ କରି କବିତା ରଚନା କରିପାରେ— ତାହା ଲକ୍ଷ୍ୟଣୀୟ । କବିତା ମାନଙ୍କରେ ପରମ୍ପରା ଅଛି, ପରିସ୍ଥିତି ଅଛି, ପ୍ରଗତି ଓ ପରିବର୍ତ୍ତନର ସ୍ୱର ଅଛି, ଅଛି ବି ପ୍ରତିବାଦର ଆହ୍ୱାନ । ତେବେ ସ୍ଥଳ ବିଶେଷରେ ତାତ୍ତ୍ୱିକ ତନ୍ମୟତା ଓ ରହସ୍ୟଭାବ ବୌଦ୍ଧିକ କରିଦେଇଛି କେତେକ କବିତାକୁ । ଅନାମଙ୍କ କବିତାରେ ସଂସ୍କୃତି ପ୍ରତି ଆକ୍ରୋଶ ଏକ କ୍ରୋଧ ଜର୍ଜରିତ ସ୍ୱର ଓ ଅବିଶ୍ୱାସର ପ୍ରଶ୍ନ ଅଛି ବୋଲି କବି ସ୍ୱ-ପ୍ରଣୀତ ମୁଖବନ୍ଧରେ ପ୍ରକାଶ କରିଛନ୍ତି ।

ସଙ୍କଳନର ନାମ କରଣ 'ଅଣ ଅକ୍ଷର' ଥିବା ବେଳେ ପରବର୍ତ୍ତୀ ପଚାଶଟି କବିତାର ନାମ କରଣ ନାହିଁ । କେବଳ ଏକ, ଦୁଇ, ତିନି ଏଭଳି ସଂଖ୍ୟା ମାଧ୍ୟମରେ କବିତାଗୁଡ଼ିକ ସୂଚିତ ହୋଇଛି । କବିତାମାନଙ୍କରେ ଅଙ୍ଗୀକାର ଅଛି । ଅନ୍ୟ ପକ୍ଷରେ ଦୃଶ୍ୟମାନ ଜଗତର ଗୋଟେ କୋଣରେ ଥିବା ଚଉତରାରେ ବସି ଐତିହ୍ୟ ଅବଲୋକନ କରିବାର ପ୍ରୟାସ ଅଛି । ଅସନ୍ତୋଷ ଭାବରେ କବି କୁହନ୍ତି, 'ମୁଁ ଭାଙ୍ଗିଦେବାକୁ ଚାହେ ଆମ୍ଭ ସନ୍ତୋଷର କାଚଘର, 'ଅନ୍ଧ ହୁଅନ୍ତୁ ଚନ୍ଦ୍ର ସୂର୍ଯ୍ୟ/ ଚିରଦିନ'/ ଏହି ଅସନ୍ତୋଷ ସାମ୍ପ୍ରତିକ ସମୟର ସାମାଜିକ, ଅର୍ଥନୈତିକ ତଥା ରାଜନୈତିକ ଓ ମାନସିକ ଅବସ୍ଥା ଆଡ଼କୁ ମଧ୍ୟ ପ୍ରସରିଯିବାର ଦେଖିହୁଏ ।

'ଅଣ ଅକ୍ଷର'ର ଶବ୍ଦ ସଂଯୋଜନା ଓ ଭାଷା ବିଭବ ନିଦା ଓଡ଼ିଆ । ସରଳ, ସାବଲୀଳ ବର୍ଣ୍ଣନାପଟୁତା କବି ଶ୍ରୀ ମିଶ୍ରଙ୍କୁ ନିଆରା କରିଦିଏ ଏ କବିତାମାନଙ୍କରେ ।

ଇଷ୍ଟର୍ଣ୍ଣ ମେଡ଼ିଆ, ସମ୍ବାଦ, ନୂଆପଲ୍ଲୀ, ଭୁବନେଶ୍ୱର

(ରବିବାର ସମ୍ବାଦରେ ପ୍ରକାଶିତ ୧୯୯୮)



# କଳ୍ପନାର ମଧୁର ଅନ୍ୱୟ : ଶବ୍ଦଙ୍କ ଜୀବନ ଚର୍ଯ୍ୟା ଓ କବି ହରିହର ମିଶ୍ର

*ଅଜୟ ପ୍ରଧାନ*

କବି ପାଇଁ ଶବ୍ଦ ଏକାଧାରାରେ ଶ୍ରେୟ, ପେୟ ଓ ଧେୟ । ପୁଣି ପୂଜ୍ୟା ଓ ଭୋଗ୍ୟା । କବିତା ହେଉଛି ଶବ୍ଦ ସମୂହର ଉଚ୍ଛ୍ୱାସ, ଭାଷାର ନିର୍ଯ୍ୟାସ । ଶବ୍ଦ ଅଭାବରେ କବି ପଙ୍ଗୁ ହୁଏ ଓ କେବେ କେବେ ମୂକ । ସେଇଥି ପାଇଁ କବିର ମିତ୍ର ଏମାନେ, ଏମାନେ ହିଁ ଶତ୍ରୁ । ଏଇ ଦୃଷ୍ଟିରୁ କବିପାଇଁ ଶବ୍ଦର ଗୁରୁତ୍ୱ ସର୍ବାଧିକ ଏବଂ ବହୁସୂତ୍ରିକ । ଶବ୍ଦ ଚାହେ କବିକୁ ଅଭାବରେ ଛାଡ଼ିବ, କବି ଚାହେ ଶବ୍ଦକୁ ପରିପୂର୍ଣ୍ଣ କରି ଅର୍ଥରେ ଭୋଗ କରିବ । ଏହା ହୋଇପାରେନା । ରବୀନ୍ଦ୍ର ଟାଗୋରଙ୍କ ଭାଷାରେ କହିଲେ 'ହେଥା ଯେ ଗାନ୍ ଗାଇତେ ଆଶା ଆମାର, ହଏନି ସେ ଗାନ୍ ଗାଓୟା' । ଇଏ ଏକ ବିଫଳତା । କିନ୍ତୁ ସାର୍ବଜନୀନ ଏଇ ବିଫଳତାହିଁ କବିର ଏକମାତ୍ର ସଫଳ ଆୟୁଧ । ହୁଏତ କହିବାକୁ ଲେଖିବାକୁ ଚାହୁଁଥିବା ମାନସିକ ସ୍ଥିତି ବା ଅବସ୍ଥା ସଫଳ ଅର୍ଥବାହୀ ଶବ୍ଦର ଅଭାବ ହେତୁ ପରିପ୍ରକାଶ ହୋଇ ପାରେନାହିଁ । କବି ଗୋଟିଏ ଚେତନାକୁ ଉପସ୍ଥାପନା କରୁ କରୁ ନୂଆ ଚେତନାଟିଏ ଜାଗ୍ରତ ହୋଇଯାଇପାରେ ଓ ଏହା ମୂଳ ଚେତନା ସହ ଗୁନ୍ଥି ହୋଇଯାଏ ତ କେବେ ପଥଭ୍ରଷ୍ଟ କରିଦିଏ । ବୈଦିକ କାଳରୁ ଶବ୍ଦରୁ ବ୍ରହ୍ମସ୍ୱରୂପ ବୋଲି କଳ୍ପନା କରାଯାଇଛି ଠିକ୍ ଏଇ କାରଣରୁ । କବି ଶ୍ରୀ ମିଶ୍ର ବ୍ରହ୍ମ ଭାବରେ ଶବ୍ଦକୁ ଗ୍ରହଣ କରିବା ସହ ଶବ୍ଦକୁ ଦେବୀ, ମୋହିନୀ ପ୍ରଭୃତି ମାତୃଜାତୀୟ ସମ୍ବୋଧନ ଦ୍ୱାରା ଗୋଟିଏ ନୂତନ ମାର୍ଗ ଆପଣେଇ ନେଇଛନ୍ତି । ବସ୍ତୁତଃ ସକଳ କବି ବା ଆର୍ଟିଷ୍ଟ୍ ମାତ୍ରେଇ ମାତୃକୈନ୍ଦ୍ରିକ । ପୂଜିତ ସମ୍ବୋଧନର ସ୍ୱରୂପ କବିଙ୍କ ଲେଖାରେ ଏମିତି

ହେ ମୋ' ସାକୀ ସହଚରୀ
ମାନସୀ ପ୍ରେୟସୀ ଅବା
ପ୍ରେମିକା, ନାୟିକା ଯେତେ ଅଛ
ପ୍ରିୟତମା, ଦେବୀର ପ୍ରତିମା
ତମେ ହିଁ ଶକ୍ତି ସୃଜନୀ

ତମେ ମହା ଆକର୍ଷଣୀ
ଉତ୍ତର ସାଧିକା ଅବା ପ୍ରୀତିର ରାଧିକା (ପୃ-୪)

ଆରାଧନା ହିଁ କବିର ଏକମାତ୍ର ସାଧନା । ସାଧନା ହିଁ କବିତାର ଭାବ ଓ ଅର୍ଥକୁ ସଂଯୁକ୍ତ, ଅଥବା ବିକ୍ଷିପ୍ତ କରାଏ । ଶୂନ୍ୟପାତ୍ରକୁ ପୂର୍ଣ୍ଣ କରେ, ଶୂନ୍ୟ ଆକାଶରେ ଭରିଦିଏ ସୁନେଲି ତାରକା । ସୁନା ମିରିଗ ପଛରେ ଧାଇଁଥାଏ ଅହର୍ନିଶ– ପାଖରେ ଥିବା ଶବ୍ଦ ଚାହୁଁ ଚାହୁଁ ଚାଲିଯାଏ, ହଜିଯାଏ । ନୀରବତାର ଅମୂର୍ତ୍ତ ଭୂମିରେ ଫୁଟାଏ କଦମ୍ବ ଯଦିଓ ଶବ୍ଦ ମାୟାମୃଗ ପରି ଭ୍ରଷ୍ଟ କରିଦେଇପାରେ । ଏଇଥିପାଇଁ ମଧ୍ୟ ଶବ୍ଦ କିଛି ନୀରବତାକୁ ଗ୍ରହଣ କରେ । ଇଂରେଜ କବି ହିଥ୍ ସ୍ଟବସ୍ ଶବ୍ଦ ଓ ଶବ୍ଦ ମଧ୍ୟରେ ଥିବା Space ବା ଦୂରତ୍ୱ ହିଁ କବିତା ବୋଲି କହିବା ପଛରେ ରହିଛି ବୋଧେ କବିର ଅସହାୟତାରୁ ସୃଷ୍ଟ ନୀରବତା ବା ଦୂରତ୍ୱ, ଯାହା ଗୋଟିଏ ପରେ ଅନ୍ୟ ଏକ ଶବ୍ଦ ସହ ଯୋଡିବା ଲାଗି ତାକୁ ତମାମ୍ ପୃଥିବୀ ଘୂରିବାକୁ ପଡ଼େ । କେତେବେଳେ ତା ମିଳେ କେତେବେଳେ ତା ଦୁଷ୍ପ୍ରାପ୍ୟ । କବି ପାଇଁ ଇଏ ଏକ ବିଡ଼ମ୍ବନା ;

ଦେଖିବା ପୂର୍ବରୁ ତାକୁ
ଦେଶୁଁ ଦେଶ ଖୋଜିବା ଆଗରୁ
କାଲି ଆସିବାକୁ କହି
ଶବ୍ଦ ଧୀରେ ଖସିଯାଏ (ପୃ- ୯)

ଅଥଚ ଶବ୍ଦ ଫକୀରମୋହନଙ୍କ ଭଦ୍ରଖିଆ ଟୋକାଭଳି ଚୁଙ୍କୁ ଚୁଙ୍କୁ ହଉଥିବ ଏବଂ ଅପେକ୍ଷା କରିଥିବ ମହାର୍ଘ ପ୍ରତ୍ୟାବର୍ତ୍ତନକୁ କବିର । ସେତେବେଳେ–

ନିତି ନିତି କାଲେ ସେ ଫେରିବ ବୋଲି
ଶବଦ୍‌ଟିଏ
ଲିପା ପୋଛା ସରିଥାଏ
ଚିତାଲେଖା ହୋଇଥାଏ
ସାରା ଶୂନ୍ୟ ସାରାଟା ଆକାଶ (ପୃ- ୪୬)

ଖାଲି କବି କାହିଁକି ତମାମ ବୁଦ୍ଧିଜୀବି : ବିନିଦ୍ର ରଜନୀ ଯାପନ କରି, ଜୀବନକୁ ତୁଚ୍ଛ କରି ଗୋଟେ ଅଧେ ଶବ୍ଦ ପାଇଁ କି କୃଚ୍ଛସାଧନା ସେମାନେ କରିନାହାଁନ୍ତି ? କବି ଶିଶୁଟିଏ, ପୂଜକଟିଏ ମାତ୍ର ତା ଦେବୀଙ୍କ ସାମ୍ନାରେ । ଶବ୍ଦର ନାନା ଅର୍ଥ ନାନା ଭାବର ସମ୍ଭାବନାକୁ ସେ

ସ୍ୱୀକାର କରେ । ସୂଚନା ଯୋଗ୍ୟ ଯେ, ଶବ୍ଦ ଏକା ଏକା ଅର୍ଥ, ଭାବ ବା ସମ୍ଭାବନା ଦେଇଥାଏ ଯୂଥ ମଧ୍ୟରେ ସେ ହୁଏତ ବଦଳିଯାଇପାରେ । ଏହା ଶବ୍ଦର ସ୍ୱକୀୟତା, ବୈଶିଷ୍ଟ୍ୟ ଓ ଅନନ୍ୟତା । କବିଙ୍କ ଭାଷାରେଏହା 'ଶବ୍ଦଙ୍କର ବେଶ ବଦଳ' । କାବ୍ୟ ସମାଲୋଚକମାନେ ଶବ୍ଦର ବ୍ୟଞ୍ଜନାର୍ଥ ଏଇଥିରୁ ପାଇଥାନ୍ତି । ଭାଷାବିତ୍‌ମାନେ ଶବ୍ଦର ଔଚିତ୍ୟ ଏଥିରୁ ଖୋଜିଥାନ୍ତି । କବିତାକୁ ପୂର୍ଣ୍ଣ 'ବାକ୍ ପ୍ରତିମା' ଭାବେ ପାଇବାକୁ କବିକୁ ନାନାଦି ମାର୍ଗରେ ଯିବାକୁ ସେଇଥିପାଇଁ ପଡ଼େ । କେତେବେଳେ ସେ ଅନୁଭବ କରେ ଶବ୍ଦଟିଏ ଅନ୍ୟ ଏକ ଶବ୍ଦକୁ ଭଦ୍ରଖିଆ ଟୋକା ଚନ୍ଦ୍ରମଣିକୁ ଡ଼ାକିଆଣିଲା ପରି ଡ଼ାକି ଆଣୁଛି । ଖାଲି ଡାକି ଆଣୁ ନାହିଁ ତ ବରଂ କେଉଁ ଏକ ଉଦ୍ଦେଶ୍ୟ ସାଧନ କରୁଛି ।

ଏକା ଏକା ଶବ୍ଦଟିଏ
ଡ଼ାକି ଡ଼ାକି କୁହୁଡ଼ିରେ
ଉଠିବାକୁ ଦେବ ଅନ୍ୟାନ୍ୟ କାକଳିଙ୍କୁ
କାଳି ଅନ୍ଧାରରେ (ପୃ- )

ଭଦ୍ରଖିଆ ଟୋକା ମିଥ୍ ହେଇ ଏକା ଏକା ଶବ୍ଦ ଭିତରେ ଲୁଚିଛି ଓ ଦିଶୁଛି । ପୁଣି ଲକ୍ଷ୍ୟ କରିବାର କଥା 'ଏକା ଏକା ଶବ୍ଦ' ଓ 'କାକଳି' ପରି ଦୁଇଟି ଅର୍ଥ ସୂଚକ, ଉଦ୍ଦେଶ୍ୟ ପ୍ରଣୋଦିତ ଶବ୍ଦ । ଏକା ହେଲେ ଧ୍ୱନି ସୃଷ୍ଟି କରେ । ଏକତ୍ର ହେଲେ କୋରସ୍, କାକଳି (Cacophony) ସ୍ୱର ବୈଷମ୍ୟ ଭିତରେ ଦିଏ ସ୍ୱରଟିଏ । ଧ୍ୱନି ନୁହେଁ ସ୍ୱର ହିଁ କବିତା । ଶ୍ରୀ ମିଶ୍ର ତତ୍ତ୍ୱଟିକୁ ମାର୍ଜିତ, ସରଳ ଓ ସହଜରେ ଉପସ୍ଥାପନ କରି ପାରିଛନ୍ତି । ତାହା ଯେତିକି ଦୁର୍ଲଭ ସେତିକି ଅବିସ୍ମରଣୀୟ । କାଳି ଅନ୍ଧାର ମଧ୍ୟ ଅନ୍ୟ ଏକ ଅର୍ଥପୂର୍ଣ୍ଣ ଶବ୍ଦ— ଯାହା ସୃଜନର ଆଦ୍ୟ ସକାଳକୁ ସୂଚନା ଦିଏ । ପୁଣି ସୂଚନାତ୍ମକ ଭାବେ ରହସ୍ୟମୟତାକୁ କବିତାର ଅନ୍ୟ ଏକ ବିଭାବ ବୋଲି ଉଦ୍ଦେଶ୍ୟବାଦିତାକୁ ଅସ୍ୱଷ୍ଟ ରୂପେ ସ୍ୱଷ୍ଟ କରେ । ଇଏ ସବୁ କଥା କବିତାର, ଶବ୍ଦର ପ୍ରାରମ୍ଭିକ ବ୍ୟାପ୍ତିର ଦିଗ ଓ ଦିଗନ୍ତ ।

ଦ୍ୱିତୀୟ ପର୍ଯ୍ୟାୟଟିକୁ ଆରମ୍ଭ କରାଯାଇପାରେ ଅକ୍ଟାଭିଓ ପାଜ୍‌ଙ୍କ କାବ୍ୟ ଉଦ୍ଧୃତିରୁ— Poetry is heard with the ears/ but seen only in the mind/ and the mind awakens only/ when memory is invoked. ବୈଦିକ ଋଷି ଯାହାକୁ ମାନସ ରୂପେ ଗ୍ରହଣ କରିଛନ୍ତି, ପାଜ୍ ପ୍ରାୟ ସେଇ ଅର୍ଥରେ ହିଁ Mind କୁ ଗ୍ରହଣ କରିଲା ଭଳି ବୋଧ ହୁଏ । କବିତା ସାଧାରଣତଃ ଶୁଣାଯାଏ କାନରେ କିନ୍ତୁ ଦର୍ଶନେନ୍ଦ୍ରିୟଟି ବାହ୍ୟ ନୁହେଁ, ଅନ୍ତଃସ୍ଥ । ଅନ୍ତରାତ୍ମାରେ ଜାଗୃତି ଘଟେ ଅତୀତ ଦ୍ୱାରା । ଅତଏବ, ମନୋରାଜ୍ୟରେ ଅତୀତ ଏକ ବୈପ୍ଳବିକ ଭୂମିକା ଗ୍ରହଣ କରି ରୂପରେଖ ନିର୍ଦ୍ଧାରିତ କରେ । ପରମ୍ପରାକୁ ବାଦ୍ ଦେଇ

କୋଉ କବି ମହାନ୍ ହେଇନପାରେ— ଏଇଆ ବୋଧେ ପାଜ୍‌ଙ୍କ ବିବୃତି । ଶ୍ରୀ ମିଶ୍ର ମଧ୍ୟ ପୂରା କଥାରୁ ଅନେକ ସାଦୃଶ୍ୟ ଓ ଚିତ୍ରବିମ୍ବ କରି ସଂଯୋଜିତ କରିଛନ୍ତି— ଯଥା 'ସାକ୍ଷ୍ୟନିଅ,/ ଭୂଷୁଣ୍ଡ କାକ ଅବା ଅକୂପାରକୂର୍ମକୁ/ ପଚାର' (ପୃ-୩୧)ରେ ନା କେଉଁ କାଳ କଳପ ଡାଳରୁ/ ଖସି ପଡ଼େ ଜୀର୍ଣ୍ଣ ଏକ ଶୁକ ପକ୍ଷୀ/ ନିଶ୍ଚଳ ସେ ରୋହିଣୀ କୁଣ୍ଡରେ' (ପୃ-୩୨) ଅଥବା 'ମୁଁ କି ଥିବି ଏକ ମାତ୍ର ଶବ୍ଦର କୁମ୍ଭୀର/ ପଙ୍କରୁ ଉଦ୍ଧାର କରି ପଦ୍ମଟିକୁ/ ପାର୍ଥନା କରୁଥିବା ହାତୀଟିର ପାଦକୁ କାମୁଡ଼ି/ ଧରିଥିବି ହଜିଥିବା ଅର୍ଥଟିକୁ (ପୃ-୪୪) । ତେବେ ସମୟ ସଚେତନତା ଦୃଷ୍ଟିରୁ ଶ୍ରୀ ମିଶ୍ର ପାଜ୍‌ଙ୍କ ଠାରୁ ଟିକିଏ ଆଗରେ ଏବଂ ଭାରତୀୟ ପରମ୍ପରାରେ ସାମିଲ୍ ହେଲା ପରି ବୋଧ ହୁଏ' ସମୟୋତ୍ତର କିଛି ଅଛି ବୋଲି ବିଶ୍ୱାସଟିଏ ଦିଶେ ।

ତାରାରେ ସିଗାରେଟ ଲଗେଇ
ଶୂନ୍ୟରେ ଧୂଆଁ ଛାଡ଼ିବାକୁ ହୁଏ
ଫାଙ୍କି ଦେବାକୁ ପଡ଼େ ଅତୀତକୁ
ପଛକୁ ଟାଣୁଥିବା ଭବିଷ୍ୟତର
ନିର୍ଜନ ବାନପ୍ରସ୍ଥ (ପୃ- ୨୫)

ଏବଂ ଏଇଥିପାଇଁ ନିଜ ଦେଶକୁ ସମ୍ମାନ ଜଣେଇ ଜୀବ ଓ ପରମର ଦ୍ୱୈତ ସତ୍ତାକୁ ଦେଇ ଶୂନ୍ୟବାଦିତାକୁ ଚେତନାସ୍ଥ କରି ଲେଖନ୍ତି ଶ୍ରୀ ମିଶ୍ର 'ଆକାଶ ସ୍ପର୍ଶୀ ଲିଙ୍ଗର ସ୍ଫଟିକ ରେତରେ/ ଚିରହରିତ୍ ମୋ ଦେଶ... ଭାରତ ବର୍ଷ । (ପୃ. ୨୭)

ତୃତୀୟ ପର୍ଯ୍ୟାୟରେ କବି ସ୍ୱୟଂ ନିଜ ଅନୁଭବକୁ ବ୍ୟକ୍ତ କରିବାକୁ ଯାଇ ପହଞ୍ଚିଯାନ୍ତି 'ଅଫେରା ପୁରୀ'ରେ ଯୋଉଠି ପ୍ରସାରିତ ସଲମ୍ବିତ ଦୃଷ୍ଟିର ସୀମାନ୍ତ ସୀମାହୀନ ହେଇଯାଏ— 'ଏ ପାଖରୁ ସେ ପାଖ/ଏ ପୃଥବୀ ଗୋଟାଏ ।' ବସ୍ତୁତଃ 'ଦୃଷ୍ଟି' ହିଁ କବିକୁ 'ଜଣରୁ ଗଣ'କୁ 'ବ୍ୟକ୍ତି'ରୁ ଚେତନାକୁ ନିଜକୁ 'କାବ୍ୟକୁ 'କାବ୍ୟ ପୁରୁଷ' ବା ନାୟକ'ରେ ପରିଣତ କରେ ।

ଚତୁର୍ଥ ପର୍ଯ୍ୟାୟଟି ହେଉଛି କବିର କାବ୍ୟ-ଚର୍ଯ୍ୟା ଏବଂ, ଏ ଗ୍ରନ୍ଥର ନିର୍ଯ୍ୟାସ । ଅମୂର୍ତ୍ତକୁ ମୂର୍ତ୍ତ କରେ କବି । (ଶବ୍ଦ ବି ଅମୂର୍ତ୍ତ !) ଯଦିଓ ଶବ୍ଦମାନେ ଧୋକା ନିଅନ୍ତି, ଧକ୍କା ଦିଅନ୍ତି, ତଥାପି କବି ବିରହୀ ପ୍ରେମିକ ପରି ଆଘାତକୁ— 'ବିଷ'କୁ ଅମୃତ ପରାୟେ ଗ୍ରହଣ କରେ । ସେ ତାପରେ ହୁଏ ଚିରଞ୍ଜିବୀ, ନୀଳକଣ୍ଠ, ସେ ହିଁ ସାହସ କରେ କବିତା ଉପରେ ଶବ୍ଦର ଉପରେ ଜୟଲାଭ କରିବାକୁ ଓ ସତତ ଚେଷ୍ଟିତ ଥାଏ ଶବ୍ଦଙ୍କୁ ବାନ୍ଧି ରଖିବାକୁ— ସାପ ପରି ପେଡ଼ିରେ ସାଇତି ରଖିବାକୁ—

ନଟରାଜ, ନୃତ୍ୟ କରେ
ଡିବି ଡିବି ଡମ୍ବୁରେ
ପ୍ରତିରନ୍ଧ୍ର, ଶୂନ୍ୟତାର
ନାଚି ଉଠେ ପ୍ରତି ପଲକରେ
ଲୟବଦ୍ଧ ତା' ସାଥିରେ
ମେଘ ଓ ଶୃଙ୍ଗ ଯେତେ
ନଦୀ ଓ ଝରଣା ଯେତେ
ଅରଣ୍ୟ ଓ ସପତ ସାଗର
ଝଡ଼ ଆଉ ଭୂମିକମ୍ପ
ଅଗ୍ନିଦାହ ତୁଷାର ବର୍ଷାରେ
ଟିପ ଦେଇ ନାଚେ ନଟରାଜ (ପୃ-୪୯)

ବାହ୍ୟ ପ୍ରକୃତିକୁ ଅନ୍ତଃ ପ୍ରକୃତିରେ ରୂପାନ୍ତରିତ କରିବାକୁ ଅନନ୍ୟ କହିବା ଛଡ଼ା ଉପାୟ ନାହିଁ । ଶବ୍ଦରେ କିପରି ଧ୍ୱନି ସଞ୍ଚାର ହୁଏ, ଧ୍ୱନି ସଞ୍ଚାର ହେବା ସହ କିଭଳି ଭାବ-ଜାଗୃତି ଘଟେ, ଭାବ ଜାଗରଣର ଲୟ କିଭଳି ଗୋଟାଏ ସ୍ୱରରେ ପ୍ରୋଥିତ ହୁଏ ତାର ଏକ ଦୁର୍ଲଭ ଦୃଷ୍ଟାନ୍ତ ଉପରୋକ୍ତ ଉଦ୍ଧୃତାଂଶ' କାପ୍ରାଙ୍କ ତାଓ ପଦାର୍ଥବିଦ୍ୟା ଓ ପାଇଙ୍କୁ ମନେ ପକେଇଲେ ଆହୁରି ଉତ୍ତମ । କବିର ନଟରାଜ ମୂର୍ତ୍ତ ଶବ୍ଦରେ ଚିତ୍ରିତ, —ଯାକୁ କେବଳ ଅନ୍ତର୍ଦୃଷ୍ଟି ବା ମାନସ ପକ୍ଷେ ଗ୍ରହଣ କରିବା ସମ୍ଭବ । ଅବଶ୍ୟ ଏ ମାନସିକ ପକ୍ରିୟାଟି ଗୋଟିଏ 'ବିକଳ୍ପ ବିଶ୍ୱାସ' । କଲେରିଜ୍‌ଙ୍କ Fancy ସହ ଏହାର ସମ୍ବନ୍ଧ । ବିକଳ୍ପ ବିଶ୍ୱାସ କବିର ଜୀବନ ଓ ଆଦର୍ଶ ଉଭୟଙ୍କୁ ଛିଏଇ ରଖିପାରେ- ଥାଇପାରେ ଏଥିରେ ବିଡ଼ମ୍ବନା । କାରଣ' ଯାହା ପାଇଁ ଇଚ୍ଛୁଥିବ/ବଞ୍ଚିବାକୁ ଏଠି ବାରମ୍ବାର/ ସେ ହବ ସବୁବେଳେ/ ସତେଅବା ଆଉ ସେ କାହାର' (ପୃ-୫୨) । ଅଧିକନ୍ତୁ ଶ୍ରୀ ମିଶ୍ର ବିଡ଼ମ୍ବନାକୁ ବେଖାତିର କରି ଯେଉଁ ମାନସିକ ସ୍ତରରେ ପହଞ୍ଚିଛନ୍ତି ତା ପାଇଙ୍କ ଠାରୁ ଚେତନା ସ୍ତରରେ ଭାରତୀୟ ଦର୍ଶନରେ ଉଦ୍‌ବୁଦ୍ଧ ତଥା ମିଶ୍ରିତ ହେତୁ ବୃହତ୍ତର ତାତ୍ତ୍ୱିକତା ନାହିଁ ଅଥଚ ତତ୍ତ୍ୱ ଓଁ କାର ପରି ଆସୁଚି ଘନୀଭୂତ ଅନୁଭବ ପରି ନିର୍ଜନ ଗୁମ୍ଫାରୁ ।

ଶବ୍ଦରେ ନଥିବ ପ୍ରିୟା
ଅର୍ଥରେ ନ ଥିବ
ସତ୍ୟରେ ନ ଥିବ ସତୀ
ମିଥ୍ୟାରେ ନଥିବ

ଜନ୍ମରେ ନଥିବ ରାଣୀ
ମରଣେ ନଥିବ
ଅମୃତେ ନଥିବ
କିବା ବିଷରେ ନଥିବ
କାଳରେ ନଥିବ
ମାତ୍ର କାଳ କାଳ ଥିବ (ପୃ-୫୩)

କାବ୍ୟ ସୁନ୍ଦରୀର ଯାତ୍ରାପଥକୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ଏଇଥିପାଇଁ ଯେ କାବ୍ୟ ଜିଜ୍ଞାସା ଦର୍ଶନ ସ୍ତରକୁ ଆସିଲାବେଳେ ଲୟ ବ୍ୟାହତ ହେଉ ନାହିଁ; ଭାରି ଲାଗୁନାହିଁ ଅଥଚ ଉପଲବ୍ଧି କରି ହେଉଛି ଭାବକୁ । (ପୁରାଣ ଭିତ୍ତିକ ଛନ୍ଦାନୁକ୍ରମର ବାକ୍ ଭଙ୍ଗୀଟି ମଧ୍ୟ ଦୃଷ୍ଟାନ୍ତ ଯୋଗ୍ୟ ।) କବିତାକୁ ସତରେ ଛୁଇଁ ଛୁଇଁ ହୁଏ ନାହିଁ, ଧରି ଧରି ହୁଏ ନାହିଁ । ଏଇ ତାର ଅଲୌକିକ ମହିମା । ସେଇଥିପାଇଁ କାବ୍ୟ ଜଗତର ଶୀର୍ଷରେ ଥାଇ ମଧ୍ୟ ଇଲିଅଟ୍ କହିଥିଲେ Trying to learn to use word's (East cocker, V). ଅର୍ଥାତ୍ ଯେତେ ବାସ୍ତବତାର ଇନ୍ଦ୍ରଧନୁ କବିତା ସଜାଉନା କାହିଁକି ଗୋଟାଏ ପ୍ରକାର ଅସଫଳତା ରହିଥାଏ ଓ କବିତା ପୁଣି ଏକ କଳେବରର ଅପେକ୍ଷା ରଖେ । ଯୋଡ଼ା ଆଷାଢ଼ର ବିରଳ ସମ୍ଭାବନାକୁ ସ୍ୱାଗତ ମୁଦ୍ରାରେ ପ୍ରତୀକ୍ଷା କରେ । କାରଣ ଶବ୍ଦ ନାରୀ ଓ ପୁରୁଷ, ମୋହିନୀ । – ସିଏ ହିଁ ଜଗନ୍ନାଥ ଶଙ୍ଖନାଭିର ଶବ୍ଦ ବ୍ରହ୍ମ ।

ଶେଷତଃ, ସରଳ ଖଣ୍ଡିତ ବାକ୍ୟ, ଅନୁଦାତ୍ତ ସ୍ୱର, ଗଭୀର ମନନଶୀଳତା, କଳ୍ପନାର ବାଇରନୀୟ ଉଡ୍ଡାଣ ଓ ଉପଲବ୍ଧିର ମଧୁର ରସାୟନରେ ଏ କାବ୍ୟ ଗ୍ରନ୍ଥଟି ଓଡ଼ିଆ କାବ୍ୟର ଦୀର୍ଘ ପରମ୍ପରାରେ ଏକ ବଳିଷ୍ଠ ସଂଯୋଜନା, ଏକ ସ୍ୱତନ୍ତ୍ର ସ୍ୱାକ୍ଷର । କେତେକ ବିଭାଗର କେତେକ ପଙ୍‌କ୍ତି ଲୟ ଓ ଛନ୍ଦୋବଦ୍ଧତା ହେତୁ ସଙ୍ଗୀତର ଭ୍ରମ ସୃଷ୍ଟି କରେ । ଯଦିଚ ଆପେକ୍ଷିକ ଯୁକ୍ତିସିଦ୍ଧତା ପରିଦୃଷ୍ଟ ହୁଏ ନାହିଁ । କଳ୍ପନାରେ ଏ ଯୁକ୍ତି ସିଦ୍ଧତା ମିଳିବା ସମ୍ଭବ– କାରଣ କଳ୍ପନାରେ ହିଁ ଏ କବିତା ଗୁଡ଼ିକର ଗତି । ଅବଶ୍ୟ 'ବାଗର୍ଥ' କୁ ଯେଉଁଭଳି ଅନ୍ୱିତ କରାଯାଇଛି ଓଡ଼ିଆ କବିତାରେ ତା ଅପୂର୍ବ । ଏହା ଏକ ଦୀର୍ଘ କବିତା ବା ମୁକ୍ତକାବ୍ୟ ହୋଇଥିବାରୁ କିଞ୍ଚିତ ଭିନ୍ନ ସମୟରେ ଲୟ ଭ୍ରଷ୍ଟ ହେଲେ ବି ଲକ୍ଷ୍ୟ ଭ୍ରଷ୍ଟ ହୋଇନାହିଁ । ଏହା ହିଁ ଏହାର ସଶକ୍ତ ଐକାନ୍ତିକ ସ୍ୱରୂପ ।

ଦଇତାପଡ଼ା ସାହି, ପୁରୀ
୧୯୯୬ 'ସମାବେଶ'
ପୂଜାସଂଖ୍ୟାରେ ପ୍ରକାଶିତ



# ଶବ୍‌ଦର ରୂପରେଖ : ଶବ୍ଦ ଏକାଏକା ଏକତ୍ର

*ଇନ୍ଦୁ ମିଶ୍ର*

ନିର୍ଜନତା ଭିତରେ ସୃଷ୍ଟିର ଓଁକାର ଜନ୍ମ ନେବାବେଳେ ଲାଗିଥାଏ ଶବ୍ଦଙ୍କର ଗହଳ । ଏକା ଏକା ନିଜ ନିଜ କକ୍ଷ ପଥରେ ଘୂରିବୁଲୁଥିବା ଶବ୍ଦମାନେ ପରିଣତ ହୁଅନ୍ତି ଶବ୍ଦମାଳାରେ । ଏକତ୍ର ଗୁନ୍ଥି ହୋଇ ଯାଉଥିବା ଏହି ଶବ୍ଦମାଳାକୁ ନେଇ କବି ଗଢ଼ିଦିଏ ବାକ୍- ପ୍ରତିମା । ଭାବାବେଶର ପ୍ରମୂର୍ତ୍ତ ବାକ୍-ପ୍ରତିମା ହିଁ ହୁଏ ଶବ୍ଦ-ଦେବୀ । ଭାବ ଭୋଳା କବିର - ଶକ୍ତି ରୂପରେ, କେଉଁ ମାହେନ୍ଦ୍ର ମୁହୂର୍ତ୍ତରେ ଅବତରି ଆସନ୍ତି ସେ ଶବ୍ଦ - ଦେବୀ ।

କବି ଶ୍ରୀ ହରିହର ମିଶ୍ରଙ୍କ 'ଶବଦ୍ ଏକ୍ୟ ଏକା ଏକତ୍ର' (୧୯୯୫)ର ପ୍ରାଗଭ୍ରାଷ ରୂପେ ବାକ୍ ପ୍ରତିମାର ବକ୍ତବ୍ୟକୁ ଗ୍ରହଣ କରାଯାଇପାରେ । ବାକ୍ ପ୍ରତିମାର ପ୍ରେରଣାରେ ଜନ୍ମ ନିଏ କବିତ୍ୱ । ଆଲୋକପାୟୀ ଆତ୍ମାର ମଧୁ-ସନ୍ଧାନ ଭିତରେ ପରପୂର୍ଣ୍ଣ ହୁଏ କବିର ଉତ୍ତରଣ ପ୍ରୟାସ । ଜୀବନ ସାଧାରଣ ଅନୁଭୂତିମୟ ସ୍ତରରେ ଆବଦ୍ଧ ନ ହୋଇ ସୂକ୍ଷ୍ମ ଭାବ ଜଗତରେ ଗତିଶୀଳ ହୁଏ । ସୁଖ-ଦୁଃଖ, ଲାଭାଲାଭ, ଆନନ୍ଦ-ବେଦନାର ଅସ୍ତିତ୍ୱ ରହେ ନାହିଁ କାହାର । ଅପସରି ଯାଏ ଧୀରେ ଧୀରେ ପାର୍ଥିବ ମାୟା । ଅଭିନବ ସେ ସମ୍ପର୍କର ପରିଣତି ଅତ୍ୟନ୍ତ ଶୁଦ୍ଧପୂତ ଓ ଆଲୋକସ୍ନାତ 'ସେ ଲୟରେ ଅନେକ ସମ୍ପର୍କ/ ଯାଏ କଟି/ ବହୁ ଆତ୍ମୀୟତା ଲାଗେ ମାୟାପରି ନିତାନ୍ତ ଅଳୀକ/ ସେ ଶୁଦ୍ଧ ମାୟାରେ ଜ୍ୟୋତିସ୍ନାନ କରି/ ସ୍ନିଗ୍ଧ ସବୁ ଅନ୍ଧକାର । ଶୁଭ୍ରମୟ ଦିଶେ ନୀଳକଣ୍ଠ ।' ଭୂଲୁଣ୍ଠିତ ମାନବ ସତ୍ତାକୁ ଯାହା ମୁହୂର୍ତ୍ତକରେ ଉତ୍ତୋଳିତ କରେ; ସମୁଚ୍ଚ ପାର୍ବତ୍ୟ ଗିରିଶୃଙ୍ଗରେ ଯାହାର ଅଧିବାସ । ପରମେଶ୍ୱରୀ ସେହି ମହାଶକ୍ତି ଧ୍ୟାନର ଚରମ ବିନ୍ଦୁରେ ସମଗ୍ର ଭାବଜଗତକୁ ପରସ୍ପନ୍ଦିତ କରେ । ନିବିଡ଼ ରସଘନ ମୁହୂର୍ତ୍ତରେ ସ୍ୱପ୍ନ ଓ ପ୍ରହେଳିକାର ମୌଗ୍ଧ୍ୟରୁ ଜନ୍ମ ନିଏ ଶବ୍ଦ : ସୃଷ୍ଟିକର୍ତ୍ତ୍ରୀ ପରମ ପ୍ରେରଣାର ଜନୟିତ୍ରୀ ସେଇ ଚେତନା-ଶକ୍ତି । ଆବାହନ କରନ୍ତି କବି —

'ତମେ ହିଁ ଶକ୍ତି ସୃଜନୀ
ତମେ ମହା ଆକର୍ଷଣୀ
ଉତ୍ତର ସାଧିକା ଅବା ପ୍ରୀତିର ରାଧିକା' [ ପୃ-୪ ]

ପ୍ରୀତି ଓ ପ୍ରତ୍ୟୟର ପରମ ପାର୍ବଣରେ ହିଁ ଏକତ୍ର ହୁଏ ଶବ୍ଦ । ଜୀବନର ପ୍ରତିକୂଳ ପରିବେଶ ଭିତରେ ଶବ୍ଦ-ଦେବୀ ବାକ୍-ପ୍ରତିମା ହିଁ ଶିଖାଇ ଦିଏ ବିପ୍ଳବର ଉପାୟ । ନିର୍ଭୀକ ଜୀବନ ବୋଧର ଆଗ୍ନେୟ ଓଁ କାରରେ ଶୁଭେ ସୃଷ୍ଟିର ଅଙ୍ଗୀକାର । ବାକ୍-ପ୍ରତିମା କେବଳ କବିର ପ୍ରିୟତମା, ପ୍ରେୟସୀ ରାଧିକା ନୁହେଁ; ସେ ସ୍ୱୟଂ ଜୀବନ୍ୟାସ ଦେବାର ଶକ୍ତିରେ ଅମିତ ବିକ୍ରମା । ଶବ୍ଦର ସର୍ଜନ୍ୟ କ୍ଷେତ୍ରରେ ସେ ବାଗ୍ ଦେବୀ । ସୃଷ୍ଟିର ପରମ ପୂଜନୀୟା ସେ ଦେବୀ ଶାକମ୍ଭରୀ । ସୃଜନକ୍ଳାନ୍ତ କବି ସତ୍ତାକୁ ଉଦ୍‌ଜୀବିତ କରିବା ସହ ସମଗ୍ର ସମୟର ତୀବ୍ର କଷାଘାତକୁ ଅପନୋଦନ କରିବାର ଶକ୍ତିରେ ସେ ଅପରିସୀମା । ବିବିଧ ଭୂମିକା ଭେଦରେ ତା'ର ଇଙ୍ଗିତରେ ଶବ୍ଦରେ, ଫୁଲ ଓ ତାରାର ପରିସ୍ପନ୍ଦନ । ତା'ର ପଲକ ପାତରେ - ବାଗ୍ ଅର୍ଥର ସଂଯୋଗରେ ଶବ୍ଦ ଜୀବନ୍ୟାସ ଲଭେ । ଅସଂଖ୍ୟ ଶବ୍ଦପୁଞ୍ଜର ମିଳନରେ ଜନ୍ମନିଏ ସୃଷ୍ଟିସତ୍ତା, ଇତିହାସ ଓ ସାହିତ୍ୟ ।

ବାକ୍‌ପ୍ରତିମାର ପରବର୍ତ୍ତୀ ପର୍ଯ୍ୟାୟରେ ସଂଯୋଜିତ ହୋଇଛନ୍ତି ଛବିଶଟି କବିତା । ସାମଗ୍ରିକ ଭାବରେ ଏହି କବିତା ଗୁଚ୍ଛ ଏକକ କାବ୍ୟ ସୃଷ୍ଟିର ମର୍ଯ୍ୟାଦାକୁ ଅପେକ୍ଷା ରଖେ । କବିର ସୃଷ୍ଟିଶୀଳ କ୍ଷମତା, ଶବ୍ଦର ବିପୁଳ ଶକ୍ତି ଓ ସୃଜନୀର ବିବିଧ ରୂପ ବୈଚିତ୍ର୍ୟ ହିଁ ଏହି କାବ୍ୟ-କଳାର ବୈଶିଷ୍ଟ୍ୟ । ଜୀବନ ଯାତ୍ରାର ହଟଚମଟ ଓ ଗୋଲୋକ-ଧନ୍ଦା ଭିତରେ ଶବ୍ଦ ଧନ୍ଦ ହେଉଥାଏ କବିର ହୃଦୟରେ ଅଥବା ଓଷ୍ଠଧାରରେ । ଶବ୍ଦ ହୁଏ ସୃଷ୍ଟି ସତ୍ତାର ଆଧାର। ଜନ୍ମ ନେବାର ଯନ୍ତ୍ରଣାରେ ସ୍ୱୟଂ କାତର ହୁଏ ସେ । ରୂପ ବିନ୍ୟାସରେ ସମାବିଷ୍ଟ ହେବାପାଇଁ ରାହାଖୋଜେ । ଜୀବନର ବୃତ୍ତାୟିତ ରୀତିରେ ଘାରି ହୋଉଥାଏ ଯାହା ସମୟ । ଯାତ୍ରାର ଅନ୍ତିମ ବିନ୍ଦୁରୁ ପୁନଶ୍ଚ ପ୍ରତ୍ୟାବର୍ତ୍ତନର ନାଟକ ଅଭିନୀତ ହେଉଥାଏ ।

ଶବ୍ଦ ସମୟ ଅତିରିକ୍ତ ଅନ୍ୟ କାହାର ସହଯାତ୍ରୀ ହୁଏ ନାହିଁ । ଆପାତତଃ ସୃଷ୍ଟିର ସନ୍ଦୀପନ ପାଇଁ କେତେକ ନିୟମରେ ଆବଦ୍ଧ ହେବା ବ୍ୟତୀତ ଶବ୍ଦ ବଶ୍ୟତା ସ୍ୱୀକାର କରେ ନାହିଁ ପାର୍ଥିବ ଲାଳସାର । ସଙ୍କେତ ନପାଇ ବ୍ୟତିବ୍ୟସ୍ତ ହୁଏ କାବ୍ୟ ନାୟକ । ସାରା ରାତିର ସନ୍ଧାନ ପରେ ଶ୍ରାନ୍ତ କ୍ଳାନ୍ତ ନାୟକ ଜୀବନ-ବୃକ୍ଷର ରକ୍ତାକ୍ତ ଡାଳରୁ ଅବଶିଷ୍ଟ ସ୍ୱପ୍ନର ବୃତ୍ତାନ୍ତ ସକଳ ଖୋଜିହୁଏ । ଜୀବନ ହୁଏ ଅନ୍ୱେଷାର ଅନ୍ୟନାମ । ନିରନ୍ତର ଅନୁସନ୍ଧାନ ଓ ଅନ୍ୱେଷଣର ପ୍ରକ୍ରିୟା ମାଧ୍ୟମରେ ଶବ୍ଦ ବେଶ ବଦଳାଇ ନିଏ । ଭିନ୍ନ ଭୂମିକା ଧରେ । ସମୟକୁ ସଂଜ୍ଞାୟିତ କରିବା କଷ୍ଟସାଧ୍ୟ ହୋଇପଡ଼େ ।

'ଶବ୍ଦ ଏକା ଏକା ଏକତ୍ର'ର ଏକ ଉଲ୍ଲେଖନୀୟ ପର୍ଯ୍ୟାୟ ହେଉଛି ଏହାର ବିରୋଧାଭାସ । ସୃଷ୍ଟିସତ୍ତାର ପ୍ରତୀକ ଶବ୍ଦ ଏଠି କେବେ ଅକ୍ଷମ ଓ ବେଦନା ବିଦଗ୍ଧ ତ ଅନ୍ୟ କେବେ ଅସୀମଶକ୍ତିର ଅଧିକାରୀ । ଆନନ୍ଦ ମୁଖର ଏହାର ଅସ୍ତିତ୍ୱ ପୋଛି ନିଏ ସମୟର

ସକଳ ଜ୍ୱାଳା ଓ ଯନ୍ତ୍ରଣା । ପାର୍ଥିବ ଜୀବନଧାରା ସହିତ ସାମିଲ ହେବା ସଙ୍ଗେ ସଙ୍ଗେ ଅପାର୍ଥିବ, ଶାଶ୍ୱତ ସତ୍ୟ ସାଥିରେ ସଂପୃକ୍ତ ହୁଏ । ସ୍ୱପ୍ନ ଓ ସ୍ୱପ୍ନ ଭଙ୍ଗ ଏକତ୍ର ଅନୁଭୂତ ହୁଏ ଶବ୍ଦର ଇଲାକାରେ । ବହୁ ଜ୍ଞାତ, ଅଜ୍ଞାତ ପରିଧିରେ ଯାତ୍ରାରତ ଜୀବନଧାରା ଅଚାନକ ସତେ ଅବା ଧକ୍କା ଖାଏ ପାରସ୍ପରିକ ଚେତନା-ବଳୟରେ । କବିର ସ୍ୱପ୍ନ, ଜୀବନ ଓ ସମୟର ସଙ୍ଘର୍ଷ ପ୍ରମାଣିତ ହୋଇଯାଏ ଆପଣା ଛାଏଁ ଆପେ । ଶବ୍ଦ କବିତାର ପାଦରେ ସୀମାବଦ୍ଧ ନ ରହି ସମନ୍ୱିତ ହୋଇଯାଏ ସମୟ ଓ ଇତିହାସ ସହ । ନିଜର ଅସାମର୍ଥ୍ୟ ଓ ଶକ୍ତିହୀନତାକୁ ଅତିକ୍ରମ କରିବାର ପ୍ରୟାସରେ ଗତିଶୀଳ ହୁଏ । 'ବୁଡି ଯାଉଥିବା କଳା ପାଣିରେ ସ୍ୱରର କୋରସ ଯେତେ' ମୁକୁଳି ଆସେ 'ବ୍ୟସତ୍ ବିବ୍ରତ କୁଆଟି ପରି' (ପୃ : ୧୫) ଶବ୍ଦକୁ କୁଆ ସହ ତର୍କଣା କରିବା ଅକାବ୍ୟିକ ମନେ ହୋଇପାରେ । ମାତ୍ର ଏହି ଅକାବ୍ୟିକତାର ଅନ୍ତରାଳରେ ଅନ୍ତର୍ନିହିତ ରହିଛି ଏକ ଅର୍ଥମୟତା । କୁଆର ରାବ (ଶବ୍ଦ) ହିଁ ସକାଳେ ଜଗାଇଦିଏ ଅଜସ୍ର ପକ୍ଷୀ କଣ୍ଠର କାକଳିକୁ—

'x x ବ୍ୟସତ୍ ଓ ବିତ୍ରସ୍ତ କୁଆଟି ପରି
ଏକା ଏକା ଏକା ଶବ୍ଦଟିଏ
ଡ଼ାକି ଡ଼ାକି କୁହୁଡ଼ିରେ
ଉଠିବାକୁ ଦେବ ଅନ୍ୟାନ୍ୟ କାକଳିଙ୍କୁ
କାଳି ଅନ୍ଧାରରେ (ପୃ.-୧୫)

'ଶବ୍ଦ ଏକା ଏକା ଅନେକ କାକଳିଙ୍କୁ' ଜନ୍ମ ଦେବାପାଇଁ କି ଭଳି ସମର୍ଥ ତାହା ସୂଚିତ ହୋଇଛି ଉଦ୍ଧୃତ ପଂକ୍ତିରୁ ।

ସୃଷ୍ଟିର ପରମ ଅର୍ଥମୟତା କୌଣସି ଚକ୍ରାନ୍ତକାରୀ ବଣିକ ଅଥବା ସ୍ୱାର୍ଥପିପାସୁ ଏକଛତ୍ରବାଦୀ ହାତରେ ଆବଦ୍ଧ ରହେ ନାହିଁ । ମଧୁ ଚୋରି କରୁଥିବା ଭ୍ରମର ଓ ସ୍ୱପ୍ନ ଚୋରି କରୁଥିବା ସୌଦାଗର ମୁଠାରୁ ତେଣୁ ବିଞ୍ଚି ହୋଇପଡ଼େ ମୁଠାଏ କଉଡ଼ି ଭଳି ସକାଳ । ମୂର୍ତ୍ତିଚୋର ସୌଦାଗର ମୂର୍ତ୍ତିର ସ୍ୱପ୍ନ ଓ ସମ୍ଭାବନାକୁ ଶେଷ କରିଦେଇପାରେ ନାହିଁ ଚିରକାଳ । କବିତାରେ କଳା ସଂସ୍କୃତି ତଥା ମାନବିକ ସ୍ୱପ୍ନ ଚେତନା ଅପ୍ରତିହତ ରହେ । ଅଚାନକ ଶବ୍ଦ ଅର୍ଥାନ୍ୱିତ ହୁଏ ପାର୍ବତୀ ପରମେଶ୍ୱରଙ୍କ ଯୁଗନଦ୍ଧ ମୁଦ୍ରା ଭଳି । ପଙ୍କରେ ଲୋଟୁଥିବା ପାର୍ଥିବ ସତ୍ତା ଧୀରେ ଧୀରେ ଅକାଶୋନ୍ମୁଖୀ ହୁଏ । ଶବ୍ଦ ଚିରକାଳ ହୁଏତ ଅର୍ଥାନ୍ୱିତ ହୁଏ ନାହିଁ । ଚିରକାଳ କଳରବରେ ମୁଖରିତ ହୁଏ ନାହିଁ ଶୂନ୍ୟ ନିରର୍ଥକ ଜୀବନରେ । ସମୟ ଗଡ଼ି ଚାଲିଥାଏ ସାଥିରେ ଧରି ମାନବିକ ଭାବ-ଜଗତର ବହୁ ବିରୋଧାଭାସ । 'ଆକାଶର

ରଙ୍ଗସଭା ସରିଗଲା ପରେ/ ହ୍ରସ୍ ହାସ୍ କରିବାକୁ ଶକ୍ତି ନଥିବ ଶବ୍ଦର' ପଂକ୍ତିରୁ ଅନୁମିତ ହୁଏ ସୃଜନୀ ଶକ୍ତିର ଅର୍ଥହୀନତା । ଜୀବନର ଛାଇ-ଆଲୁଅ ଭିତରେ କେବେ ଉତ୍‌ଥାନ ଆସେ ତ କେବେ ପତନ । କବିତାର ଗୁଞ୍ଜରଣ ଥମିଯାଏ । ସ୍ତବ୍ଧ ହୋଇଯାଏ ସମୟ । ଆଖି ପିଛୁଳାକେ ଅସ୍ତ ଯାଏ ଶବ୍ଦର ଐଶ୍ୱର୍ଯ୍ୟ—

'ମୁକ୍ତା... ମୁକ୍ତା' ବୋଲି
'ଇଉରେକା' କଲାବେଳକୁ
କାକର ଟୋପା ଗୁଡ଼ିକ ନଥିବେ
ସକାଳର କରପଲ୍ଲବରେ
ନଥିବ ଲକ୍ଷ୍ୟ ସ୍ଥଳ
ନଥିବ ବାଗର୍ଥ ଯୁଗଳ ।' (ପୃ.-୨୧)

ମୁକ୍ତା ବିମଣ୍ଡିତ ବାଗର୍ଥର ସମାରୋହ କିନ୍ତୁ ବାସ୍ତବତଃ ଅନ୍ତର୍ହିତ ହୋଇନଥାଏ ପୃଥିବୀରୁ । ଶକ୍ତିର ଅଭାବରୁ, ବାକ୍ ପ୍ରତିମାର ଅକରୁଣାରୁ ତାହା ଉପଲବ୍ଧ ହୋଇପାରେ ନାହିଁ ଯାହା, ଉପଭୁକ୍ତ ରାତ୍ରିର ଶୂନ୍ୟ ପାତ୍ର ଗୁଡ଼ିକରେ ଥାଏ । ତେଣୁ ସଂଗୃହୀତ ଅଜସ୍ର ମୁକ୍ତା ଓ କାକର ବିନ୍ଦୁକୁ ଛୁଇଁ ପାରେ ନାହିଁ ସକାଳ । ଜଞ୍ଜାଳ ଗ୍ରସ୍ତ ଜୀବନ ଉପଲବ୍ଧି କରିପାରେ ନାହିଁ ଐଶ୍ୱର୍ଯ୍ୟ ବିମଣ୍ଡିତ ସତ୍ତା ଓ ସମୟକୁ x x 'ଖାଲି ଗ୍ଲାସ ଗୁଡ଼ିକରେ ସଂଗୃହୀତ ହୋଇଥିବେ/ ଅନେକ ମୁକ୍ତା/ ଅନେକ କାକର/ କେବଳ ଛୁଇଁ ପାରୁନଥିବ ସହସ୍ର ହାତ ସକାଳର ।'

'ସହସ୍ର ହାତ'ର ନିରର୍ଥକତା ଏଠାରେ ସହଜରେ ଅନୁମେୟ ।

ଜୀବନର ବହୁ ଭିନ୍ନ ସତ୍ତା, ବିବିଧ ବିରୋଧାଭାସକୁ କାବ୍ୟାୟିତ କରିଛି 'ଶବ୍ଦ ଏକା ଏକା ଏକତ୍ର' । ଜୀବନ କ'ଣ ? କବି ମଧୁସୂଦନ ରାଓ କହିଲେ— ନିଶ୍ଚିନ୍ତରେ ଧାବମାନ ହେଉଥିବା ଏକ ସ୍ରୋତ । ମୃତ୍ୟୁ— ସିନ୍ଧୁର କରାଳ ଲହରୀକୁ ସ୍ପର୍ଶ କରିବା ଯାହାର ଲକ୍ଷ୍ୟ । ସଭ୍ୟତା ଓ ଶତାବ୍ଦୀର ବିକାଶ ସାଥିରେ ମୃତ୍ୟୁ ପ୍ରତି ସଚେତନତା କ୍ରମଶଃ ଆନୁପାତିକ ଦୃଷ୍ଟିରୁ ବୃଦ୍ଧି ପାଇବାରେ ଲାଗିଛି । ଆଶା, ସମ୍ଭାବନା ଓ ପ୍ରାପ୍ତିର ପରିସର ସମ୍ପ୍ରସାରିତ ହେବା ସହ ନୈରାଶ୍ୟ, ଆଶଙ୍କା ଓ ଅପ୍ରାପ୍ତିବୋଧର ପରିସୀମା ସମାନୁପାତିକ ଭାବେ ବିସ୍ତାର ଲଭିଛି । ମୃତ୍ୟୁବୋଧର ପରିସୀମା ପରିବ୍ୟାପ୍ତ ହୋଇଛି ଜନ୍ମଠାରୁ ମରଣ ପର୍ଯ୍ୟନ୍ତ । ଏଣୁ ଅଲୌକିକ ଏକ ସତ୍ତାର ସନ୍ଧାନ ବେଳେ କବି—ଆତ୍ମା ଅନୁଭବ କରିଛି ।

'ବର୍ତ୍ତମାନ ସେ ମିଳିବେ ନାହିଁ/ ସକଳ ପ୍ରାପ୍ତିରେ ଆଶାର, ସମ୍ଭାବନାର/ ସେ ରୂପରେ ବୋଲା ସରିଥିବ/ ଏଂତୁଡ଼ିଶାଳରୁ ଶ୍ମଶାନ ଯାଏଁ, କୁଢ଼ କୁଢ଼ ପାଉଁଶ ।'

(ପୃ. - ୨୨)

ସୁଖ, ଦୁଃଖ, ଆନନ୍ଦ ବେଦନାର ଉର୍ଦ୍ଧ୍ୱରେ ତେଣୁ ସେ ଉଦ୍‌ବୋଧନ ଦିଅନ୍ତି—

'ପ୍ରିୟ ଶତ୍ରୁମାନେ ! ଭୁଲିଯାଆନ୍ତୁ ଲାଭ କ୍ଷତି, ଅନୁଭବକୁ ଅନୁଭବରେ ଦେଖିବାକୁ ଆସନ୍ତୁ ।' (ପୃ.-୨୫)

ସଂସାରରେ ସବୁଠାରୁ ନିକଟତମ ବ୍ୟକ୍ତି ମଧ ସମୟର ଭୂମିକା ଭେଦରେ ଶତୃବତ୍ ଆଚରଣ କରେ । ଏ ଶତୃତା ପ୍ରକାରାନ୍ତରେ ଏକ ଆଶିର୍ବାଦ ହୁଏ କବି ସତ୍ତାର ବିକାଶ ପାଇଁ । ସହସ୍ର ସୂକ୍ତମାଳା ଧାଡ଼ିଏ କବିତା ରୂପରେ ଅବତୀର୍ଣ୍ଣ ହୁଏ । କବି ଦୁଃଖ, ବେଦନାର ହଳାହଳ ପାନ କରି ହୁଏ ନୀଳକଣ୍ଠ । ଭାଷା ଓ ଶବ୍ଦର ନିରାପତ୍ତା ଭିତରେ ସେଇ 'ଭାବ ଭୋଳା ନୀଳକଣ୍ଠ କବି'' ଜୀବନ ବଞ୍ଚିବା ପାଇଁ ଉପାଦାନ ଆହରଣ କରେ । ବସ୍ତୁତଃ ଭାବସ୍ରୋତ ମଧରେ ହୃଦୟ ହିଁ ବୃହତ୍ତର । ବେଦରେ ନିରୀକ୍ଷଣକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ସେହି ଆତ୍ମାନଂ ବିଦ୍ଧି'ର ମନ୍ତ୍ର ଉଚ୍ଚାରିତ ହୋଇଛି କବି ହରିହର ମିଶ୍ରଙ୍କ କାବ୍ୟ ବଳୟରେ—

ପିତୁଳାକୁ ଏଡ଼ିଚାଲ, ରୋବର୍ଟକୁ କାଟିଚାଲ/ ଚାଲ ସବୁ ହୃଦୟକୁ ପ୍ରଦକ୍ଷିଣ... କରିଚାଲ/ ତୀର୍ଥ ନୁହେଁ ମହାକାଶ ନୁହେଁ/ ଆମେ ଥରେ ଏ ମନର ପାତାଳ ଭେଦିବା/ ତା' ଭିତରେ ନିଜ ନିଜ ନିମଜ୍ଜିତ ପ୍ରତିମା ଦେଖିବା ।' (ପୃ.-୨୯)

ଚେତନା ଦର୍ପଣରେ ଆତ୍ମ ନିରୀକ୍ଷଣ ହିଁ ଜୀବନର ସର୍ବବୃହତ୍ ସତ୍ୟ । ତାହା ପରମ ତୀର୍ଥ ଓ ଚରମ ସତ୍ୟ । ହରିହର ମିଶ୍ରଙ୍କ ସୃଷ୍ଟିରେ ଆଧାତ୍ମିକତା ଓ ରହସ୍ୟମୟତା— ପ୍ରାୟ ଏକ ଯୋଗସୂତ୍ରରେ ଗ୍ରଥିତ । କଳା ଓ କବିତା କୌଣସି ନା କୌଣସି ସ୍ତରରେ ସଂଯୁକ୍ତ ରହିଥାଏ ଅଲୌକିକ ଶକ୍ତି ଓ ସ୍ରଷ୍ଟା ସହ । ସମସାମୟିକ କାଳର ଦୁଃଖ, ଯାତନା ଅବକ୍ଷୟରୁ ଉତ୍ତରଣ ପ୍ାଇଁ ଏହା ଏକ ଉତ୍କୃଷ୍ଟ ମାଧମ । ତେଣୁ ତାଙ୍କ ସୃଷ୍ଟିରେ ଶବ୍ଦ ପୂର୍ଣ୍ଣତଃ କେବେ କ୍ଷୟ ପାଏ ନାହିଁ ବରଂ ଚନ୍ଦ୍ର-କଳାର ହ୍ରାସ ବୃଦ୍ଧି ଭଳି ଏହା ଅମାବାସ୍ୟା ପୂର୍ଣ୍ଣିମାର ଛାଇ- ଆଲୁଅକୁ କେନ୍ଦ୍ର କରି ସର୍ବଦା ବିଘୂର୍ଣ୍ଣିତ ହେଉଥାଏ । ବର୍ଦ୍ଧିଷ୍ଣୁ ଜୀବନର ଲୀଳାବିଧୃତ କଳେବର ମଧରେ ଶବ୍ଦର ମୃତ୍ୟୁ ହୁଏ ନାହିଁ ଶେଷଥର ପାଇଁ - ''ବର୍ଦ୍ଧିଷ୍ଣୁ ଜୀବନର ଲୀଳା ବିଧୃତ କଳେବର/ ମୃତ୍ୟୁ ନାହିଁ ତାର/ ଅମୃତରେ ବିଷ ନାହିଁ/ ନାହିଁ ନାହିଁ ଶବ୍ଦରେ ତାହାର ।''

ଅମୃତମୟ ଏ ଶବ୍ଦର ସତ୍ତା ଉପଲବ୍ଧି ନିଜସ୍ୱ ହୃଦୟର ଶକ୍ତି ଓ ସାମର୍ଥ୍ୟ ଉପରେ ହିଁ ନିର୍ଭରଶୀଳ । ପକ୍ଷେ ବଢୁଥିବା ଓ ପକ୍ଷେ ଛିଡୁଥିବା ଏ ଜୀବନରେ ପ୍ରତି ବିକଳ୍ପ ମୁହୂର୍ତ୍ତରେ ଅନୁଭୂତ ହୁଏ ସ୍ମୃତିର ଯନ୍ତ୍ରଣା ଓ ସ୍ଥିତିର ଯାତନା । ତା' ଭିତରେ ସ୍ୱପ୍ନ କିନ୍ତୁ ଅବଶିଷ୍ଟ ଥାଏ । ଆପାତତଃ ଶୂନ୍ୟ ତଥା ନିଃସ୍ୱ ମନେ ହେଉଥିବା ଜୀବନ ପରିଧିରେ ସାଇତା ହୋଇ ରହିଥାଏ ନାୟକର ପ୍ରଣୟ-ଲିପି । ସ୍ୱପ୍ନ ବିନିମୟରେ ହିଁ ପଢ଼ିହୁଏ ପ୍ରେମର ସେ ଅଭିଲିପି । ପ୍ରଣୟ ଚେତନାର ସର୍ବୋତ୍ତମ ଲିପିଟିର ସୂଚନା ଦେବାବେଳେ ଚତୁର୍ଦ୍ଦଶ କ୍ରମିକ ପର୍ଯ୍ୟାୟର କବିତାଟି ଉତ୍ସର୍ଗୀକୃତ ହୋଇଛି 'ପରିମଳା'ର କବି ନରସିଂହ ସେଣଙ୍କୁ । ଲୁହର ସମୁଦ୍ରରେ ବିରହର ବାଡ଼ବାଗ୍ନି ପାର ହୋଇ ଅନ୍ଧକାରର ଓଢ଼ଣା ଛୁଇଁଲା ବେଳକୁ ସେଠି କିନ୍ତୁ ନାୟିକାର ଶରୀର ଅଦୃଶ୍ୟ ହୋଇଯାଇଥାଏ । ଶବ୍ଦ ଭଳି ଅନୁଭୂତିମୟ ସତ୍ତା ସେଠି ପକ୍ଷେ ବଢୁଥାଏ ଓ ପକ୍ଷେ ଛିଡୁଥାଏ । 'ଅଧେ ବିଶ୍ୱାସ ଥାଏ ଓ ଅଧେକ ଅବିଶ୍ୱାସ' ବିଶ୍ୱାସ— ଅବିଶ୍ୱାସର ଛାଇ ଆଲୁଅ ଭିତରେ ବଳବତ୍ତର ରହିଥାଏ ଜୀବନ ଧାରା । ବିବିଧ ଦୃଶ୍ୟାବଳୀ ଭିତରେ ବ୍ୟକ୍ତି- ଅବ୍ୟକ୍ତ- ସମସ୍ତ ସତ୍ୟ ଓ ସ୍ୱପ୍ନକୁ ସାଥିକରି ଗତିଶୀଳଥାଏ ସମୟର ସ୍ରୋତ । ପାର୍ଥିବ ସତ୍ତା ଦେହର ବନ୍ଧନ ଭିତରେ ସୃଷ୍ଟିର ସତ୍ତାକୁ ଉପଲବ୍ଧି କରିବା ସହ ସ୍ୱପ୍ନର ଅମୃତମୟ ଅଭୀପ୍‌ସା ଭିତରେ ପ୍ରେରଣା ଲାଭ କରିଥାଏ ଜୀବନର । ଏହି ପ୍ରେରଣା ତଥା ସ୍ୱପ୍ନ ଓ ସମ୍ଭାବନା ମଧ୍ୟରେ ହୁଏ ଶବ୍ଦସତ୍ତାର ଊର୍ଦ୍ଧ୍ୱରେ ଏକ ଅଲୌକିକ ଅର୍ଥାନୁସନ୍ଧାନ ଆକୁଳ ହୁଏ ଚେତନା—

'ସତେ କି ସେ ଦେଖାଦେବ/ ପୂର୍ବର ଠାଣି ମାଣିରେ/ ବିନ୍ଦୁ ବିନ୍ଦୁ ଢ଼ଳଢ଼ଳ/ ମଣ୍ଡି ହୋଇ ମୁକ୍ତା ମଣିରେ ।'

ଏହିଭଳି ଏକ ଅଲୌକିକତା ପୂର୍ଣ୍ଣ ପରିବେଶ ମଧ୍ୟରେ ଶବ୍ଦାର୍ଥର ଉଦ୍ଧାର ପାଇଁ ହିଁ କବିର ଅବତାର ଗ୍ରହଣ 'ଧୋଇଯାଇଥିବା ଅକ୍ଷରକୁ/ ମୀନଭଳି ଚୁମୁଥିବି — ସେ ଶ୍ରୁତିକୁ, ସେ ଧ୍ୱନିକୁ ଶଙ୍ଖନାଭି ଚିରି ମୋର/ ବାରବାର କରିବି ଉଦ୍ଧାର ।'

(ପୃ. ୪୪)

ଶବ୍ଦ ଜରିଆରେ ସୃଷ୍ଟିକୁ ଉପଲବ୍ଧି କରିବାର ଅଭିଳାଷ ଏହା ଦ୍ୱାରା ଚରିତାର୍ଥ ହେବ । 'ଶବ୍ଦ ହିଁ ଫାଟକଟିଏ । ବନ୍ଦ ଥିବା ଓଠ' ଓଠର ଇଲାକାରେ ଶବ୍ଦର ଯେଉଁ ପ୍ରକାଶ ତାହାତ ଚିହ୍ନାଇ ଦିଏ ବ୍ୟକ୍ତିତ୍ୱର ଗଭୀରତା ଓ ଅସ୍ତିତ୍ୱ । ହୁଏତ ସକଳ ଶବ୍ଦ ଓ ତଦ୍‌ଜନିତ ଅର୍ଥ ସବୁ ବୋଧଗମ୍ୟ ହୁଏ ନାହିଁ । ବୁଝି ନ ହେବାର ସ୍ୱରରେ ଗୋପନୀୟ ରହେ ଯେଉଁ ଅର୍ଥମୟତା ସେତିକି ପାଇଁ ସମୟେ ସମୟେ ଆକୁଳ ହୁଏ ପ୍ରାଣ ତାର । ଦୃଶ୍ୟର ସେ ଅଲୌକିକତା ଭିତରୁ ଯେତିକି ବୁଝେ ଦର୍ଶକ, ସ୍ରଷ୍ଟା, କଳାକାର, ସେତିକିରୁ ରୂପ ଦିଏ ସେ—

'ଇଚ୍ଛାର ଅନୁରୂପ ସେ ଆମର ଗୋଚର/ ଯେତିକି ଦର୍ଶକ ବୁଝେ/ ସେତିକି ହୁଏ ।' (ପୃ.-୪୮) ଶବ୍ଦ-ଅଳଙ୍କାରର ସ୍ୱର୍ଣ୍ଣ-ସୀତା ଅବୋଧ ରହିଯାଏ ସାଧାରଣ ଦ୍ରଷ୍ଟାର ଚିତ୍ତ ଲୋକରେ । କବିର ଲେଖନୀ ମଧ୍ୟ । ସମୟେ ସମୟେ ସାମର୍ଥ୍ୟ ରୂପାୟନ ପାଇ । କାଳାତୀତ ଲାଭ କରିଥାଏ । ଅର୍ଥରେ ନଥିବ, ସତୀ ସତ୍ୟରେ ନଥିବ, ମିଥ୍ୟାରେ ନଥିବ ସତୀ । ଜନ୍ମ ଅବା ମୃତ୍ୟୁରେ ନଥିବ, ଶବ୍ଦ ସତୀ । ଅମୃତ, ବିଷ, କାଳ କାହାର କବଳିତ ହେବାର ଆବଶ୍ୟକତା ହିଁ ନଥିବ । ମାତ୍ର କାଳ କାଳ ବାଗର୍ଥ ଯୁଗଳ ଚିରନ୍ତନ ଅସ୍ତିତ୍ୱ ଲାଭ କରିଥିବ ଏକ ଲୋକୋତ୍ତର ସ୍ତରରେ । ସ୍ରଷ୍ଟା, କବି, କଳାକାର— ଦ୍ୱିତୀୟ ଈଶ୍ୱର ଭାବରେ ଏହି ଲୋକୋତ୍ତର ଭାବସତ୍ତାକୁ ଲୋକାୟିତ ସ୍ତରରେ ପ୍ରକାଶ କରୁଥିବ ଯାହା । ଶବ୍ଦର ଊର୍ଦ୍ଧ୍ୱରେ ଥିବ ଧ୍ୱନି । ନାଦରେ ସଞ୍ଚିତ ରହିଥବ ଚିରକାଳର ସ୍ମୃତି-ଉସ୍ତ । ଶବ୍ଦର ଅର୍ଥାନ୍ୱେଷଣରୁ ମିଳୁଥିବ ନୂଆ ନୂଆ ଦର୍ଶନ ।

'ହଜିଥିବା ଅର୍ଥ ଖୋଜି ସେ ଶବ୍ଦର/ ହେପାଜତ କରୁଥିବା ନାନା ଅଲୌକିକ ଚାକଚକ୍ୟରେ/ ଶିଳାକୁ ଶାଳଗ୍ରାମ କରି/ ମୁଣ୍ଡେଇ ଚାଲିଥିବା ତୀର୍ଥଙ୍କର/ 'ଅନୁସରି x x ।' (ପୃ.-୫୮)

ଶବ୍ଦ ଏକା ଏକା ତେଣୁ ରହେ ନାହିଁ ନିଜ ପରିସରରେ । ଧର୍ମ, ସମାଜ, ଆଧ୍ୟାତ୍ମିକତା ଓ ରହସ୍ୟମୟତାକୁ କେନ୍ଦ୍ର କରି ଏକତ୍ର ହୋଇଥାନ୍ତି ଅଜସ୍ର ଶବ୍ଦ ପୁଞ୍ଜ । ଶବ୍ଦ ଏହି ଏକତ୍ର ହେବାର ପ୍ରକ୍ରିୟାରେ ନାନା ପୁରାଣ, ଦର୍ଶନ ଓ ଇତିହାସକୁ ଆୟତ୍ତ କରିସାରି ଥାଏ । ସ୍ମୃତି ସଞ୍ଚିତ ରହିଥାଏ ଯେଉଁ ନାଦମୟ ଜଗତରେ ଧୀରେ ଧୀରେ ତାହା ଅବତରଣ କରେ ଶବ୍ଦମୟ ଜଗତକୁ । ଶବ୍ଦ ଓ ଅର୍ଥ ଯୁଗପତ୍ ସଂଶ୍ଲିଷ୍ଟ ରହିଥାନ୍ତି ପାର୍ବତୀ ପରମେଶ୍ୱରଙ୍କ ଭଳି । ଧର୍ମ, ଇତିହାସ ଓ ସଭ୍ୟତାରେ ବିବିଧ ବିରୋଧାଭାସର ଊର୍ଦ୍ଧ୍ୱରେ ସେ ଶବ୍ଦ ସୃଷ୍ଟିସତ୍ତାକୁ ଜାରି ରଖିଥାଏ । ଶବ୍ଦର ସେ ଜନ୍ମ ମୁହୂର୍ତ୍ତ ହିଁ ସୃଷ୍ଟିର ପ୍ରାରମ୍ଭ ଲଗ୍ନ । ଅର୍ଦ୍ଧମାତ୍ରା କରୁଣାମୟୀନାରୀ ପ୍ରଜ୍ଞାର ପୁରୁଷାକାର ସହ ମିଳିତ ହୋଇ ସୃଷ୍ଟିର ସାକାରତ୍ୱ ପାଇଁ ଯେତେବେଳେ ଉଦ୍ୟମ କଲେ ସେତେବେଳେ ହିଁ ଶବ୍ଦର ଜନ୍ମ, ଭାରତୀୟ ସୃଷ୍ଟି ତତ୍ତ୍ୱର ଏହା ହିଁ ମୂଳାଧାର । ଭାବାଭାବମୟ ଲଗ୍ନର ଉପସ୍ଥିତି କାଳରେ ହିଁ ଏ ସୃଷ୍ଟିସତ୍ତା ସମ୍ଭବ ହୁଏ ।

'ଶବ୍ଦ ଏକାଏକା ଏକତ୍ର'— ଏକ ଦାର୍ଶନିକଚେତନା ସମ୍ୱଳିତ ଗ୍ରନ୍ଥ । ଇତିହାସ; ଧର୍ମ ବିଜ୍ଞାନର ମିଳନରେ ଏହି ଦାର୍ଶନିକତା କବିଙ୍କର କାବ୍ୟ ବକ୍ତବ୍ୟକୁ ଏଠାରେ ଅଧିକ ଜଟିଳ କରି ପକାଇଛି ସତ, ମାତ୍ର କାବ୍ୟିକତା କ୍ଷୁର୍ଣ୍ଣ କରିନାହିଁ । ବହୁ ପଂକ୍ତିରେ ଗୀତି କବିତାର ସ୍ୱଚ୍ଛତା ଅନାକ୍ରାନ୍ତ ରହିଛି । ''ମିଳୁ ବା ନ ମିଳୁ ସିଏ । ଯିଏ ଯାହାକୁ ପ୍ରାଣଠାରୁ ବଳି ଲୋଡ଼ୁନଥାଏ । ସେ ତା'କୁ ଅପେକ୍ଷା କରେ । ସେ ନିଜର ସୁଖଠାରୁ ତା' ହଜିବା ବେଦନାକୁ ବେଶି ଭଲପାଏ' (-୩୭) ଭଳି ପଂକ୍ତି ଗୁଡ଼ିକ ଏଠାରେ ଦୃଷ୍ଟାନ୍ତ ସ୍ୱରୂପ ଗ୍ରହଣୀୟ । କେତେକ

ସ୍ଥାନରେ ବାସ୍ତବ ଧର୍ମୀ ଚିତ୍ରକଳ୍ପର ସଂଯୋଜନା ମଧ୍ୟ କରାଯାଏ । ଯେ ଭଳି... 'ବେକାର ଶବ୍ଦ ସବୁ । ଶ୍ରମିକମାନଙ୍କ ଭଳି ଥକା ମାରି ଶୋଇଛନ୍ତି । ପାର୍କର ଶୁଖିଲା ଘାସରେ । ଅବା ଇତସ୍ତତଃ ପଥରବେଢ଼ାରେ ।' (ପୃ.-୫୯)

ବସ୍ତୁତଃ ଚଉଷଠି ପୃଷ୍ଠା ସମ୍ବଳିତ ଏହି କାବ୍ୟ ଗ୍ରନ୍ଥରେ କବି ହରିହର ମିଶ୍ରଙ୍କ କବି-ଶକ୍ତିର ଏକ ସାର୍ଥକ ଉତ୍ତରଣ ପରିଲକ୍ଷିତ ହୁଏ । ସୃଷ୍ଟିର ଏକାକୀତ୍ୱବୋଧ କ୍ରମଶଃ କି ଭଳି ସାର୍ବଜନୀନ ଜୀବନ-ସତ୍ୟରେ ପରିଣତ ହୁଏ ପୁଣି ସାର୍ବଜନୀନ ଜୀବନ- ସତ୍ୟ ସ୍ୱପ୍ନମୟ ଭାବ ଲୋକ ସହ ବିଜଡ଼ିତ ହୋଇ ସୌନ୍ଦର୍ଯ୍ୟ ଦୀପ୍ତ କାବ୍ୟ ସୃଷ୍ଟି କରେ... 'ଶବ୍ଦ ଏକା ଏକା ଏକତ୍ର' ତାହାର ଏକ କାବ୍ୟିକ ରସ ରୂପାୟନ ।

ଶଗଡ଼ିଆସାହି, କଟକ-୧

ଗୋ କର୍ଣ୍ଣିକା (୧୯୯୮)ରେ ପ୍ରକାଶିତ



# ଶବ୍ଦ ଏକା ଏକା ଏକତ୍ର

*ମନମୋହନ ଦାଶ*

କବି ହରିହର ମିଶ୍ରଙ୍କର ୧୯୯୫ ମସିହାରେ ଲାର୍କ ବୁକ୍ସ ଦ୍ୱାରା ପ୍ରକାଶିତ କବିତା ସଙ୍କଳନ (ଏକ ଦୀର୍ଘ କବିତା) 'ଶବ୍ଦ ଏକା ଏକା ଏକତ୍ର'ର ନାମ ଶୁଣିବା ମାତ୍ରେ ମନେ ପଡ଼ନ୍ତି ଏବର କମ୍ବି (Aber Cormbie), ଯିଏ କହିଥିଲେ ଶବ୍ଦଟିଏ ଏକକ ଭାବେ ଭୀଷଣ ଅସହାୟ ମାତ୍ର ବାକ୍ୟଟିଏ ଭିତରେ ସେମାନେ ପରସ୍ପର ହାତ ଛନ୍ଦା ଛନ୍ଦି ହୋଇଥିବା ବେଳେ ଶକ୍ତିମୟ ଓ ଅର୍ଥମୟ ହୋଇ ଉଠେ । "There are no creatures in the world so sociable as words and until we see them taking part in the society of other words. We can not know what they are capable of affecting" ତେବେ ଏ କଥା ଆଦୌ ମିଥ୍ୟା ନୁହେଁ ଯେ ଶବ୍ଦ ଯେତେ ଅକ୍ଷମ ବା ଅସହାୟ ହେଲେ ମଧ୍ୟ ବିନା ଶବ୍ଦରେ କବିତାର ସ୍ୱରୂପ ବି କଳ୍ପନା କରାଯାଇପାରେନା । ଲକ୍ଷ୍ୟ କରିବାର କଥା ଶବ୍ଦ ପୁଣି ଅକ୍ଷରଙ୍କ ଦ୍ୱାରା ବନ୍ଦୀ । ସେଥିପାଇଁ ଶିଶୁଟିଏ କିଛି କହୁଥାଏ, ଅଥଚ ତାର ଅକ୍ଷର ସ୍ୱରୂପ ନ ଥିବାରୁ ତା' ଆମ ପାଇଁ ଅବୋଧ ରହିଯାଏ । ଗୋଟିଏ ଅକ୍ଷର ଆଉ ଗୋଟିଏ ଅକ୍ଷର ବା ଅକ୍ଷର ମାନଙ୍କର ହାତଧରି ବାନ୍ଧି ଠିଆ ହେବା ପରେ ତା' ଭିତରୁ ଅର୍ଥ ଭ୍ରମରେ ଆମେ ଶବ୍ଦଟିଏ ଖୋଜି ପାଉ । ସେଇ ଶବ୍ଦମାନେ ପୁଣି ବ୍ୟାକରଣର ଅନୁଶାସନ ମାନି ଗୋଟିଏ ଧାଡ଼ିରେ ଠିଆ ହେଲେ ଆମେ କିଛି ବୁଝୁ, କିଛି ଦେଖୁ । ଅଥଚ ଆମ ଠାରୁ ଅଧିକ କିଛି କୋଳାହଳର ଅକ୍ଷର ବିହୀନ ଶବ୍ଦରେ କବିଟିଏ ସଦାବେଳେ ଉବୁଟୁବୁ ହେଉଥାଏ । ତାକୁ ପ୍ରକାଶ କରିବାକୁ ଶବ୍ଦ ପାଉ ନଥାଏ ଫଳରେ ସେ ଭୀଷଣ ଭାବେ ଏକୁଟିଆ ହୋଇଯାଏ । ତାର ସଂସାର ଶବ୍ଦମାନଙ୍କୁ ନେଇ ଏବଂ ଯେଉଁ ଶବ୍ଦମାନେ ତାର ଅନୁଭବକୁ ଗର୍ଭରେ ଧାରଣ କରି ଜନ୍ମ ନେଇପାରୁଥିବେ, ତାହା ହିଁ ତାର ଶବ୍ଦ ପ୍ରତିମା ଓ ବାକ୍ ପ୍ରତିମା । ଯାହା ଦ୍ୱାରା କବି ସିଦ୍ଧତ୍ୱ ପ୍ରାପ୍ତ ହେବ ଏବଂ ତାର ଅନୁଭବର ସୂକ୍ଷ୍ମତାକୁ ସେ ଅନ୍ୟକୁ ବୁଝେଇ ପାରିବ । ଅଯଥା କବିଙ୍କର ଅନୁଭବ ବନ୍ଧ୍ୟାମେଘଟିଏ ପରି ଶୂନ୍ୟତାରେ ସେମତି ଘୂରି ବୁଲୁଥିବ ସିନା ବର୍ଷା ହେବ ନାହିଁ । ଏହି ସାର୍ବଜନୀନ ଅସହାୟତା ଓ ଅକ୍ଷମତାର ଅନୁଭବ ହିଁ ଶବ୍ଦ ଏକା ଏକାର ପ୍ରାଥମିକ ଅନୁଭବ, ଯାହା କବିଙ୍କୁ ନିଜ ଅନୁଭବକୁ ରୂପ ଦେବା ବେଳେ ଶବ୍ଦର ଅନୁପସ୍ଥିତି ଜନିତ ଯନ୍ତ୍ରଣାରେ ଅଭିଜ୍ଞ କରିଚି ।

ଏବଂ ସେଇ ଅଭିଜ୍ଞତା ଜନିତ ନିର୍ଜନତାକୁ ଶବ୍ଦମାନଙ୍କ ଜରିଆରେ ପ୍ରକାଶ କରିବା ପାଇଁ କବି ପ୍ରଥମେ ଭାଗବତରୁ ଯେଉଁ ପଂକ୍ତିଟି ଉଦ୍ଧାର କରିଛନ୍ତି, ତା ଏଠାରେ ଉଦ୍ଧାର କରିବାକୁ ପ୍ରସଙ୍ଗୋଚିତ ମଣୁଚି । 'ପ୍ରକୃତି ହୃଦୟ ଯାହାର/ ମନ ଯାହାର ନିଶାକର/ ପକ୍ଷୀଏ ଯାର ବ୍ୟାକରଣ । ବୁଦ୍ଧି ବିଷୟ ମନୁଗଣ ।' ଏହି ପଂକ୍ତିଟିକୁ କବିତା ପାଇଁ ଗ୍ରହଣ କରିବା ପଛରେ ଦୁଇଟି କାରଣ ରହିଚି । ପ୍ରଥମଟି ହେଲା କାବ୍ୟ ଜଗତର ବିଶାଳତାକୁ ପାଠକକୁ ପରିଚୟ କରାଇଦେବା ଏବଂ ଅନ୍ୟ ଉଦ୍ଦେଶ୍ୟଟି ହେଲା ଶବ୍ଦର ଭୂମିକାକୁ କବିତା ପାଇଁ ବ୍ୟାଖ୍ୟା କରିବା । କବି ଚେତନାର ପ୍ରତ୍ୟେକ ଅନୁଭବ ଏକ ସୂକ୍ଷ୍ମ ବାସ୍ତବତାର ଅନୁଭବ । ଯେଉଁ ଅନୁଭବକୁ ସ୍ଥୂଳ ଶବ୍ଦ ଜରିଆରେ ବ୍ୟକ୍ତ କରିବାର ଯୋଗ୍ୟତା ମଣିଷ ପକ୍ଷରେ ପ୍ରାୟ ଅସମ୍ଭବ । କାରଣ ଏହା ଏକ ପ୍ରକାର ତରଙ୍ଗ ଧର୍ମର ବ୍ୟାପାର । ଆମେ ପ୍ରତ୍ୟେକ ବସ୍ତୁକୁ ଏକକ ଭାବରେ ଦେଖୁ ଏବଂ ଯେଉଁ ଅବସ୍ଥାରେ ଦେଖୁ ଆପାତତଃ ଆମେ ତାକୁ ହିଁ ସତ୍ୟ ବୋଲି ମାନି ନେଉ । ମାତ୍ର ବୈଜ୍ଞାନିକ ମାନେ ଯେଉଁ ସୂକ୍ଷ୍ମ ଜଗତର ସୂଚନା ଦେଇଛନ୍ତି ସେ ସୂକ୍ଷ୍ମ ଜଗତଟି ଅଦ୍ଭୁତ ଭାବରେ କ୍ୱାଣ୍ଟମ୍ ଜଗତର ସମାହାର ବୋଲି ବ୍ୟାଖ୍ୟା କରନ୍ତି । ଆମେ ପ୍ରାୟତଃ ସେ ସମ୍ପର୍କରେ ଅଜ୍ଞ । ତେଣୁ ଆମେ ଆଲୋକକୁ ଗୋଟିଏ ମୌଳିକ ବସ୍ତୁଭାବରେ ଗ୍ରହଣ କରିନେଇ ସନ୍ତୁଷ୍ଟ ହୋଇଯାଉ । କିନ୍ତୁ ଆଲୋକାତ୍ତର ଆଲୋକର ଫୋଟନ ଯାହା ଗୋଟିଏ କ୍ୱାଣ୍ଟମ୍ ବା ସୂକ୍ଷ୍ମଜଗତର କଥା ତା' ଆମ ଆଖିରେ ପଡ଼େ ନାହିଁ । ଆମ ସଚେତନ ମନ ପାଇଁ ସ୍ଥିର ଅବସ୍ଥା ହିଁ ବାସ୍ତବ । କାରଣ ସୂକ୍ଷ୍ମ ଜଗତର ଧର୍ମ ହେଲା ଏହା ଅସ୍ଥିର ଏବଂ ସଦାବେଳେ ନୂଆ ନୂଆ କିଛି କରିବାର ଚେଷ୍ଟାରେ କ୍ରିୟାଶୀଳ । ଯାହାକୁ ଆମେ ସଚେତନ ଭାବେ ଗ୍ରହଣ କରିବା ପାଇଁ ସକ୍ଷମ ହୋଇପାରୁନା ଏବଂ ସେହି ଜଗତଟିକୁ ବ୍ୟାଖ୍ୟା କରିବାକୁ ଗଲାବେଳେ ସଚେତନ ଭାବରେ ଆମ ପାଖରେ କୌଣସି ଶବ୍ଦ ନାହିଁ, ଏପରିକି ବୈଜ୍ଞାନିକ ମାନଙ୍କ ପାଖରେ ମଧ୍ୟ କିଛି ଗାଣିତିକ ସୂତ୍ର ନାହିଁ । ତା ସତ୍ତ୍ୱେ ପଦାର୍ଥ ବିଜ୍ଞାନୀମାନେ ହୁଅନ୍ତୁ ବା ଦାର୍ଶନିକମାନେ, ସେ ଜଗତକୁ ଅଧିକ ବାସ୍ତବ ଭାବରେ ସ୍ୱୀକାର କରନ୍ତି । ସେଇ ଜଗତଟିର ଅନୁଭବରେ ପ୍ରାୟ ଅଚେତନ ହେଇ ଉଠୁଥିବା ଯେଉଁ ପଂକ୍ତିଟି ଭାଗବତରୁ ଉଦ୍ଧାର କରିଛନ୍ତି ତାର ବାଖ୍ୟା କଲେ ଯେଉଁଠି ପହଁଚିବାକୁ ହେବ ତାର ସ୍ୱରୂପଟି ହେଉଛି ଏମିତି— ସେ ସୂକ୍ଷ୍ମ ଜଗତଟିର ହୃଦୟ ପ୍ରକୃତି ଭଳି ଉଦାର ଓ ବିଶାଳ, ମନୋମୟ ଅବସ୍ଥା ଚନ୍ଦ୍ରପରି ସ୍ନିଗ୍ଧ, ପକ୍ଷୀପରି ବିସ୍ତୃତ ହୋଇ ତାର ଚେତନା ଏବଂ ମନୁଗଣ (ପୁରାଣ ମତରେ ଚଉଦ ଜଣ ମନୁ) ମାନଙ୍କ ପରି ପ୍ରସଙ୍ଗ ହେଉଛି ଚେତନାର ସୂକ୍ଷ୍ମାତି-ସୂକ୍ଷ୍ମ ଅବସ୍ଥା ।

ତେବେ ସେ ମହାକବି ଈଶ୍ୱର ହୋଇଥାନ୍ତୁ ବା ନଥାନ୍ତୁ, ପ୍ରତ୍ୟେକ କବି ଯେ ଏହି ସତ୍ତାର ଏ ସୂକ୍ଷ୍ମ ରୂପ ଏକଥାକୁ ଅସ୍ୱୀକାର କରି ହୁଏ ନାହିଁ । ସେଥିପାଇଁ କବି ଈଶ୍ୱରଙ୍କୁ ସୃଷ୍ଟି କରିସାରିବା ପରେ ନିଜକୁ ଦ୍ୱିତୀୟ ଈଶ୍ୱର ବୋଲି ଜାହିର କରେ । ଅଥଚ ତାର ସବୁଠାରୁ ବଡ଼ ଅସହାୟତା ହେଲା ଶବ୍ଦକୁ ସୂକ୍ଷ୍ମ ଅର୍ଥ ପ୍ରଦାନ କରିବା । ପକ୍ଷୀର କୁହୁ ଧ୍ୱନିରେ ଅର୍ଥଟିଏ ଆରୋପିତ କରିବାର ଯନ୍ତ୍ରଣା କେବଳ କବିକୁ ଜଣା । ହୁଏତ ଶବ୍ଦରେ ଅର୍ଥଟିଏ ଆରୋପ କରିବା ଗୋଟିଏ ଭ୍ରମ ବି

ହୋଇପାରେ କିନ୍ତୁ ସେଇ ଭ୍ରମର ପରିଧି ଭିତରେ କବିଟିଏ ଅର୍ଥପୂର୍ଣ୍ଣ ଶବ୍ଦଟିଏ ଅହରହ ଖୋଜି ଚାଲିଥାଏ । ଯଦିଓ ସେ ଏକଥା ବି ଜାଣେ କବିତାରେ ସଂଯୋଜିତ ଶବ୍ଦମାନଙ୍କ ଅର୍ଥମାନେ ହେଲେ ଅନର୍ଥକାରୀ । କାରଣ କବିତାର ମୂଳ ଆବେଦନକୁ ଅର୍ଥ ପ୍ରାୟ ନଷ୍ଟ କରିଦିଏ । କବିତାର ଧ୍ୱନି ହିଁ ତା ଭାବର ପ୍ରତିଧ୍ୱନି । ଗଦ୍ୟର ଭାଷା ହୁଏତ ସ୍ୱଚ୍ଛ କାଚପରି ନିଜକୁ ଆପାତତଃ ଲୁଚେଇ ରଖି ପାଠକକୁ ଗୋଟିଏ ନିର୍ଦ୍ଦିଷ୍ଟ ଅର୍ଥ ବା ଚିତ୍ର ଆଡ଼କୁ ଟାଣି ନିଏ କିନ୍ତୁ କବିତାର ଭାଷା ବା ଶବ୍ଦ ହିଁ ତାର ସ୍ୱପ୍ନ ସିଦ୍ଧତା । ତେଣୁ ତାକୁ ବାହ୍ୟ ମାଧ୍ୟମ ରୂପେ ଅଥବା ଅନ୍ୟ କୌଣସି ବିଷୟ ବସ୍ତୁର ସଙ୍କେତ ରୂପେ ବ୍ୟବହାର କଲେ ତାହା ଆଉ କବିତାର ଶବ୍ଦ ହୋଇ ରହେ ନାହିଁ । ବରଂ ତା ଉପରେ ଅଯଥା ଅତ୍ୟାଚାର କରାଯାଉଛି ବୋଲି ବୁଝିବାକୁ ହେବ । ସେଥିପାଇଁ ଜାଁ ପର୍ଲ ସାର୍ତ୍ରେ କହି ରଖିଛନ୍ତି 'କବିତାରେ ଯାହା କିଛି ଶୁଣିବାର କଥା ଶୁଣ, ଆଖିରେ ଦେଖିବାର କଥା ଦେଖ କିନ୍ତୁ ବୁଝିବାର ଚେଷ୍ଟା କରନାହିଁ ।' ସାର୍ତ୍ରେ ଏହି 'ବୁଝିବାର ଚେଷ୍ଟା କରନାହିଁ' କହିଲା ବେଳେ ପରୋକ୍ଷ ଭାବରେ କବିତା ଯେ କେବଳ ଅନୁଭବ ବସ୍ତୁ ଏହି ସତ୍ୟଟିକୁ ସ୍ୱୀକାର କରନ୍ତି । କବିତାରେ ସଂଯୋଜିତ ଶବ୍ଦମାନଙ୍କର ବ୍ୟାକରଣ ହେଲା ପକ୍ଷୀର ଭାଷା । ସେଇ ପକ୍ଷୀର ସ୍ୱାଧୀନତା ନେଇ କବିଟିଏ ତାର ଅନନ୍ତ ଉପଲବ୍ଧିକୁ ପ୍ରକାଶ କରିବାକୁ ଚେଷ୍ଟା କରେ । ସେଥିପାଇଁ ସଫଳ କବିତାଟିଏ ଗୋଟିଏ ଭାଷାରୁ ଆଉ ଗୋଟିଏ ଭାଷାକୁ ଅନୁବାଦ କରିହୁଏ ନାହିଁ । କାରଣ ତା ଦ୍ୱାରା ଶବ୍ଦ ତାର ମୂଳ ସୌନ୍ଦର୍ଯ୍ୟ, ସଞ୍ଚରଣ କ୍ଷମତା ଓ ମୌଳିକତାକୁ ହରାଇବସେ । କବି ହର ପ୍ରସାଦ ଦାସ ସେଥିପାଇଁ କୁହନ୍ତି ''ବାକ୍ୟ ସିଦ୍ଧ ହେଲେ କବିତା ହୁଏ, କବିତା ସିଦ୍ଧହେଲେ ମନ୍ତ୍ର ହୁଏ ।'' ଏହି ସିଦ୍ଧାନ୍ତକୁ ସ୍ୱୀକାର କରି କବି ବଂଶୀଧର ଷଡ଼ଙ୍ଗୀ ଯା ସହିତ ଆଉ ଗୋଟିଏ ବାକ୍ୟ ଯୋଡ଼ି କୁହନ୍ତି 'ମନ୍ତ୍ର ସିଦ୍ଧ ହେଲେ ଧ୍ୱନି ହୁଏ' ଏହି ଧ୍ୱନି ହିଁ କବିତାର ସର୍ବଶ୍ରେଷ୍ଠ ସଫଳତା, ଯେଉଁଠି ଶବ୍ଦମାନେ ଯେ କୌଣସି ଜଗତ, ସିଦ୍ଧାନ୍ତ ବା ବସ୍ତୁର ପ୍ରତିନିଧିତ୍ୱ କରିବାରେ ସକ୍ଷମ ହୁଅନ୍ତି । ତେଣୁ ଶବ୍ଦମାନଙ୍କର ପ୍ରାକୃତିକ ସହାବସ୍ଥାନ ଭିତରୁ ଜନ୍ମ ନେଇଥିବା ବାକ୍ୟ କବିତାରେ ପରିଣତ ହୋଇ, କବିତାର ମନ୍ତ୍ରକୁ ଉନ୍ନୀତ ହେବାପରେ ଧ୍ୱନିକୁ ରୂପାନ୍ତରିତ ହୁଏ । ଧ୍ୱନିକୁ ରୂପାନ୍ତରିତ ହୋଇଯିବାପରେ କବିତାରେ ଗୋଟିଏ ସୀମିତ ଅର୍ଥ ଖୋଜି ବସିବା ଅର୍ଥ କବିତାକୁ ଭାଙ୍ଗି ଦେବା । ତେଣୁ ଯେକୌଣସି ଭାଷାର ଯେ କୌଣସି କବିଟିଏ ଅହରହ ଚେଷ୍ଟା କରୁଥାଏ କେମିତିକା ଶବ୍ଦଟିଏ ଧାଡ଼ିଟିଏ ତା କଲମ ମୁନରୁ ପଦ୍ମ ପରି ବିକଶିତ ହୋଇଉଠନ୍ତା କି ?

ସେଥିପାଇଁ 'ଶବ୍ଦ ଏକା ଏକା ଏକତ୍ର'ର ମୁଖଶାଳା ଭାବେ ଶୋଭା ପାଉଥିବା 'ବାକ୍ ପ୍ରତିମା' କବିତାଟିରେ କବିସତ୍ତା ଅନନ୍ତ ସମୟର ଜୀବନ ପ୍ରବାହର ଅଭିଜ୍ଞତାକୁ ଶବ୍ଦ ଜରିଆରେ ପ୍ରତିମାଟିଏ କରି ଗଢ଼ି ତୋଳିବାକୁ ବ୍ୟସ୍ତଥିବା ବେଳେ ଶବ୍ଦର ଅନୁପସ୍ଥିତିରେ ଗୋଟିଏ ଶୂନ୍ୟତା ଭିତରେ ମୁଣ୍ଡପୋତି ବସିଥିବା ଧ୍ୟାନସ୍ଥ ପକ୍ଷୀଟି ପରି ନୀରବ । କାରଣ ଯାହା କହିବାର କଥା ସେ ସବୁ ଯେପରି ସେ କହିବାକୁ ଅକ୍ଷମ । ଅଥଚ ଚେତନାରେ କୋଳାହଳ, ସେ କୋଳାହଳ ପୁଣି ମହାସମୁଦ୍ରଠୁ ଭୀଷଣ । ଅଥଚ ଅନୁଭବରୁ ସେଇ ଶ୍ୱେତ କଜ୍ଜଳକୁ ପ୍ରକାଶ କରିବାକୁ ସେ

ଶବ୍ଦ ଖୋଜି ପାଉନାହିଁ । ଅଚିହ୍ନା ଶବ୍ଦଙ୍କର ପ୍ରତିମାକୁ ସେ ଅନୁଭବ କରି, ସେଇ ଅନୁଭବରେ ରୋମାଞ୍ଚିତ ହୋଇଉଠେ କିନ୍ତୁ ପରିଣତିରେ ନିଜକୁ ପ୍ରକାଶ କରି ନ ପାରିବାର ବନ୍ଧ୍ୟାତ୍ୱ । ଯେଉଁଠି ସେ ଅନୁଭବୀ ମୂକ ସାକ୍ଷୀଟିଏ ପରି ଠିଆ ହୋଇଥାଏ ଏବଂ ଦେଖୁଥାଏ 'ଏ ମାଟିର କଦର୍ଥନା ରତୁର ଯନ୍ତ୍ରଣା' ଛୁଇଁବା ମାତ୍ରେ କେ/ ଶବ୍ଦଟିଏ... ଫୁଲଟିଏ... ତାରାଟିଏ... ଡ଼େଣା ଲାଗେ, ପରଝାଡ଼ି ଉଡ଼ିଯାଏ । ଅର୍ଥ ତାର ଆଉ କେଉଁ ଭାବ ସାଙ୍ଗେ ମିଶେ । ପ୍ରସରି ପ୍ରସରି ଯାଏ ଦୂର ଦିଗନ୍ତରେ ।' ଅଥଚ ସେ ଅନୁଭବ କରୁଥିବା ଯନ୍ତ୍ରଣା ବା ଦୁଃଖ ସେମିତି ଅପ୍ରକାଶ୍ୟ ରହିଯାଏ । 'ସବୁଶୋଷ ମିଶି ମଧୁଶାଳା/ ପରିପୂର୍ଣ୍ଣ– ଛାଇଙ୍କର କୋଟି କୋଟି ହାତ ଯହିଁ ଲମ୍ବିଥାଏ, ଅମୃତ ଲାଳସା ନେଇ/ ଆଲୋକର କୁମ୍ଭ ଧରି ନାଚୁଥିବା/ ମୋହିନୀ ବା ରାହାସ ରସିକାର/ ଉଡୁଥିବା ଉତ୍ତରୀକୁ ଧରି'ର ସମ୍ଭାବନା ହୋଇ ରହିଯାଏ ଗୋଟିଏ ଅତିକାୟ ଅବଶୋଷର ଛାଇ ହୋଇ । ପ୍ରଳୟର ଅନ୍ଧାର ଭିତରୁ କବି ସତ୍ତା ତଥାପି ଶବ୍ଦ ମୋହିନୀର ଉତ୍ତରୀଟିକୁ ଧରିବାକୁ ଚେଷ୍ଟା କରୁଛି, ଅଥଚ ଛୁଇଁ ପାରୁନାହିଁ । ତେଣୁ ସେ ଅନୁଭବ କରୁଥିବା ଜଗତଟିର ରହସ୍ୟ ପ୍ରକାଶ କରିବାର ଯେଉଁ ଚେଷ୍ଟା କରିଥିଲା ତା ଆଉ ଗୋଟିଏ ଅର୍ଥର ସମ୍ଭାବନା ସୃଷ୍ଟି କଲା ସିନା, ତାର ଅନୁଭବୀ ଚେତନାଟି ସେମିତି ଗୋପନୀୟ ରହିଗଲା । (ଅର୍ଥ ତାର ଆଉ କେଉଁ ଭାବ ସଙ୍ଗେ-ମିଶେ) ହୁଏତ ସେ କହିଥିଲା ପବନର ରଙ୍ଗ ଏମିତି ବୋଲି ଅଥଚ ଅର୍ଥର ଭ୍ରମରେ ତାହା ଆଲୋକର ରଙ୍ଗକୁ ଆବିଷ୍କାର କଲା କବି ସତ୍ତା । ତେଣୁ ଏକ ଅଖଣ୍ଡ ଅସହାୟତାରେ ସେଇ ବାକ୍‌ଦେବୀଙ୍କୁ ପ୍ରାର୍ଥନା କରେ 'ପଦାଘାତ କର ଅବା ପ୍ରୀତିରେ ହୁଅ ସଙ୍କୁଚିତ/ ଦେବୀ ଶାଂକବରୀ/ କି ଜାଣନ୍ତି ସୃଜନରେ କ୍ଳାନ୍ତ/ ସବୁ କବି ଭୋଳାନାଥ ?' (ବାକ୍ ପ୍ରତିମା) କବି ହିଁ ଶବ୍ଦ ମୋହିନୀର କୁମ୍ଭରୁ ବିଷତକ ପାନ କରି ଭୋଳାନାଥ ପାଲଟି ଯାଏ, ତା ଭାଗ୍ୟରେ ଅମୃତ କେବେ ପ୍ରାପ୍ତ ହୁଏ ନାହିଁ, ତେବେ କବିଙ୍କୁ ଭୋଳାନାଥ ଭାବରେ ଅଭିଷିକ୍ତ କରାଇବା କବିସତ୍ତା ଏଠି ସଚେତନ ଯେ ଗୋଟିଏ ମହାଜାଗତିକ ଶକ୍ତିର ଆଶିର୍ବାଦରେ କବିତାର ଶୁଦ୍ଧ ଉଚ୍ଚାରଣ ସମ୍ଭବ ବୋଲି । ଚେତନାର ଏହି ବିଶୁଦ୍ଧ ଉଦାରତାକୁ ଗ୍ରହଣ କରିନେଇ ଦିନେ କବି ସିଦ୍ଧେଶ୍ୱର ନିଜକୁ ସାରଳା ଦାସ ନାମରେ ନାମିତ କରିଥିଲେ ଓ ଜଗନ୍ନାଥ ଦାସ ନିଜକୁ ବାଳୁତ ବିପ୍ର ବୋଲି ସମ୍ବୋଧନ କରିଥିଲେ ।

ସେହିଭଳି ଏକ ଅନୁଭବର ବର୍ଗ ବନ୍ଧନୀ ଭିତରେ ପ୍ରାୟତଃ ଅସହାୟ ଅବସ୍ଥାରେ 'ଶବ୍ଦ ଏକା ଏକା ଏକତ୍ର' କାବ୍ୟ ନାୟକ ଦଣ୍ଡାୟମାନ । ଅନୁଭବ ତୀବ୍ର ଅଥଚ ତାକୁ ପ୍ରକାଶ କରି ନପାରିବାରେ ସେ ଯନ୍ତ୍ରଣା ଜର୍ଜରିତ । ଯେଉଁ ଦୃଶ୍ୟ ଗୁଡ଼ିକ ସହିତ କାବ୍ୟ ନାୟକର ଗୋଟିଏ ସ୍ଥୂଳ ସମ୍ପର୍କ ଗଢ଼ି ଉଠିଛି, ତାର ସ୍ଥୂଳତାକୁ ଅନୁଭବ କଲାପରେ ଉଦାହରଣ କରୁଚି 'ନଥିବା ଶରୀର ପରି/ ଏକା ଏକା ଦିଶୁଥିବା ବାଳୁତ ପିଲାଏ' । ସେ ଦୃଶ୍ୟଟିର ସୂକ୍ଷ୍ମତା ପୁଣି ଏତେ ସୂକ୍ଷ୍ମ ଯେ ସେଠି ପୂର୍ଣ୍ଣଚ୍ଛେଦଟିଏ କାବା ହୋଇ ତାକୁ ଦେଖୁଛି କେବଳ । ଏକଥା ସେ ବୁଝିପାରୁଛି ଯେ ଖଣ୍ଡାଧାର ପରି ସେ ଆଲୋକର ଝଡ଼ଟିଏ । କିନ୍ତୁ ସେ ଝଡ଼ର ସ୍ୱରୂପ କ'ଣ ? ତା ହୋଇପାରେ

ବାହୁଡ଼ାଯାତ୍ରାର ଗୋଟିଏ ସମ୍ଭବନାମୟ ଦିଗନ୍ତ ଯେମିତି ସେ ଦିନେ ସେଇ ରାସ୍ତାରେ ଆସିଥିଲା ଏ ପୃଥିବୀକୁ ଏବଂ ଅନେକ କିଛି ପାଇଥିବାର ଗୋଟିଏ ସମୃଦ୍ଧ ଅହଂକାରରେ ସେ ସନ୍ତୁଷ୍ଟ ବି ହୋଇଥିଲା । ଅଥଚ ଯାହା ପାଇଥିଲା ତାହା ଗୋଟିଏ କ୍ରିୟାଶୀଳ ପ୍ରକ୍ରିୟାର ଅଂଶଟିଏ ମାତ୍ର । ତେଣୁ ତାର ନଶ୍ୱରତା ବା ଅଳୀକତାରେ ସେ ବିଚଳିତ । ବିଚଳିତ ଏଇଥିପାଇଁ ଯେ ଆଜି ପର୍ଯ୍ୟନ୍ତ ସେ ବଞ୍ଚୁଥିବା ଜୀବନଟିକୁ ଯେମିତି ବଞ୍ଚି ଆସିଛି, ତାକୁ ଜୀବନ ବୋଲି ନାଁ ଟିଏ ଦେଇପାରୁନି । ଅଥଚ ଏ ଅନୁଭବର ସୂକ୍ଷ୍ମତାକୁ ଆଉ କାହାକୁ ବୁଝାଇଦେବା ପାଇଁ ତା ପାଖରେ ଉପସ୍ଥିତ ଶବ୍ଦମାନେ ଯଥେଷ୍ଟ ନୁହଁନ୍ତି । ସେ ଅସହାୟତାକୁ ମଧ୍ୟ ସ୍ୱୀକାର କରିନେବାରେ କବିସତ୍ତାର କାର୍ପଣ୍ୟ ନାହିଁ 'ଯାହାଥିଲା ଲେଖିବାକୁ/ ମୁଁ ତାକୁ ଲେଖି ପାରୁନାହିଁ/ ଯାହାଥିଲା କହିବାକୁ/ ମୁଁ ତାକୁ କହିପାରୁନାହିଁ ।' (ଏକ)

ଏହି କହି ପାରିବା ଓ ନ ପାରିବାର ଗୋଟିଏ ଢ଼ଳଢ଼ଳ ସ୍ଥିତିରେ କବିସତ୍ତା ତଥାପି ତାର ଅନୁଭବର ଦିଗନ୍ତକୁ ବାଖ୍ୟା କରିବା ପାଇଁ ଚେଷ୍ଟା କରିଛି । ସେଥିପାଇଁ ସେ ଇତିହାସ ଓ ଅତୀତ ମନସ୍କ ହୋଇଉଠିଛି । କାଳେ ଅତୀତର ସୀମାରେଖା ଉହାଡ଼ରୁ ତାର ଅନୁଭବ ସମ୍ପର୍କିତ ଶବ୍ଦଟିଏ ତାକୁ ମିଳିଯିବ । ଗହଳି ଭିତରେ ହଜି ଯାଇଥିବା ଶିଶୁଟିକୁ ଅନେକ ଦିନ ପରେ ଫେରି ପାଇବା ପରି ସେ ତାର ବାଞ୍ଛିତ ଅର୍ଥମୟ ଶବ୍ଦଟିକୁ ଖୋଜି ପାଇଯିବ । ଇତିହାସର ରଙ୍ଗମଞ୍ଚରେ କବିସତ୍ତାର ପରଚୟ ହେଉଛି ବୁଦ୍ଧ, ମାର୍କସ, ଲେନିନ, ଗାନ୍ଧୀ ଭଳି ତଥା କଥିତ ମହାତ୍ମାମାନଙ୍କ ସହିତ । କିନ୍ତୁ ସେମାନଙ୍କ ପାଖରେ ସେ କିଛି ଖୋଜି ପାଇବାର ସମ୍ଭାବନା ଦେଖୁନି । ଯାହାର ଏକମାତ୍ର କାରଣ ହେଲା ଯେ ସେମାନେ ହୁଏତ ଅନ୍ୟ କିଛି କହିଥିଲେ ବା କହିବାକୁ ଚେଷ୍ଟା କରିଥିଲେ କିନ୍ତୁ ଶବ୍ଦର ପ୍ରତାରଣାରେ ସେମାନେ କ'ଣ କହିଥିଲେ ତାହା ଗୋପନୀୟ ହୋଇରହିଗଲା, ସେମାନେ ସେମାନଙ୍କ ନିଜର ପ୍ରତିପକ୍ଷ ଭାବରେ ମହାତ୍ମା ପାଲଟି ଗଲେ, ତେଣୁ ମଣିଷ ଯେ ମଣିଷ ସମ୍ପର୍କରେ ଯାହା କହିବାର କଥା ବା ମଣିଷ ତା' ଅନୁଭବର କଥା ପ୍ରକାଶ କରିପାରିବାରେ ସକ୍ଷମ ହୋଇନାହିଁ, କବିସତ୍ତା ଏ ସମ୍ପର୍କରେ ପ୍ରାୟ ନିଃସନ୍ଦେହ । ସେଥିପାଇଁ ପ୍ରତିଟି ସକାଳର ନୂଆ ରଣ କୁହୁଡ଼ି ଭିତରୁ ଉଦ୍ଧାର ପାଇବାର ଏକମାତ୍ର ପଥ ଭାବରେ ସେ ଗ୍ରହଣ କରିନେଉଚି ନୀରବତାକୁ । ଶବ୍ଦ ଅପେକ୍ଷା ତେଜହୀନ ଶବ୍ଦ ବା ନୀରବତା ଯେ ଅଧିକ ସମ୍ଭାବନାମୟ କବିସତ୍ତା ଏକଥା ପବନର ସ୍ପର୍ଶପରି ଅନୁଭବ କରିପାରୁନି । ତେଣୁ ସେ ସନାକ୍ତ କରିଥିବା ଦୃଶ୍ୟଟିର ନିଷ୍ଫଳତା ହେଲା ଏମିତି– 'ଶବ୍ଦଙ୍କର ସଙ୍କେତ ନଥିଲା କିଛି/ ଉଡ଼ିଯିବା ପାଇଁ ରକ୍ତାକ୍ତ ଡ଼ାଳରୁ/ ସ୍ୱପ୍ନର ତୃଣ ସବୁ/ନିଜ ନିଜ ଥଣ୍ଟପରେ ଥୋଇ ।' ଅତୀତ ବା ଇତିହାସର ବିଡ଼ମ୍ବନା ଭିତରେ କବିସତ୍ତା ତଥାପି ନିରୀକ୍ଷଣ କରୁଛି ମଣିଷକୁ ମଣିଷ କରିବା ପାଇଁ ଓ ତା' ସମାଜକୁ ଅର୍ଥପୂର୍ଣ୍ଣ କରିବା ପାଇଁ ଅନେକ ଶବ୍ଦଙ୍କର ଗହଳି । ଦିନେ ହୁଏତ ସେ ଶବ୍ଦର ଡଙ୍ଗାରେ ବସି ମଣିଷ ତା ଆତ୍ମା ପାଇଁ ଗୋଟିଏ ଚିହ୍ନା ସ୍ୱପ୍ନର ସରହଦକୁ ଛୁଇଁଥିଲା କିମ୍ବା ଛୁଇଁବାକୁ ଚେଷ୍ଟା କରିଥିଲା । ତେବେ ଛୁଇଁଥିଲା ଅପେକ୍ଷା 'ଛୁଇଁ ପାରିବ'ର ବିଶ୍ୱାସ ହିଁ ଅତୀତର ଗୋଟିଏ କରୁଣ ଦୀର୍ଘଶ୍ୱାସ । ଯାହା

ନିରର୍ଥକ ଅନୁଭବରେ ବର୍ତ୍ତମାନ ପାଇଁ ସତ୍ତା ଖାଲି ଶୂନ୍ୟ ହୋଇଯାଇଛି ନୁହେଁ, ସେଇ ପ୍ରତାରଣାର ଧୂମାଭ ଦିଗନ୍ତଟିକୁ ମଧ୍ୟ ସେ ଦେଖିପାରୁଛି । ବର୍ତ୍ତମାନରେ ତାର ଖେଦୋକ୍ତିଟି ହେଲା 'ସାଦର ସ୍ୱାଗତ ଯେତେ/ ସାଦର ବିଦାୟ/ଅତୀତର ସାଜ ଘରେ ଶବ୍ଦଙ୍କର/ ସୁସଜ୍ଜିତ ମୁଖା ଯେତେ/ ପୋଷାକ ଓ ପରଚୁଳା/ ଚିହ୍ନା ଅଚିହ୍ନାର ଖେଳ/ ଶବ୍ଦଙ୍କର ବେଶ ବଦଳରେ ।' (ତିନି)

କହି ରଖେ କବିସତ୍ତା ଏଠି ବର୍ତ୍ତମାନର ନିର୍ଜନତାରେ ଜୁଡୁବୁଡୁ ହୋଇ 'ଅତୀତକୁ ପ୍ରତ୍ୟାବର୍ତ୍ତନ କରିବାର ମାନସିକତାଟି ବ୍ୟକ୍ତି କୈନ୍ଦ୍ରିକ ସ୍ମୃତି ମନସ୍କ ଚେତନା ନୁହେଁ । କାରଣ ଅତୀତ କବିସତ୍ତା ପାଇଁ ସମ୍ଭାବନାମୟ ମଧ୍ୟ ନୁହେଁ । ଅତୀତ ଏଠି ବର୍ତ୍ତମାନର ପ୍ରତିନିଧିତ୍ୱ କରୁଛି, ବର୍ତ୍ତମାନକୁ ବୁଝିବା ପାଇଁ ଅତୀତକୁ ଏକ ପ୍ରକାର ପରୀକ୍ଷା କରାଯାଇଛି । ଅତୀତ ହିଁ ବର୍ତ୍ତମାନର ଛଦ୍ମବେଶରେ କବି ସମ୍ମୁଖରେ ଦଣ୍ଡାୟମାନ । ତା' ଛଡ଼ା କବିସତ୍ତା ଅତୀତ, ବର୍ତ୍ତମାନ ବା ଭବିଷ୍ୟତ ବୋଲି ସମୟକୁ ଏକକ ଖଣ୍ଡିତାଂଶରେ ଅନୁଭବ କରିନାହିଁ । ସମୟର ବିଭଙ୍ଗତା କବିସତ୍ତାର ଦିଗ୍‌ବଳୟ ନୁହେଁ ବରଂ ଅନନ୍ତ ସମୟର ଉପଲବ୍ଧି ହିଁ କବିସତ୍ତାର ଅସହାୟତା । ଏଠି କବିସତ୍ତା ଓ ସମୟ ଏକ ଏବଂ ଅଭିନ୍ନ । ସେଇ ରୂପାନ୍ତରିତ ଅନୁଭବର ବାର୍ତ୍ତା ହୁଏତ ସାଧାରଣ ପାଠକଟିଏ ପାଇଁ ଅତୀତ ବା ବର୍ତ୍ତମାନ ଭାବରେ ପ୍ରତୀତ ହୋଇପାରେ ମାତ୍ର କବିସତ୍ତା ଯେଉଁ ସୂକ୍ଷ୍ମ ବାସ୍ତବତା (ତାହା ସତ୍ୟ ହୋଇପାରେ)ର ଚିତ୍ର ବାଢୁଛନ୍ତି ତାହା ସର୍ବକାଳୀନ ଚେତନାର ଏକ ସ୍ଥିରବିନ୍ଦୁ । ହୁଏତ କବିସତ୍ତାର ଅନୁଭବରେ ଏହା ସର୍ବଶେଷ ସତ୍ୟ ହୋଇନପାରେ କିନ୍ତୁ ତାର ଅଭିଜ୍ଞତାର ବାହାରେ ଆଉ କୌଣସି ସତ୍ୟର ସମ୍ଭାବନାକୁ ମଧ୍ୟ ସେ ସ୍ୱୀକାର କରେ ନାହିଁ । ସେଇ ଅଭିଜ୍ଞତାର ଚିତ୍ର ଗୁଡ଼ିକ ହେଲା– (୧) ଗଲା ରାତିରେ ହୁଏତ/ ଆଉ ଏକ ମାଲଗାଡ଼ି ସହିତ/ ସିଗ୍‌ନାଲ ନପାଇ/ ସ୍ୱପ୍ନର ମେଲ୍‌ଟି ଧକ୍‌କା ଖାଉଥାଏ/ ପହଞ୍ଚିବା ଆଗରୁ/ ଶବ୍‌ଦଙ୍କର ଅଜଣା ଷ୍ଟେସନରେ ।' (ତିନି) ସେହି ଅଜଣା ଷ୍ଟେସନର ମାନଚିତ୍ରଟି ହେଲା ଶବ୍ଦମାନଙ୍କର ଏକ ଅଭିସାରର ମୁହୂର୍ତ୍ତ, ଯେମିତି– (୨) ପାଟପୀତାମ୍ବରୀ ପିନ୍ଧି ଶବ୍ଦଙ୍କୁ/ ଆ' ଆ' ବୋଲି ଡ଼ାକୁଥିଲେ କୋଳକୁ/ ଓ ସେମାନଙ୍କୁ ଜନ୍ମ ଦେବାକୁ ଥିବା ମା' ମାନେ/ ପାନଗୁଆ ଦୀପଧରି ଯା' ଆସ କରୁଥିଲେ । (ଚାରି) ଅଥଚ ଲକ୍ଷ୍ୟ କରିବାର କଥା ଶବ୍ଦମାନଙ୍କର ପୀତାମ୍ବରୀ ପାଟ ଭିତରେ ସ୍ଥିତି ମଧ୍ୟ ସେତେ ସମ୍ଭାବନାମୟ ନୁହେଁ । ସେଇ ଅସହାୟତାର ଗୋଟିଏ ବିରୋଧାଭାସ ମାତ୍ର । କବିସତ୍ତା ଏ କଥା ବୁଝି ପାରୁଚି । ବୁଝିପାରୁଚି ବୋଲି ଉଚ୍ଚାରଣ କରୁଛି' ଆକାଶର ରଙ୍ଗସଭା ସରିଗଲା ପରେ/ହୁ'ସ ହା'ସ କରିବାକୁ ଶକ୍ତି ନଥିବ ଶବଦ୍‌ଙ୍କର । (ଚାରି) ଶବଦଙ୍କର ଏଇ ଚିରନ୍ତନ ଅସାମର୍ଥ୍ୟ/କୁ ଚିହ୍ନି ସାରିବା ପରେ ସତ୍ତାର ଚେତନାରେ ଗୋଟିଏ ପରିବର୍ତ୍ତିତ ସୂକ୍ଷ୍ମତାର ସୂତ୍ରପାତ ଘଟୁଚି । ଗୋଟିଏ ବାହ୍ୟ ବାସ୍ତବତା ବା ଐନ୍ଦ୍ରଜାଲିକ ବାସ୍ତବତାକୁ କବିସତ୍ତା ଅସ୍ୱୀକାର କରୁଚି; କରିବାକୁ ବାଧ୍ୟ ହେଉଛି । ତେବେ ଏଠି ଐନ୍ଦ୍ରଜାଲିକ ବାସ୍ତବତାକୁ ଅସ୍ୱୀକାର କରିବା ଅର୍ଥ ନୁହେଁ ଯେ ତାହା ଏକାବେଳେକେ ଅବାନ୍ତର ବା ଅର୍ଥହୀନ । କାରଣ କବିସତ୍ତା ଏ କଥା ଭଲ ଭାବରେ ହୃଦୟଙ୍ଗମ କରିପାରୁଚି ଯେ ସେ ବଞ୍ଚୁଥିବା ପରିବେଶ, ଯାହା ଆକାଶ, ପାଣି, ପବନ

ଏବଂ କବିଟିଏ ବା ଦାର୍ଶନିକଟିଏ ଅତିକ୍ରମ କରିବାକୁ ଚେଷ୍ଟା କରିଥାଏ ମାତ୍ର । ଯାହାକୁ ଅତିକ୍ରମ କରେ ତାହା ହିଁ ସୂକ୍ଷ୍ମ ଚେତନାକୁ ସ୍ପର୍ଶ କରିବାର, ଏପରିକି ବାଖ୍ୟା କରିବାର ଏକମାତ୍ର ସିଡ଼ି । ବାହ୍ୟ ରୂପକୁ ଅତିକ୍ରମ କଲାବେଳେ ତାକୁ ଅସ୍ୱୀକାର କରିବାର ଯେଉଁ ଭ୍ରମଟି ସୃଷ୍ଟି ହୁଏ କବିସତ୍ତା ସେ ସମ୍ପର୍କରେ ସଚେତନ । କାରଣ ଯାହାକୁ ସେ ଅତିକ୍ରମ କରିବ, ତାକୁ ଭାଙ୍ଗି ଦେବା ପରେ ଯେଉଁ ସୂକ୍ଷ୍ମ ଜଗତର ବାର୍ତ୍ତା ବା ଦୃଶ୍ୟ ତା' ଚେତନାକୁ ଆଚ୍ଛନ୍ନ କରି ରଖିବ, ତାକୁ ଅନ୍ୟକୁ ବୁଝାଇପାରିବାର କ୍ଷମତା ତାର ଥିବା ଦରକାର । କବି ତେଣୁ ଗୋଟିଏ ଅସହାୟ ବୋଧରେ ତଥାପି ଯେଉଁ ସୂକ୍ଷ୍ମ ଜଗତ ବା ଚେତନାର ସମ୍ବାଦ ଦେଇଛି, ତାହା ସତ୍ୟର ଯେତିକି ନିକଟବର୍ତ୍ତୀ ଅନୁରୂପ ଭାବରେ ଆଖି ଗ୍ରହଣ କରୁଥିବା ବାସ୍ତବତାର ସେତିକି ନିକଟବର୍ତ୍ତୀ । ଯଦିଓ ସ୍ଥୂଳତା ତାର କାମ୍ୟ ନୁହେଁ, ତଥାପି ସ୍ଥୂଳତାକୁ ଗ୍ରହଣ କରି ତା' ଭିତରେ ସୂକ୍ଷ୍ମ ଅନୁଭବକୁ ଆରୋପିତ କରିଚି । ସେଇ ସୂକ୍ଷ୍ମ ଅବବୋଧ ହିଁ କବିତା ଗୁଡ଼ିକର ଶୁଦ୍ଧ ଅନୁଭବ ।

ଆଗରୁ କହି ରଖିଚି କବିତାର ଅର୍ଥ ଖୋଜିବା (ଗଳ୍ପରେ ସାରକଥାଟିଏ ଖୋଜିବା ଭଳି) ଗୋଟିଏ ଅଜ୍ଞତା । ଗୋଟିଏ ବିଶୁଦ୍ଧ କବିତାକୁ ଅର୍ଥର ମାନଦଣ୍ଡରେ ବିଚାରକଲେ, ତା ଭିତରେ ଥିବା ଆଉ ଅନେକ ଭାବଶିଳ୍ପ ନଷ୍ଟ ହୋଇଯାଏ । କିମ୍ବା ଅବୋଧ ରହିଯାଏ । ତେଣୁ ଲକ୍ଷ୍ୟ କରିବାର କଥା କବିଙ୍କର ଅନୁଭବରେ ନୀରବତା ମଧ୍ୟ କିଛିର ସମ୍ଭାବନା ସୃଷ୍ଟି କରେ । ଯାହାକୁ ଇଲିୟଟଙ୍କ ଭାଷାରେ କହିଲେ 'ନିର୍ଜନତା ହିଁ କବିର ନିୟତି ଏବଂ ଏହି ନିର୍ଜନତା ପାଇଁ ବନ୍ଧଟିଏ ତିଆରି କରିବା କବିର କାମ ।' ଏଥିରୁ ଏ କଥା ସ୍ପଷ୍ଟ ବୁଝିହୁଏ ଯେ ନିର୍ଜନତା ଏକ ସୁଦୂର ପ୍ରସାରୀ ଚେତନା ତେଣୁ ତାକୁ ପାଠକ ନିକଟରେ ପହଁଞ୍ଚାଇବାକୁ ହେଲେ କବି ତାର ନକ୍ସାଟି ଆଙ୍କି ରଖିବା ଉଚିତ । ସେ ନକ୍ସାଟିର ଯେ ଗୋଟିଏ ମାତ୍ର ଅର୍ଥ ଥିବ ଏ କଥା ଭାବିବା ଅର୍ଥ ସେ ନକ୍ସାର ସାମଗ୍ରିକ ବକ୍ତବ୍ୟକୁ ହରାଇ ବସିବା । ସେଇ ନକ୍ସାଟି ତିଆରି କରିବା ପୁଣି ସହଜ ସାଧ୍ୟ ବ୍ୟାପାର ନୁହେଁ । ସେ ନକ୍ସାଟି ଯଦି ଆତ୍ମା ହୁଏ କିମ୍ବା ସେହିପରି କିଛି ଅସୀମତା ହୁଏ, ତାହେଲେ ତାକୁ ବାଖ୍ୟା କରିବାକୁ ଯାଇ କବି ଯେଉଁ ଶବ୍ଦର ସାହାଯ୍ୟ ଗ୍ରହଣ କରେ, ଅର୍ଥର ଓଜନରେ ସେ ଶବ୍ଦମାନେ ଭାଙ୍ଗି ପଡ଼ନ୍ତି । ଇଲିୟଟ ତାକୁ Ward Crack ନାମରେ ନାମିତ କରିଛନ୍ତି । ତଥାପି ସେଇ ବିରୋଧାଭାସ ଭିତରୁ କବିତା ଜନ୍ମନିଏ ଏବଂ ସେ କବିତା ବେଳେ ବେଳେ ମନ୍ତ୍ର ସ୍ତରକୁ ଉନ୍ନୀତ ହୋଇ ଧ୍ୱନିରେ ମଧ୍ୟ ପରିଣତ ହୁଏ । ଯାହା କୁହେ ତାଠାରୁ ଅନେକ ବେଶୀ ସୂଚନା ଦିଏ । ସେ ଦୃଷ୍ଟିରୁ ଲକ୍ଷ୍ୟ କରିବାର କଥା କବିସତ୍ତା 'ଶବ୍ଦ ଏକା ଏକା'ର ପଞ୍ଚମ କବିତା ପର୍ଯ୍ୟନ୍ତ ଗୋଟିଏ ବାହ୍ୟ କୋଳାହଳ ସହ ସମ୍ପର୍କ ସ୍ଥାପନ କରି, ସେଇ କୋଳାହଳକୁ ଅତିକ୍ରମ କରି ଗୋଟିଏ ଅର୍ଥପୂର୍ଣ୍ଣ ନୀରବତା (ଶବ୍ଦର ଷ୍ଟେସନ) ଆଡ଼କୁ ଗତିଶୀଳ, ଯେଉଁଠି ସେ ନିଜକୁ 'ଶବ୍ଦ' ଟିଏ ହିସାବରେ ଆବିଷ୍କାର କରିଛି, ସେଇ ଆବିଷ୍କାରର ସ୍ୱଗତୋକ୍ତିଟି ହେଲା- 'ନିର୍ଦ୍ଦିଷ୍ଟ କହିଦିଏ/ଯେଉଁଠି ନିର୍ଦ୍ଧାରିତ ତଟ ବେଶ/ତାହା ହିଁ ତମର ଲକ୍ଷ୍ୟ/ଖୋଜୁଥିବା ଅର୍ଥ ଶବ୍ଦଟିର/ତାହା ହିଁ ବିସର୍ଜିତ ରୂପ ତମ/ନିମଜ୍ଜିତ ଅବସ୍ଥାର/ତାହା ହିଁ ବତୀଘର/ଭବ ସାଗରର/

ଏଇଠି ତମେ ଦେଖି ପାରିବ/ନିଜ ଭଳି ରୂପଟିଏ/ଯେଉଁଠି କୀର୍ତ୍ତି ହୋଇ ଜଳୁଥିବ/ତମ ଯାତ୍ରାର ଶିଳାଲେଖ ।' (ଛଅ) ଶବ୍ଦ ବ୍ରହ୍ମ ହେଉ କି ନ ହେଉ, ବ୍ରହ୍ମ ଆତ୍ମା ହେଉ କି ନ ହେଉ, ଶରୀର ଧାରଣ କରିଥିବା ଗୋଟିଏ ସତ୍ତା (ଯାହାକୁ କବି ଦ୍ୱିତୀୟ ପୁରୁଷ 'ତମେ' ବୋଲି ଉଚ୍ଚାରିତ କରୁଛନ୍ତି) କୁ ହିଁ ସେ ନିଜେ ବୋଲି ବୁଝିପାରିବା ପରେ ଅନୁଭବ କରେ ତାର ଶେଷ ଜହ୍ନରାତିଟି କେବଳ ଗୋଟିଏ ନୀରବତା । ଯେମିତି 'ଯିଏ ବିଷକୁ ହଜମ କରି/ଅମୃତର କୁମ୍ଭଧରି ଆସିଥିବା/ ଭ୍ରାନ୍ତିର ମୋହିନୀ ପାଇଁ/ନାଚୁଥିବେ ଅଭ୍ରାନ୍ତ ଲକ୍ଷ୍ୟରେ ।' ଏଇ ଯିଏ ମଧ 'ସ୍ୱ'ର ଆଉ ଏକ ସ୍ଥିତି, 'ତମେ'ର ଅନ୍ୟ ଏକ ଭ୍ରାନ୍ତି । ଯାକୁ ଚିହ୍ନିପାରିବା ହିଁ କବିସତ୍ତାର ଗୋଟିଏ ମୌଳିକ ଉପଲବ୍ଧି ଅର୍ଥାତ ସେ ନିଜ ଭଳି ରୂପଟିର ଗୋଟିଏ ଭ୍ରାନ୍ତି ନା ଶୂନ୍ୟତା ନା ଅନ୍ୟ କିଛି ?

ଅନୁଭବର ପ୍ରାଜ୍ଞତାରେ କବି ସତ୍ତା (ସୂକ୍ଷ୍ମ ସତ୍ତା) ଓ ବ୍ୟକ୍ତିସତ୍ତା (ସ୍ଥୂଳ ସତ୍ତା) ଏକ ହୋଇଯିବାପରେ ସେଇ ନିର୍ଦ୍ଦିଷ୍ଟ ମୁହୂର୍ତ୍ତଟିର ସୂକ୍ଷ୍ମବୋଧଟିକୁ କବି-ସତ୍ତା ପ୍ରକାଶ କରିବାକୁ ହୁଏତ ବ୍ୟାକୁଳିତ ହୋଇ ଉଠିଛି । ଏହି ମହାର୍ଘ ସମ୍ପର୍କର ବାସ୍ତବତାଟିକୁ ବାଖ୍ୟା କରିବାପାଇଁ ସ୍ୱପ୍ନ ସତ୍ତାର ମୃତ୍ୟୁ ନାହିଁ-କାରଣ ସେ ଆତ୍ମାରାମ । ଶବ୍ଦର ଗର୍ଭ ଭିତରୁ ଯେଉଁ ରୂପ ଗୁଡ଼ିକ ସ୍ୱତଃସ୍ଫୂର୍ତ୍ତ ଭାବରେ ଜନ୍ମନେଇଛି ଏବଂ ଚେତନାର ସ୍ଥିତିକୁ ବସ୍ତୁ ଜରିଆରେ ପ୍ରକାଶ କରିବାରେ ଯେପରି ସମର୍ଥ ହେଇଛି ତାହା ଯେତିକି ସୂକ୍ଷ୍ମ ସେତିକି ସ୍ଥୂଳ । ତେଣୁ ନିଜ ଭଳି ରୂପଟିର ସ୍ଥିତିକୁ ଅନନ୍ତ ସମୟର ସମୁଦ୍ର କୂଳରେ, ପବନର ଘୋ ଘୋ ଶବ୍ଦ ଭିତରେ କବିସତ୍ତା ଚିହ୍ନଟ କରିଚି ଏମିତି-'କୂଳରେ ତପସ୍ୟାରତ ସନ୍ନ୍ୟାସୀ/ଆତ୍ମା ସାମ୍ନି ବୁଝିଥାଏ ସବୁଭାଷା/ସବୁ କୋଳାହଳ/ ସବୁକିଛି ତର୍ଜନୀ ଓ ଅହଙ୍କାର/ ତୃଷାର୍ତ୍ତ ବାଲିରେ ବସିବା/ବ୍ୟାପ୍ତି ଓ ଗଭୀରତା ଆଶା ନେଇ/ସମାହିତ ପ୍ରାଣରେ ନିରବତାକୁ ଥାପିବା । + + ସନ୍ନ୍ୟାସୀ ପାଇଁ ଗୋଟିଏ କିଛି ସ୍ୱର୍ଗ ନାହିଁ/ଥିଲେ ଇଞ୍ଚେ ମାତ୍ର ସ୍ଥାନ ସେଠି ନାହିଁ । + + ଆଶ୍ୱାସନା, ସମ୍ଭାବନା ହିଁ/ଇଶ୍ୱରଙ୍କୁ ମଣିଷର ଭାଷା ଶିଖେଇବା । + + ସନ୍ନ୍ୟାସୀର ଶିକ୍ଷକତା/ମାନି ନେଇଛନ୍ତି ସବୁ ରକମର ଈଶ୍ୱର ।' (ଆଠ) ସନ୍ନ୍ୟାସୀର ଅସମ୍ପୂର୍ଣ୍ଣତା ପୁଣି ପୂର୍ଣ୍ଣତା । ଅସମ୍ପୂର୍ଣ୍ଣତା ଯେ ସେ କେବେ ସ୍ୱର୍ଗ ପାଏ ନାହିଁ କିନ୍ତୁ ଈଶ୍ୱରଙ୍କର ଗୁରୁ ହୋଇଯାଏ, ହୁଏ ତ ନିଜେ ଈଶ୍ୱରୋତ୍ତର ହୋଇଯାଏ । କବିତାଟିର ଏହି ଶୁଦ୍ଧ ଚେତନା ବା ଅନୁଭବ ଅତି କମ୍‌ରେ ଏତିକି ବୁଝେଇ ଦେଇପାରେ ଯେ ନିଜ ଭିତରେ ଥିବା ଚେତନାର ନୀରବତାକୁ (ଯାହା ପ୍ରାୟର ଶବ୍ଦର ଅତୀତ) ବ୍ୟକ୍ତିସତ୍ତା ଥରେ ଚିହ୍ନଟ କରିପାରିଲେ ମଣିଷ ଈଶ୍ୱର ପାଲଟିଯାଏ । ଏହି ଈଶ୍ୱର କିନ୍ତୁ ମଣିଷୋତ୍ତର ଏକ କାଳ୍ପନିକତା ନୁହେଁ, ବରଂ ମଣିଷ ଭିତରେ ସୁପ୍ତ ଅବସ୍ଥାରେ ଥିବା ଉଦାର ମାନବିକତା । ଏଇଠି ମନେପଡ଼େ ମିଲ୍‌ଟନଙ୍କ କଥା । ସେ 'ପାରା ଡାଇଜ୍ ଲଷ୍ଟ୍'ରେ ଥିବା ଶୈତାନ ଚରିତ୍ର ସାଟନ୍‌ଙ୍କ ସପକ୍ଷରେ ଥିଲେ । ଶେଲି ମଧ ନୈତିକତା ଦୃଷ୍ଟିରୁ ସାଟାନ୍‌ଙ୍କୁ ଈଶ୍ୱରଙ୍କ ଠାରୁ ଉର୍ଦ୍ଧ୍ୱରେ ବୋଲି ମତ ଦେଇଥିଲେ, ଯାହାର ଆଉ ଗୋଟିଏ କାରଣ ହେଲା ଭଲ ପଣିଆ ମନ୍ଦ ପଣିଆ ପରେ ଆସିଛି । ମନ୍ଦ ପଣିଆଟା ପ୍ରାୟ ପ୍ରାକୃତିକ, ଯେମିତି ଆଦାମ୍-ଇଭ୍ । ଏହା ମଣିଷ ଜାତିର ପତନ ପାଇଁ ଦାୟୀ କି ନୁହେଁ, ତା ଆଲୋଚନାର ଅପେକ୍ଷା ରଖେ କିନ୍ତୁ

ସେମାନଙ୍କ ନିଷିଦ୍ଧ ଫଳ ଭକ୍ଷଣ କରିବାଟା ଆଦୌ ଅପ୍ରାକୃତିକ ନୁହେଁ । ପ୍ରକୃତି ବରଂ ସଦାବେଳେ ସଭ୍ୟତା ଦ୍ୱାରା କଳୁଷିତ ହୋଇଆସିଛି, ତେଣୁ 'ସଭ୍ୟତା ବିହୀନ ଆଦିମ ପ୍ରକୃତି' ବୋଲି କିଛି ନାହିଁ । କବି-ସତ୍ତା ଏଇ ଯୁକ୍ତିଟିକୁ ପ୍ରାୟତଃ ସ୍ୱୀକାର କରିନେଇଛି ।

ଏହା ପରବର୍ତ୍ତୀ ଅବସ୍ଥାରେ କବି-ସତ୍ତା ନିଜକୁ ଗୋଟିଏ ଭାବଭୋଳା ବିଗ୍ରହ ଭାବରେ ପ୍ରତିଷ୍ଠା କରିଛି । ପ୍ରତିଷ୍ଠା କରିଛି ମାନେ ଏହାକୁ ସତ୍ୟର ସମ୍ଭାବନା ଭାବରେ ଗ୍ରହଣ କରି କବି-ସତ୍ତା ତାର ତନ୍ମୟ ସତ୍ତାକୁ ପ୍ରଶ୍ନ କରିଛି 'ଭାବଭୋଳା ! ଚୁମ୍ବକରେ କହ ତୋ'ର ଲୀଳା/କି ଭଳି ପ୍ଲାବନ ସେ ଯେ/ଝରେ କଳମରୁ/ସତେ କେଉଁ ଅବାରିତ ଧାରା । + + + କୁଟୀଳ ଭୁଜଙ୍ଗ ଗତି/ଛନ୍ଦର ସ୍ୱଚ୍ଛନ୍ଦ ରୀତି/ଶିରି ଶିରି ନିଃଶ୍ୱାସରେ/ଉତ୍‌ଫଣ କବିତା ତୋର/ମଂତ୍ରାବିଷ୍ଟ ଲୟ ତରଙ୍ଗରେ/ଧ୍ୱଂସ ଚକ୍ଷୁର ଉର୍ଦ୍ଧ୍ୱରେ/ଚନ୍ଦ୍ର ନିଶା....ମସ୍‌ଗୁଲ୍ ସୁରଧୂନୀ/ସହସ୍ର ଜିହ୍ୱାରୁ ଝରିପଡ଼େ/ଅଗ୍ନିର ପାଂନୁସ୍ ଯେତେ/ଅନନ୍ତ ନାଗର/ତା' ଉପରେ ସମାହିତ ବୈକୁଣ୍ଠ ସୁଷୁପ୍ତି ।' ଏଇ ସ୍ଥିତିର ଉର୍ଦ୍ଧ୍ୱରେ ଈଶ୍ୱର କି ? ବରଂ କବି ଈଶ୍ୱରୋତ୍ତର । କହିବା ବାହୁଲ୍ୟ ଏହି ସ୍ଥିତିଟି ହେଉଚି କବି-ସତ୍ତାର ସର୍ବଶେଷ ଉପଲବ୍‌ଧି । ସେଥିପାଇଁ 'ସତ୍ତା' ସଶ୍ରଦ୍ଧ ଆନ୍ତରିକତାରେ ଯେଉଁ ପୂର୍ଣ୍ଣତାର ଶୁଦ୍ଧ ଉଚ୍ଚାରଣ କରିଚି ତା ଯେ କୌଣସି ପାଠକର ଚେତନାକୁ ଗୋଟିଏ ପୂର୍ଣ୍ଣମୟ ଉଜ୍ଜ୍ୱଳତାରେ ଆଲୋକିତ କରିବ ହିଁ କରିବ । ଈଶ୍ୱରଙ୍କଠାରୁ ମଣିଷ ନୈତିକ ଭାବରେ ଅଧିକ ଦାୟିତ୍ୱବାନ ଏବଂ କବିଟିଏ ହିଁ ପ୍ରଥମ ଈଶ୍ୱର । ସେଇ ଗମ୍ଭୀର ଉଚ୍ଚାରଣ ଗୁଡ଼ିକ ହେଲା 'ଭାବଭୋଳା କବି/ର୍ତମର ଭାଷା ଏକ/ଶବ୍ଦ ଏକ ନିରାପତ୍ତା/ଆସନ୍ନ ମହାସମରରୁ/କଳ୍ପିତ ମହାପ୍ରଳୟରୁ ବଞ୍ଚିବାର ବୀଜମନ୍ତ୍ର ।'' ମଣିଷଙ୍କୁ ଯେ କୌଣସି ସଂହାର ବା ଯୁଦ୍ଧର ବିଭୀଷିକାର ରକ୍ଷା କରିପାରେ କେବଳ କବିଟିଏ । ସମ୍ପ୍ରଦାୟଗତ ପ୍ରତିମା ପୂଜାର ବିଡ଼ମ୍ବନାକୁ ହୁଏତ ଦୁର୍ଭାଗ୍ୟକୁ ପ୍ରତ୍ୟାଖ୍ୟାନ କରି ସେ ଉଚ୍ଚାରଣ କରେ 'ଚାଲ ସବୁ ହୃଦୟକୁ ପ୍ରଦକ୍ଷିଣ କରି ଚାଲ/ତୀର୍ଥ ନୁହେଁ/ମହାକାଶ ନୁହେଁ/ଆମେ ଥରେ ଏ ମନର/ପାତାଳ ଭେଦିବା/ତା ଭିତରେ ନିଜ ନିଜ/ନିମଜ୍ଜିତ ପ୍ରତିମା ଦେଖିବା/ଚାଲଯିବା, ଅବୋଧ ଈଶ୍ୱରଙ୍କୁ/ମଣିଷର ଭାଷା ଶିଖାଇବା ।' (ନଅ) ଈଶ୍ୱରଙ୍କୁ ମଣିଷର ଭାଷା ଶିଖାଇବାର ଯେଉଁ ଆକୁଳ ବ୍ୟଗ୍ରତା କବିସତ୍ତାକୁ ଆଚ୍ଛନ୍ନ କରି ରଖିଛି, ତାହା ହିଁ ହେଉଛି 'ଶବ୍ଦ ଏକା ଏକା ଏକତ୍ର' କବିତା ସଙ୍କଳନର ସବୁଠାରୁ ନିରପେକ୍ଷ ଅନୁଭବ । ଏହି ଅନୁଭବର ଶୁଦ୍ଧତା କୌଣସି ସମୟର ନୁହେଁ, ସମୟୋତ୍ତର । ଈଶ୍ୱର ଚିରକାଳ ଅବୋଧ, ହୁଏତ ଈଶ୍ୱରଙ୍କର କୌଣସି ଭାଷା ନାହିଁ । ନୀରବତା ହିଁ ଈଶ୍ୱରଙ୍କର ଏକମାତ୍ର ଭାଷା ବା ପ୍ରକାଶ । କବିତା ସଙ୍କଳନର ଏଇ ସାର୍ବଜନୀନ ଯୋଜନା ନାମା ସବୁ ସମୟର ମଣିଷ ପାଇଁ ନର୍କରୁ ଉଦ୍ଧାର ହେବାପାଇଁ ଏକ ଆଲୋକିତ ଦିଗ୍‌ବିଜୟ । ଏଥିପାଇଁ ହିଁ କବିଟିଏ ସଦାବେଳେ ଈଶ୍ୱରଙ୍କ ଠାରୁ ମହାନ ।

ଅନୁଭବର ନିରପେକ୍ଷତା ଯେଉଁ ମୌଳିକ ମଣିଷର ପ୍ରତିନିଧିତ୍ୱ କରେ, ସେ ମଣିଷଟି ଅହେତୁକ ଭାବରେ କୌଣସି ବାଦ ବା ଆଦର୍ଶ ନିକଟରେ ନିଜକୁ ସମର୍ପଣ କରିଦିଏ ନାହିଁ, ଯଦିଓ ନିଜ ଭିତରେ ଗୋଟିଏ ଆତଯାତ କରୁଥିବା 'ଛାଇ'କୁ ଆବିଷ୍କାର କରିବାରେ ସକ୍ଷମ

ହୋଇଛି-'ଏକା ଏକା ଯାଏ ମୁଁ ଯେ/ନିତି ଗହଳିରେ xx/ନୀରବତା ନାହିଁ କାହିଁ/ନିର୍ଜନତା ନାହିଁ/ କେଉଁଥିରେ ଲୁଚାଇବି/ଏତେବଡ଼ ଛାଇ' (ତେର) ଏଇ ଛାଇର ଉପଲବ୍ଧିରେ କବି-ସତ୍ତା ଆପାତତଃ ପୂର୍ଣ୍ଣମୟ । ମନୁଷ୍ୟ ତାର ଚେତନାର ଦ୍ଵାର ଉନ୍ମୋଚନ କରି ସୂକ୍ଷ୍ମୋତ୍ତର ରାଜ୍ୟର ଯେଉଁ ଅର୍ଦ୍ଧବଳୟ, ପୂର୍ଣ୍ଣବଳୟ ଓ ତାର ସର୍ବଶେଷ ସ୍ଥିତି ଭାବେ 'ଶୂନ୍ୟବଳୟ'କୁ ସ୍ପର୍ଶ କରେ, ସେହି ଶୂନ୍ୟ ବଳୟରେ ଏ ଛାଇର ସ୍ଥିତି । ଯେଉଁଠି 'ମୁଁ' 'ତୁ'ର ପ୍ରତିଯୋଗିତା ବା ଦ୍ଵନ୍ଦ୍ଵ ନାହିଁ, ପ୍ରଥମ ପୁରୁଷ ଓ ଦ୍ଵିତୀୟ ପୁରୁଷ ଭିତରେ କୌଣସି ବିରୋଧାଭାସ ନାହିଁ । ସେଇ ଶୂନ୍ୟ ବଳୟ ଭିତରେ ପହଞ୍ଚିସାରିବା ପରେ କବିସତ୍ତା ଅନୁଭବ କରେ 'ମୋ ପରି ନାହିଁ କେହି/ମୁଁ ଅଛି ସବୁରି ଭିତରେ/କେଉଁଠାରେ ନାହିଁ ମୁଁ/ଯଦି ନାହଁ ନିଜର ଭିତରେ ।' ଏଠି 'ଅହଂ'ର କିଛି ନିଜସ୍ଵ ସ୍ଥିତି ନାହିଁ ବରଂ 'ଅହଂ' ଏକ ସାମୂହିକ ଚେତନାର କେନ୍ଦ୍ରବିନ୍ଦୁରେ ଏକାବେଳକେ ଏକୁଟିଆ । ସେଥିପାଇଁ ତାର ଉଚ୍ଚାରଣରେ ଗୋଟିଏ ବୈଦିକ ତପସ୍ଵୀର ନିବିଡ଼ତା ବେଶ୍ ତୀବ୍ର, ତେବେ 'ଅହଂ'ର ଏଇ ଏକାକୀପଣ ଗୋଟିଏ ପୂର୍ଣ୍ଣତାର ଶେଷଧ୍ଵନି ତେଣୁ ମଣିଷର ଦୁଃଖ ଓ ସୁଖକୁ, ଯନ୍ତ୍ରଣା ଓ ଉଲ୍ଲାସକୁ ଗୋଟିଏ ପରିଧିର ଦୁଇପାର୍ଶ୍ଵ ଭାବେ ଗ୍ରହଣ କରିଛି କାରଣ ମଣିଷକୁ ସେ କେବଳ ମଣିଷ ଭାବେ ଗ୍ରହଣ କରୁଛି । ଇନ୍ଦ୍ରିୟର ଅସ୍ଥିରତା ଭିତରେ ଇନ୍ଦ୍ରିୟୋତ୍ତର ସ୍ଥିରତାକୁ ସ୍ଵୀକାର କରୁଛି । ସେଇ ଉଚ୍ଚାରଣର ଗୋଟିଏ ଉଦାହରଣ ହେଲା 'ଅଧେ କୃଷ୍ଣ ପକ୍ଷରେ ତ/ଅଧେ ଶୁକ୍ଳ ପକ୍ଷରେ । ++ ପକ୍ଷେ ବଢୁଥାଏ/ପକ୍ଷେ ଛିଡୁଥାଏ/ଅଙ୍ଗରେ ଅନଙ୍ଗ/ଥାଏ ଅନଙ୍ଗରେ ରଙ୍ଗ । ++ ଅଧେ ଅବିଶ୍ଵାସ ଥାଏ/ଅଧେକ ବିଶ୍ଵାସ ।' ଏହି ପରିଧି ବାହାରେ ମଣିଷର କଳ୍ପନା କରିବା କେବଳ ଅସମ୍ଭବ ନୁହେଁ ବରଂ ଧୃଷ୍ଟତା । ମଣିଷ ଏଇ ଜାଗତିକ ପୃଥିବୀରେ ବଞ୍ଚେ ଏହା ଏକ ଉଜ୍ଜଳ ସତ୍ୟ ଏବଂ ସେଇ ବଞ୍ଚିବା ଭିତରେ ସେ ନିଜ ପ୍ରାଣ ଠାରୁ ଆଉ ଜଣେ କାହାର ଉପସ୍ଥିତିକୁ ଅପେକ୍ଷା କରି ରହିଥାଏ । 'ଖାଲି ଅପେକ୍ଷା କରି ରହିବା ଏକ ଶୂନ୍ୟତା ମଧ୍ୟ ନୁହେଁ, ବରଂ ସେଇ ଅପେକ୍ଷା ଭିତରେ ସେ ଯନ୍ତ୍ରଣା ଦଗ୍ଧ ହୋଇଉଠେ କିନ୍ତୁ ସେ ଯନ୍ତ୍ରଣା ତାର ବାଞ୍ଛିତ ସୁଖଠାରୁ ମଧ୍ୟ ଅଧିକ ଲୋଭନୀୟ ଦିଶେ । ଏହି ଅନନ୍ତ ଆବିଷ୍କାରର ଅନ୍ୟନାମ ହିଁ ଆତ୍ମ-ଆବିଷ୍କାର । ତେଣୁ ତାର ଅନୁଭବରେ ଉପସ୍ଥିତ ହୋଇଛି ବି ଦେହ । କିଏ ଜଣେ, ଯାହାର ସ୍ଥିତିଟି ହେଉଛି 'ଯା ଆସ ଥିବା ସତ୍ତ୍ୱେ/କିବା ସେ ସବୁଦିନେ ଥାଏ/ଥାଏ ଯେ ଥାଏ/କେତେ ଜନ୍ମ କେତେ ମୃତ୍ୟୁ ବିତିଯାଏ/ସୂର୍ଯ୍ୟଭଳି ଅଖଣ୍ଡ ଦୀପଟିଏ/ଜଳୁଥାଏ ନିଜର ମେରୁରେ ।' ଏହି ଅଖଣ୍ଡ ଦୀପର ଉପଲବ୍ଧି ହିଁ କବି-ସତ୍ତାର ପୂର୍ଣ୍ଣତା । ତେବେ ଏହା ଅସୀମତାର ଏକ ଖଣ୍ଡିତ ସ୍ଵପ୍ନ ମାତ୍ର ନୁହେଁ କିମ୍ବା ଆମେ ପାରମ୍ପରିକ ଭାବେ ବିଶ୍ଵାସ କରିଥିବା ଆଧ୍ୟାତ୍ମିକ ଚେତନା ମଧ୍ୟ ନୁହେଁ । ଏହା ଅତିନ୍ଦ୍ରିୟ ଜଗତର ସୂଚନା ଦେଲେ ମଧ୍ୟ ନିର୍ବୋଧଭାବେ ଈଶ୍ଵରଙ୍କ ଅନୁଶାସନ ପାଖରେ ସମର୍ପିତ ନୁହେଁ ବରଂ ନିଜ ଅନୁଭବ ବଳରେ ଏକ ନୂତନ ଦିଗ୍‌ବଳୟକୁ ଆବିଷ୍କାର କରିପାରିବାର ଏକ ସନ୍ନ୍ୟାସ । ଯିଏ ଈଶ୍ଵରଙ୍କୁ ମଣିଷର ଭାଷା ଶିଖାଇ ଈଶ୍ଵରଙ୍କୁ ମଣିଷର ସୁଖ ଦୁଃଖ ଓ ଯନ୍ତ୍ରଣା କାତରତାରେ ସାମିଲ ହେବାକୁ ବାଧ୍ୟ କରାଏ ।

ମୁଖ୍ୟତଃ କବି-ସତ୍ତା ଏଠି ଯେଉଁ ସ୍ଥିତିରେ ବଞ୍ଚୁଛି ଏବଂ ଯେଉଁ ସ୍ଥିତିରେ ଚେତନାର ଜଟିଳ ଅନୁଭବ ସହ ସମ୍ପର୍କଟିଏ ସ୍ଥାପନ କରୁଛି, ସେହି ସ୍ଥିତିର ବାସ୍ତବତା ହିଁ ମୁଖ୍ୟ ସମ୍ବାଦ । ଯାହାକୁ ଆଉ ଟିକିଏ ସହଜ କରି କହିଲେ ଏଇଆ ବୁଝିବାକୁ ହେବ ଯେ ଗୋଟିଏ ପରିବର୍ତ୍ତିତ-ମହାଜାଗତିକ ବାସ୍ତବତାର ଅନୁଭବ ହିଁ କାବ୍ୟିକ ରୂପ ପରିଗ୍ରହଣ କରିଛି । ସେଥିପାଇଁ କବିସତ୍ତା ବାଇବେଲର "Douest thou at to dust returnest" ପରି କେବଳ ଶୂନ୍ୟତାର ମାନଚିତ୍ରଟିକୁ ଆଙ୍କିବାକୁ ଚେଷ୍ଟା କରିଛି ଏବଂ ତା ଚାରିଦିଗ (ଆଗ, ପଛ, ଅର୍ଦ୍ଧ, ଉର୍ଦ୍ଧ୍ୱ ମଧ୍ୟକୁ)କୁ ନିରୀକ୍ଷଣ କରି ଶୂନ୍ୟତାକୁ (ଶୂନ୍ୟତାର ଥଳକୂଳ ନାହିଁ) ବାସ୍ତବତାର ଗୋଟିଏ ଅଂଶ ଭାବରେ ଗ୍ରହଣ କରୁଛି । ଫଳରେ 'ସମ୍ପର୍କ ଶୂନ୍ୟତା' କବିସତ୍ତାରେ ବାସ୍ତବତାର ପୋଷାକ ପିନ୍ଧି ଦଣ୍ଡାୟମାନ ହୋଇଛି । 'ଶବ୍ଦମାନେ ଫିଟିଗଲେ/ଖସି ପଡ଼ିଲେ ଅଶ୍ୱାରୋହୀମାନେ/କେହି ନଥିଲେ କହିବାକୁ/କେଉଁଠି ପହଁଞ୍ଚିବାକୁ ହେବ ସେମାନଙ୍କୁ ।' କବିସତ୍ତା ଅତୀତକୁ ନିରୀକ୍ଷଣ କରି ଦେଖୁଛି ସେଭଳି କିଛି ଉଲ୍ଲେଖନୀୟ ଦୃଷ୍ଟାନ୍ତ ମଧ୍ୟ ନାହିଁ ବରଂ ଅଛି ସେହି ଅସହାୟତାର ନିରୂପଦ୍ରବ ଶିଳାଲେଖ । 'ପଛରେ ସଇସ ମାନଙ୍କର/ଗର୍ବ ଓ ଗୌରବର/ପଗଡ଼ି ଭିଡୁଥିଲା ଚିମିନି ଧୂଆଁରେ/ଆଗରେ ଝପଟୁ ଥିବା ଶୁଭ୍ରଘୋଡ଼ା ସବୁ/ଧାଉଁଥିଲେ ଧୂଆଁରୁ-ମେଘକୁ ।' ଏଇ ହେଉଚି ମଣିଷ ଅସ୍ତିତ୍ୱର ଶେଷ ହସ୍ତାକ୍ଷର, ଯେଉଁଠି ବଞ୍ଚୁଥିବା ଜୀବନ ଭିତରେ ତାର ଏକ ପ୍ରକାର ଯୁଦ୍ଧ ହୁଏ ଈଶ୍ୱରଙ୍କ ସହିତ । କେବଳ ଅନନ୍ତ ଅପେକ୍ଷା ହିଁ ତାର ନିଜସ୍ୱ, ନିଃସଙ୍ଗତା ହିଁ ତାର ପୂର୍ଣ୍ଣତା । ଏଥିରୁ ତଥାକଥିତ ମହାତ୍ମାମାନେ ଯେମିତି ଗାନ୍ଧୀ, ମାର୍କସ, ଲେନିନ୍ କେହି ବାଦ ଯାଇନଥିଲେ । ସମସ୍ତେ ଯେପରି ଗୋଟିଏ ଗୋଟିଏ ଅପୂର୍ଣ୍ଣତାର କରୁଣ ସଂଳାପ, ନିର୍ଜନତା ହିଁ ସେମାନଙ୍କର ପୂର୍ଣ୍ଣତା । ଯାହାକୁ କବି ସତ୍ତା 'ଛାଇ' ଟିଏ ଭାବରେ ଚେତନାର ସୂକ୍ଷ୍ମ ସ୍ତରରେ ଉପଲବ୍ଧି କରିଛି । ସେଠି ନିଃସଙ୍ଗତା ଅଛି ମଣିଷକୁ ଈଶ୍ୱରରୋତ୍ତର କରିବାପାଇଁ, ଈଶ୍ୱରକୁ ମଣିଷର ଭାଷା ଶିଖାଇବପାଇଁ । ସେଇ ଅଭୀପ୍‌ସା ହିଁ ପୂର୍ଣ୍ଣତାର କେନ୍ଦ୍ରବିନ୍ଦୁ, ତେଣୁ ସେମାନେ ଥିଲେ ପୂର୍ଣ୍ଣମୟ । କବିସତ୍ତା ନିଜକୁ ନିଜେ ଥରେ ଉପଲବ୍ଧି କରି ସାରିବା ପରେ ତା ପାଇଁ ଆଉ ସବୁ ଯୁକ୍ତିବାଦ ଅବାନ୍ତର ହେଇପଡ଼ିଛି । ସେଥିପାଇଁ ସେ ମଣିଷ ସମାଜ ତରଫରୁ ନିଜକୁ କ୍ଷମା କରିପାରି ନାହିଁ ନିଜର ଅଜ୍ଞତାକୁ ଚିହ୍ନଟ କରିସାରିବା ପରେ । ପ୍ରଥମ ପୁରୁଷର ସ୍ୱଗତୋକ୍ତି ତେଣୁ ବେଶ୍ ଶାଣିତ 'ମୁଁ କି ଥିବି ଏକମାତ୍ର ଶବଦର କୁମ୍ଭୀର/ପଙ୍କରୁ ଉଦ୍ଧାର କରି ପଦ୍ମଟିକୁ/ପ୍ରାର୍ଥନା କରୁଥିବା ହାତୀଟିର ପାଦକୁ କାମୁଡ଼ି/ଧରିଥିବି ହଜିଥିବା ଅର୍ଥଟିକୁ ।' କବି ସତ୍ତା ଯେ ଜୀବନ ସପକ୍ଷରେ ଅର୍ଥଟିଏ ଖୋଜିପାଇଚି ଏବଂ ସେଇ 'ଅର୍ଥ'ର ଭ୍ରମରେ ଆଉଟୁ ପାଉଟୁ ହେଉଥିବା ମଣିଷପାଇଁ ସେ ଯେ ସମ୍ବେଦନଶୀଳ, ଏହା ହିଁ କବିତାର ଗୋଟିଏ ବଳିଷ୍ଠ ବଶମ୍ୱଦତା । ଯାହାର ସର୍ବଶେଷ ଘୋଷଣାନାମାଟି ହେଲା । 'ଇତିହାସର କବର ଖାନାରେ/ସ୍ଥାନ ମିଳୁ ବା ନମିଳୁ/ଇତିହାସ ନୀରବ ନିଷ୍କଳ ହେଲେ ଭଲ/ପୁରାଣର ଗଳି ଉପଗଳିରେ/ଚକ୍ରଭଳି ନ ବୁଲିଲେ ଭଲ ।' ଯାହାର ଏକମାତ୍ର କାରଣ ହେଲା

ହୁଏତ ଯାହା ନାହିଁ ତା ପଛରେ ଧାଇଁବାକୁ କବି-ସତ୍ତା ସ୍ୱୀକାର କରୁ ନାହିଁ । ଯେ ହେତୁ ସେ ଶବ୍ଦର ପ୍ରତାରଣା ସମ୍ପର୍କରେ ବେଶ୍ ସଚେତନ । ଏହି 'ଯାହା ନାହିଁ'ର ଉପଲବ୍ଧିଟି ହେଲା 'ଦୁରନ୍ତ ସମ୍ଭାବନାରେ ଶବ୍ଦର/ଖସି ଯାଉଥିବା କାଳ/ଲବଣାକ୍ତ ସମୁଦ୍ରକୁ ବଦଳେଇ ଦେବାପାଇଁ/କ୍ଷୀର ସମୁଦ୍ରରେ । ++ପଞ୍ଚଭୂତରେ ନଥିବା ରୂପଟିଏ ଚଲାବୁଲା; କରୁଥିବ/ବନ୍ଦଥିବା ରାସ୍ତାଟିରେ/ଅବା ନିଷିଦ୍ଧ ସେ ଶବ୍ଦର ମରୁଦ୍ୟାନ/ଅଶ୍ରୁପୂର୍ଣ୍ଣ ଓଏସିସ୍‌ଟିରେ ।' (ବାଇଶ) ଜୀବନର ବିପୁଳ ବାସ୍ତବତାକୁ ଅସ୍ୱୀକାର କରି ଆଉ ଗୋଟିଏ ଦେଖିନଥିବା ରାଜ୍ୟର 'ଶବ୍ଦ ମାୟା'କୁ କବି-ସତ୍ତା ଆପାତତଃ ଉପେକ୍ଷା କରିଛି, ନିଜର ଈଶ୍ୱରୋତ୍ତର ଉପଲବ୍ଧିରେ ।

ଆଲୋଚନାର ଉପସଂହାରରେ କହି ରଖେ 'ଶବ୍ଦ ଏକା ଏକା ଏକତ୍ର' ସଙ୍କଳିତ କବିତା ବା ଦୀର୍ଘ କବିତାଟିରେ ଉପସ୍ଥିତ ଶବ୍ଦମାନଙ୍କୁ ନେଇ ଗୋଟିଏ ସ୍ଥିର ଅର୍ଥ ଖୋଜିବା ଅର୍ଥ କବିତାକୁ ଅଯଥା ଜଟିଳ କରି ବୁଝିବାକୁ ଚେଷ୍ଟା କରିବା । ଶବ୍ଦ ମାନଙ୍କର ପାର୍ଥକ୍ୟଗତ ଉପସ୍ଥିତି ପାଠକକୁ ବେଳେ ବେଳେ ଗୋଟିଏ ସ୍ଥିର ଅର୍ଥ ଦେବାର ଭ୍ରମ ସୃଷ୍ଟି କରେ । ଏକଥା ମଧ୍ୟ ସତ୍ୟ ଯେ କୌଣସି ଗୋଟିଏ ଶବ୍ଦକୁ ଗୋଟିଏ ଅର୍ଥ ପାଇଁ ନିୟୋଜିତ କରିବା କବିର ଧର୍ମ ନୁହେଁ ବା ଶବ୍ଦ ଅର୍ଥର ମାଧ୍ୟମ ନୁହେଁ । ଶବ୍ଦକୁ ଗୁଣ ଭେଦରେ ଗୋଟିଏ ସ୍ଥିର ଅର୍ଥରେ ଆରୋପିତ କରିବା ଅର୍ଥ ଶବ୍ଦଟିକୁ ସ୍ଥାଣୁ କରିଦେବା । ତେଣୁ ଗୋଟିଏ ଶବ୍ଦକୁ ଅନେକ କିଛି ଅର୍ଥର ସମ୍ଭାବନା ସହିତ ଯୁକ୍ତ କଲେ, ଭାବର ପରିସର ବେଶ ବ୍ୟାପକ ହୁଏ । ଆମର 'ଧ୍ୱନି ମତବାଦ୍‌ବାଦୀ' ପଣ୍ଡିତ ମାନେ ଏହି ସିଦ୍ଧାନ୍ତଟିକୁ ଉତ୍କୃଷ୍ଟ କବିତାର ସଂଜ୍ଞା ଭାବରେ ଗ୍ରହଣ କରିଛନ୍ତି ମଧ୍ୟ । ସେ ଦୃଷ୍ଟିରୁ 'ଶବ୍ଦ ଏକା ଏକା ଏକତ୍ର' ରେ ସ୍ଥୂଳ ଭାବରେ ପରସ୍ପର ବିରୋଧି ମନେ ହେଉଥିବା ଦାର୍ଶନିକ ଦୃଷ୍ଟିଭଙ୍ଗୀ ଗୋଟିଏ ସିଦ୍ଧାନ୍ତରେ ସ୍ଥିର ନରହି, ଏକ ସାର୍ବଜନୀନ ମଣିଷ ସମାଜର ସାମୂହିକ ଅବଚେତନକୁ ବିଭିନ୍ନ ଦୃଷ୍ଟିକୋଣରୁ ସୂକ୍ଷ୍ମ ଭାବରେ ଅନୁଭବ କରିଛି । ସେଇ ସ୍ଥୂଳତା ଏବଂ ସୂକ୍ଷ୍ମତାର ବଳୟ ଭିତରେ 'ମଣିଷ ହିଁ ସବୁ କିଛିର କେନ୍ଦ୍ରବିନ୍ଦୁ । କହିବା ବାହୁଲ୍ୟ କବି ହରିହର ମିଶ୍ରଙ୍କ କାବ୍ୟ ଚେତନାର ଏହା ଏକ ସଫଳ ଉତ୍ତରଣ; ଯେଉଁଠି କବି-ସତ୍ତା, ଈଶ୍ୱର, ସମୟ, ଶବ୍ଦ, ମୃତ୍ୟୁକୁ ଅତିକ୍ରମ କରି ନିଜକୁ ଈଶ୍ୱରୋତ୍ତର ଭାବେ ପ୍ରତିପାଦନ କରିପାରିବାରେ ସଫଳ ହେଇଛି !

ଅଧ୍ୟାପକ, ଓଡ଼ିଆ ବିଭାଗ

ଗୋପ କଲେଜ, ଗୋପ

('ଏହିପରି ଆମ ସଂପର୍କ,' ବିଶେଷ ସଂଖ୍ୟା ୧୯୯୯ରେ ପ୍ରକାଶିତ)



# 'ଶବ୍ଦ ଏକା ଏକା ଏକତ୍ର ଓ ଦର୍ପଣ ଶିଳା'
# ହରିହର କାବ୍ୟ-ମାନସ

*ଶ୍ରୀକାନ୍ତ ମହାନ୍ତି*

## (ଏକ)

'ଶଦ୍ଦ ଏକା ଏକା ଏକତ୍ର'ର ଦୁଇଟି ସ୍ୱାତନ୍ତ୍ର୍ୟ ଚମତ୍କାରିକା ସମ୍ପର୍କରେ ମୁଁ ଏଠାରେ କହିବି, ଯାହା ଅନ୍ୟତ୍ର ଦେଖିବାକୁ ବିରଳ । ପ୍ରଥମଟି ହେଲା ସୃଷ୍ଟି-ପ୍ରକ୍ରିୟା ମଧ୍ୟରେ କବିର ପ୍ରସବ ଯନ୍ତ୍ରଣା ପରି ଦୁର୍ବିସହ ସୃଷ୍ଟି-କଷ୍ଟର ରୂପାନ୍ତରଣ ହୋଇଛି ଏକ ଅଜଣା ଆନନ୍ଦରେ, ନାନ୍ଦନିକ ଅନୁଭୂତି ଏବଂ ରସାପ୍ଲୁତ ଅଭିବ୍ୟକ୍ତିରେ । ଦ୍ୱିତୀୟଟି ହେଲା ସେଥିରେ ସତ୍ୟ ମିଥ୍ୟାର ପ୍ରକଳ୍ପ କିମ୍ବା କାଳ ଦ୍ୱାରା ବିଖଣ୍ଡିତ ହୋଇପାରୁନଥିବା, ଅଥଚ ପାଠକର ମନକୁ ଆଚ୍ଛନ୍ନ କରି ରଖୁଥିବା ଏକ ବିଶ୍ୱ, ଯାହା ସମ୍ପୂର୍ଣ୍ଣ ଭାବେ କବିର ଅବବୋଧ ପ୍ରସୂତ । ସେଥିରେ କଳ୍ପନାର ଚାତୁରୀ ନାହିଁ ଅଥବା ଅତିବାସ୍ତବ ବା ଆଧିଭୌତିକ ରୂପଚର୍ଯ୍ୟା ପାଇଁ କବିର ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଉଦ୍ଦେଶ୍ୟ ନାହିଁ । କାବ୍ୟରୂପ ଗୁଡ଼ିକରେ ଯେଉଁ ବିସ୍ମୟ ଓ ଭିନ୍ନତ୍ୱ ଭରିରହିଛି ତାହା ବାସ୍ତବ ଜଗତର ସ୍ଥିତି-ଅସ୍ଥିତି, ସତ୍ୟ ମିଥ୍ୟାକୁ ବନ୍ଧନୀଭୁକ୍ତ କରି ଅତିକ୍ରମ କରିବା ସଙ୍ଗେ ସଙ୍ଗେ ପାଠକର ଚେତନା ରାଜ୍ୟର ନିଗୂଢ଼ ସତ୍ୟ ଭାବେ ଗଭୀର ପ୍ରତୀତି ଆଣି ପାରିଛି ।

କବିତାର ରୂପଧର୍ମକୁ ଆଲୋଚନା ପରିସରକୁ ଆଣିବା ପୂର୍ବରୁ ସୃଷ୍ଟି ପ୍ରକ୍ରିୟା ଓ ଅବବୋଧ ବାଦ (Phenomenology) ସମ୍ପର୍କରେ ଏକ ସଂକ୍ଷିପ୍ତ ଦୃଷ୍ଟି ପାତର ଆବଶ୍ୟକତା ଏଠାରେ ରହିଛି ।

ଏହା ସତ ଯେ, କୌଣସି ନା କୌଣସି ଜାଗତିକ ଘଟଣାର ପ୍ରତିଫଳନ କବିକୁ ଏକ ମୁହୂର୍ତ୍ତ ଭିତରକୁ ଠେଲିଦିଏ, ଅନ୍ୟଥା ଏହାକୁ ଏକ ମନର ଅବସ୍ଥା ବୋଲି ମଧ୍ୟ କହିହେବ । ଏହି ଅବସ୍ଥାର ଅଭିବ୍ୟକ୍ତିଟିଏ ନ ପାଇବା ଯାଏ କବି ଛଟପଟ ହୁଏ । ଅନ୍ୟ ପକ୍ଷରେ ସେହି ମୁହୂର୍ତ୍ତ ବା ମାନସିକ ଅବସ୍ଥାଟିକୁ ଭୁଲିଯାଇ ଅତିକ୍ରମ କରିପାରିବାର ଶକ୍ତି ମଧ୍ୟ କବିଠାରେ

ନଥାଏ କାରଣ କବିର ଅବବୋଧରେ ଏଇ ମାନସିକ ଅବସ୍ଥା ଆଉ ଏକ ମର୍ମାନ୍ତକ ସତ୍ୟର ପ୍ରତୀତିରେ ଆସ୍ଥାନ ଜମାଇ ସାରିଥାଏ । ଏଇ ମାନସିକ ଅବସ୍ଥାର ଅଭିବ୍ୟକ୍ତିଟି ପୁଣି କ'ଣ ?

ଗୋଟିଏ କାବ୍ୟ-ରୂପ, ଯାହାକୁ ଯେ କେହି ମନରେ ଆଙ୍କୁ ଆଙ୍କୁ ସେଇ ଅବସ୍ଥା ବା ମୁହୂର୍ତ୍ତକୁ ପ୍ରାପ୍ତ ହୋଇଯାଏ, ଅଥଚ ଏଇ ପ୍ରାପ୍ତିରେ ଥାଏ ଆନନ୍ଦ, ନାନ୍ଦନିକ ଅନୁଭୂତି । ଏଇ ଅଭିବ୍ୟକ୍ତିର ସନ୍ଧାନରେ ଆରମ୍ଭ ହୁଏ କବିର ସୃଷ୍ଟି ଯନ୍ତ୍ରଣା । ଏହି ଅଡୁଆ ପରିସ୍ଥିତିରେ ବେଳେବେଳେ କବି ଭୂଲବଶତଃ ଭାବି ବସେ ଯେ, ଯେଉଁ ଜାଗତିକ ଘଟଣାର ପ୍ରତିଫଳନ ତା'ଠାରେ ଏ ମାନସିକ ଅବସ୍ଥା ଜାତ କରାଇଛି, ସେଇ ଘଟଣାକୁ ପ୍ରାଞ୍ଜଳଭାବେ ବର୍ଣ୍ଣନା କରିଦେଲେ ପରା ଅଭିବ୍ୟକ୍ତିଟି ମିଳିଯିବ । କିନ୍ତୁ ଏଥିରେ (ଏ ବାସ୍ତବ ଜଗତର ସତ୍ୟାସତ୍ୟରେ) ଫଳ ମିଳେ ନାହିଁ । କବିର ମନ ପେଣ୍ଡୁଲମ୍ ପରି ସେଇ ବାସ୍ତବ ଘଟଣା ଚକ୍ରରୁ ମାନସିକତା ଯାଏଁ ଦୋଳାୟମାନ ହେଉଥାଏ । ଅତି ଯନ୍ତ୍ରଣାଦାୟକ ଏଇ ଜ୍ୱଳନ । ମସୃଣ ଚଟାଣରୁ ଚିମୁଟି ଚିମୁଟି ପାରଦ କଣିକାଟିଏ ଉଠାଇବାକୁ ଚେଷ୍ଟା କରୁ କରୁ କବି କ୍ଳାନ୍ତ ହୋଇପଡ଼େ । ଆଙ୍ଗୁଠି ଭିତରୁ ଖସି ପଳାଇଥା'ନ୍ତି ଶବ୍ଦମାନେ, ରୂପମାନେ, ଛୋଟ ଛୋଟ ପେଣ୍ଡୁଭଳି ଦ୍ରୁତଗତିରେ, ଧରାଦିଅନ୍ତି ନାହିଁ । ବୁଢ଼ିଆଣି ଜାଲରେ ପଡ଼ି ଖସିବା ପାଇଁ ବହୁ ଛଟପଟ ହେବାପରେ ପୋକଟି ଯେମିତି ସ୍ଥିର ହୋଇ ରହିଯାଏ, ସମର୍ପଣ କରିଦିଏ ତା'ର ସମସ୍ତ ସତ୍ତାକୁ, ଠିକ୍ ସେମିତି କବି ଅଭିବ୍ୟକ୍ତିଟିଏ ପାଇଁ ଛଟପଟ ହୋଇ ଶେଷରେ ନିଜକୁ ସମର୍ପଣ କରିଦିଏ ତାର ସମସ୍ତ ସ୍ମୃତି, ସ୍ୱପ୍ନ, କଳ୍ପନା ଓ ବାସ୍ତବତା ନିକଟରେ । କବିର ଚେତନାରେ ଯାହାସବୁ ଫେଣ୍ଟା ଫେଣ୍ଟି ହୋଇ ସତ୍ୟ-ମିଥ୍ୟା, ସ୍ଥିତି-ଅସ୍ଥିତିର ଉର୍ଦ୍ଧ୍ୱରେ ଗୋଟିଏ ସମତଳ ତିଆରି କରନ୍ତି । ସେଠାରେ ଶୋଇରହି କବି ଆବିଷ୍କାର କରେ ତା'ର ଅଭିବ୍ୟକ୍ତିର କାବ୍ୟ ରୂପ । ଡାର୍କ ରୁମ୍‌ରେ ଛବିଟିଏ ଧୀରେ ଧୀରେ ରୂପ ବିଗ୍ରହ ଧାରଣ କଲାପରି କବି 'ଥ-ତ-ମ-ତ' ହେଉଥିବା ଶବ୍ଦ ଗୁଡ଼ିକୁ ଏକାଠି ଠିଆ କରେଇଦିଏ' । ତା ହୁଏ କବିତା ।

ଆଲୋଚ୍ୟ କବିତା ଗ୍ରନ୍ଥର ଏହା ହିଁ ବିଶେଷତ୍ୱ । ସୃଷ୍ଟି-ଯନ୍ତ୍ରଣା, ଯାହା ପ୍ରତ୍ୟେକ କବି ଊଣା ଅଧିକେ ଭୋଗିଥାଏ, କବି ହରିହର ବେଶି ଭୋଗିଛନ୍ତି ଏବଂ ତାଙ୍କ ଅବବୋଧରେ ଏହି ଯନ୍ତ୍ରଣାର ପ୍ରତିଫଳନ ଏକ ମାନସିକ ଅବସ୍ଥା ସୃଷ୍ଟିକରି ଆଉ ଏକ ସତ୍ୟଭାବରେ ଠିଆ ହୋଇଛି । ଭଗିରଥ ପାଇଁ ଗଙ୍ଗାପଥରେ ଐରାବତଟିଏ ଯେମିତି ଅନ୍ତରାୟ ହୋଇ ଠିଆ ହୋଇଯାଇଛି । କ୍ରମେ ଭଗୀରଥର ତପସ୍ୟାରେ ଐରାବତ ଗଙ୍ଗାପଥରୁ ଅପସରି ଯାଇଛି । କବି ତା'ର ସମର୍ପଣରେ ଯେଉଁ କାବ୍ୟ ରୂପ ଆବିଷ୍କାର କରିଛି, ସେଥିରେ ସୃଷ୍ଟିକଷ୍ଟ ରୂପାନ୍ତରିତ ହୋଇଛି ରସରେ– ଅବରୋଧ କରୁଥିବା ହସ୍ତୀଟି ସେମିତି ଗଙ୍ଗା ଜଳରେ ମିଳେଇ ଯାଇଚି, ଅନ୍ତରାୟ ହୋଇନାହିଁ ।

ପଞ୍ଚଇନ୍ଦ୍ରିୟକୁ ସ୍ପର୍ଶକଲାଭଳି ରୂପ, ଗନ୍ଧ, ସ୍ପର୍ଶ, ଶବ୍ଦ ଓ ସ୍ୱାଦର ବିନ୍ୟାସରେ ଶବ୍ଦମାନେ ରୂପଟିଏ ଠିଆ କରାଇଦେଇ ନିଜେ ହଜିଯା'ନ୍ତି । ରୂପଟିଏ ପୁଣି ଭାବଟିଏ ଡ଼ାକି ଆଣି ନିଜେ ମିଳେଇ ସ୍ୱଚ୍ଛ ହୋଇଯାଏ । 'ଶବ୍ଦର ଏ କୂଳରୁ ଅର୍ଥର ସେ କୂଳକୁ' ସେତୁଟିଏ ବନ୍ଧା ହୋଇଯାଏ । ଶବ୍ଦଟିକୁ ଖୋଜୁ ଖୋଜୁ କବିଙ୍କୁ ସମର୍ପଣର ଆତ୍ମାହୁତି ଦେବାକୁ ହୁଏ ।

'ଶବ୍ଦଟିଏ ଖୋଜୁ ଖୋଜୁ/ କେଉଁ କାଳ କଳପ ଡ଼ାଳରୁ

ଖସି ପଡ଼େ ଜୀର୍ଣ୍ଣ ଏକ ଶୁକ ପକ୍ଷୀ/ ନିଶ୍ଚଳ ସେ ରୋହିଣୀ କୁଣ୍ଡରେ'

(ପୃ-୩୧)

ନିଶ୍ଚଳ ରୋହିଣୀ କୁଣ୍ଡର ଅନନ୍ତ ନୀରବତାକୁ ଭାଙ୍ଗିବା ପାଇଁ ପକ୍ଷୀର ଆତ୍ମାହୁତି ଛଡ଼ା ଆଉ କ'ଣ ଉପାୟ ଥିଲା ? ଆତ୍ମାହୁତି ଏଠାରେ ଆତ୍ମଅଭିବ୍ୟକ୍ତି । ତଥାପି କବିତା'ର ସୃଷ୍ଟି-ପ୍ରବୃତ୍ତିକୁ ସ୍ୱୀକାରୋକ୍ତି ଦେଇଛି ।

'ଆମେ ଥରେ ଏ ମନର ପାତାଳ ଭେଦିବା

ତା' ଭିତରେ ନିଜ ନିଜ ନିମଜ୍ଜିତ ପ୍ରତିମା ଦେଖିବା' (ପୃ- ୨୯)

ମୁହୂର୍ତ୍ତଟିଏ ଛାଇଯାଇଛି କବିର ସମସ୍ତ ସତ୍ତାକୁ । ଏକ ବିରାଟ ଛାୟା ଭଳି ଗ୍ରାସ କରିଯାଇଛି ତାକୁ—

'ଚନ୍ଦ୍ର ଭଳି ଆକାଶରେ କୋଟି ତାରା ମେଳେ,
ଏକା ଏକା ଯାଏ ମୁଁ ଯେ ନିତି ଗହଳିରେ
ନିରବତା ନାହିଁ କାହିଁ ନିର୍ଜନତା ନାହିଁ
କେଉଁଠାରେ ଲୁଚାଇବି ଏତେ ବଡ଼ ଛାଇ'

(ପୃ-୩୪)

ଶବ୍ଦମାନେ ଧରା ଦେଉ ଦେଉ ହଠାତ୍ ଫିଟି ପଡ଼ନ୍ତି । ହାତ ପାଆନ୍ତାରେ ରୂପଟି ବିପର୍ଯ୍ୟସ୍ତ ହୋଇ ପଡ଼େ ।

'ଶବ୍ଦମାନେ ଫିଟିଗଲେ/ ଖସି ପଡ଼ିଲେ ଅଶ୍ୱାରୋହୀମାନେ କେହି ନ ଥିଲେ କହିବାକୁ/ କେଉଁଠି ପହଞ୍ଚିବାକୁ ହେବ ସେମାନଙ୍କୁ ଯେଉଁମାନେ ଖସିପଡ଼ିଲେ/ ଛୋଟ ଛୋଟ ପୋଲ ତଳକୁ ପାହାଡ଼ୀ ନଈର /ତାକୁ ଧୋଇ ଧାଇ ଶୁଶ୍ରୁଷା କରୁଥିଲେ—ପୂର୍ଣ୍ଣିମା ପାଖାପାଖି ଦି' ତିନିଟା ଜହ୍ନ ଖୁବ୍ ଆଗରେ ଥିଲା ନଦୀର/ ଦର୍ପଣ ଭଳି ଗଣ୍ଡ ଦେଶ / ମୁହଁ ମାଜୁଥିଲେ ଶବ୍ଦ ସବୁ/ ଚଇତିଘୋଡ଼ା ଭଳି/ ନିଶୂନ୍ ରାତିରେ'' (ପୃ- ୩୯-୪୯)

କବିର ସାଧନା— ନାଇଟିଙ୍ଗେଲ୍ ପରି ଆପଣା ରକ୍ତରେ ଫୁଟାଇଥିବା ଗୋଲାପକୁ ଅତି ସନ୍ତ୍ରମତାରେ ଚାଟି ଦେଇଥିଲେ ଶବ୍ଦମାନେ ।

'ଶବ୍ଦମାନେ ଫେରୁଥିଲେ/ ଧୀରେ ଧୀରେ କଦମ୍ ଚାଲିରେ
ରକ୍ତର ଫୁଲତକ ଚାଟି ଦେଇ/ ଚଇତି ଘୋଡ଼ା ଭଳି/ ନିଶୂନ ଢ଼ିରେ'

(ପୃ.- ୪୦)

କେତେବେଳେ କବି ବିଫଳ ଶବ୍ଦ ସହ ଏକାତ୍ମ ହୋଇଛି ତ କେତେବେଳେ ବାବୁ ଚନ୍ଦ୍ରମଣି ସାଜି ଭଦ୍ରକିଆ ଟୋକା (ଅର୍ଥ ମିଳି ଯାଇଥିବା ଶବ୍ଦ)ର ପିଛା ବାହାରି ପଡ଼ିଛି । କେତେବେଳେ ଶବ୍ଦ 'କର୍ତ୍ତା' ଓ କବି ନିଜେ କର୍ମ । ଆଉ କେତେବେଳେ କବି ନିଜେ 'କର୍ତ୍ତା' ଓ ଶବ୍ଦ ହୋଇଛି ତାର 'କର୍ମ' । ବେଳେ ବେଳେ କର୍ତ୍ତା କର୍ମର ଦ୍ୱୈତ— ବିରୋଧରୁ କବି ଚାହିଁଛି ମୁକ୍ତି । ଦୁର୍ଯ୍ୟୋଧନ ଭଳି ବ୍ୟାସ ସରୋବର ଭିତରେ ସୁନାର ଭଅଁରଟିଏ ହୋଇ ଦେବୀଙ୍କ କୋଳରେ ଆଶ୍ରୟ ଲୋଡ଼ିଛି । ଅଥଚ ଶବ୍ଦର ଡାକରାରେ ପୁଣି ପଦାକୁ ବାହାରି ଆସିଛି । ଶବ୍ଦଟିଏ ଖୋଜୁ ଖୋଜୁ ମନ୍ଦାର ଫୁଲିଆ ଓଠ ତା'ର ପଥରରେ ଛେଚି ହେଲା ଭଳି ରକ୍ତାକ୍ତ ହୋଇଛି । (ଅବଚେତନ ମନ ଭିତରେ ଖୋଜିଚାଲିଛି କବି ସେ ନୀରବତାର କେତୋଟି ଧ୍ୱନିକୁ)

'ନଈ କୂଳେ ବହୁକାଳରୁ/ ଚୁ' କରୁଥିବା ରାତିର ବଧୂମାନେ ଛାଡ଼ିଦେଇ ଯାଉଥିଲେ ଶବ୍ଦର ସନ୍ତକମାନଙ୍କୁ କାନ୍ଦିବାକୁ ତାରାଭଳି ଶିଶିର ପାତରେ

ଅଥବା

'କଳା ଲାଞ୍ଜି ଚଢ଼େଇଟି ଭଳି ମୁଁ ହୁଏତ ଉଠି ପାରୁନଥିଲି
ସକାଳର ରଣ— କୁହୁଡ଼ିରୁ
ମନ୍ଦାରର ଓଠ ସବୁ ପଥରରରେ ଛେଚା ହେଉଥିଲା ବେଳେ
ଅମାନିଆ ପବନରେ
ଅତିଶୟ ଲୋଟିବା ଅବସ୍ଥାରୁ ଗଛ ଡ଼ାଳର ? (ପୃ- ୧୧)

ଅଭିବ୍ୟକ୍ତିଟିଏ ନ ପାଇ ପରାଜୟର ଗ୍ଲାନିରେ କବି କେତେବେଳେ ଶିଶୁ ଭଳି କାନ୍ଦି ଉଠିଛି ତ କେତେବେଳେ ଅଭିବ୍ୟକ୍ତିଟିଏ (ଶବ୍ଦଟିଏ ଶିଶୁଭଳି ତା'ର ଦନ୍ତହୀନ ଓଠରେ କାମୁଡ଼ି ବିଦାରି କବିକୁ ଆତୁର କରୁଛି ।) କବିତାଗୁଚ୍ଛର ଛତ୍ରେ ଛତ୍ରେ କବି ସତ୍ତାର ଏଇ ସ୍ୱ ବିରୋଧ (ambivalence) କବିତା ଗୁଡ଼ିକୁ ମହିମାନ୍ୱିତ କରିଛି । ସ୍ୱବିରୋଧର ଦୁଇଟି ଯାକ ପଂକ୍ତି ଏହିପରି—

କରନ୍ତି । ସ୍ଥୂଳ ଜଗତରେ ବାସ୍ତବତାର ଛବି ବିମ୍ବିତ ହୁଏ କଳ୍ପନାର ସୂକ୍ଷ୍ମ ଅବଚେତନର ସ୍ୱଚ୍ଛ ପରଦାରେ; ଦର୍ପଣର ଛଳ ଛଳ ବିମ୍ବରେ । ଏହି ପାର୍ଥିବ ମାୟାଲୋକରେ ଜୀବନ ଭେଟେ ସଂଖ୍ୟାହୀନ ଦ୍ୱନ୍ଦ୍ୱ ଓ ଦ୍ୱିଧା ସମାହିତ ପ୍ରତ୍ୟୟକୁ ।

'ଆବାହନ'-ଏହି ଆଦ୍ୟପର୍ବରେ କାବ୍ୟ ପୁରୁଷଙ୍କୁ ଆହ୍ୱାନ କରନ୍ତି ମହାକାଳର ପ୍ରତିରୂପରେ । ସେଇଠୁ ହିଁ ତାଙ୍କୁ ସନ୍ଦେହ କରନ୍ତି କବି ତାଙ୍କର ଉପସ୍ଥିତି ନେଇ । ଯେ କୌଣସି ମୁହୂର୍ତ୍ତରେ ଖସି ପଳାଇଯିବା ବା ସ୍ୱପ୍ନମୟ ଦେହର ସନ୍ଧି ବିସନ୍ଧିରେ ପୁଣି ଅନ୍ତର୍ହିତ ହୋଇଯିବାର ଆଶଙ୍କାରେ । ସେଇ ଅଥୟ ପୁରୁଷଙ୍କ ସମଗ୍ର ଦ୍ୱନ୍ଦ୍ୱମୟ ସତ୍ତାକୁ ବିମ୍ବିତ କରିବାର ପ୍ରଚେଷ୍ଟା କରିଛନ୍ତି କବି । ଦ୍ୱିଧା ସମାହିତ ଅସମତା ମହାଭାବର ରହସ୍ୟମୟ ସ୍ୱର ଛନ୍ଦରେ ନାଦିତ ହୋଇ କାବ୍ୟାଲୋକ ଆଲୋକିତ ହୋଇଛି । ସେଥିରେ ଅଛି ଚିତ୍ରକଳ୍ପର ଏକ ସୁଶୃଙ୍ଖଳ ସମାରୋହ ।

'ଅଭ୍ୟୁଦୟ' ଏକ ଉତ୍ତରଣର ପର୍ବ । କାଳମହାକାଳ ହିଁ ପ୍ରତିନିଧି ଏଇଠି । ସେ ସ୍ୱପ୍ନ ଦେଖେ ଜାଗ୍ରତରେ । ଧରି ରଖିବାକୁ ଚେଷ୍ଟା କରେ ନିଜ ସାମର୍ଥ୍ୟରେ । କବି କୁହନ୍ତି- ଯାହାପାଇଁ ସ୍ୱପ୍ନରେ ସମୟ ଥାଏ/ଖସିଯାଏ ସତ, ଶୋଇ ନଥାଏ । (ପୃ-୮) । ସ୍ୱୀକାର କରନ୍ତି ସମୟକୁ ଧରି ରଖିବା ସମ୍ଭବ ନୁହେଁ । ବେଳ ଗଡ଼ିଯାଏ ତଥାପି/ଦର୍ପଣ ଶିଳାକୁ ଧରିବାକୁ/ହାତ ନଥାଏ ସ୍ୱପ୍ନର (ପୃ-୧୦) । ସକଳ ନୈରାଶ୍ୟବାଦ ଭିତରେ କବି ଦେଖନ୍ତି ସ୍ଥିତିର ଦୃଶ୍ୟପଟ୍ଟ । ଏକାନ୍ତ ମୁହୂର୍ତ୍ତର ଗର୍ଭପାତରେ ବିଶ୍ୱର ଧ୍ୱଂସାବଶେଷରେ ଏକ ଆକାରହୀନ ଅଥଚ କଳ୍ପିତ ଚିତ୍ରକୁ ପ୍ରତ୍ୟକ୍ଷ କରନ୍ତି ଗଭୀର ପ୍ରୀତିନିଷ୍ଠ ଆତ୍ମଜ୍ଞାନରେ । ପ୍ରୀତିର ସେ ଉପଲବ୍ଧି ପାର୍ଥିବତା ପ୍ରତି ଅନ୍ୟମନସ୍କ କବିଙ୍କୁ ସତ୍ୟାଭିମୁଖୀ କରିଛି । ପଥରର ପାର୍ଥିବତାରେ/ ଲୋଟଣି ପାରାଭଳି ଖେଳୁଥିବା/ଝରଣାର ସ୍ୱଚ୍ଛ ଦର୍ପଣରେ/ସ୍ୱପ୍ନର ଶରୀର ତାର ସତ୍ୟର ବିଗ୍ରହ (ପୃ-୪) ଅର୍ଥାତ୍ ପାର୍ଥିବତାର ପଥର ଭିତରୁ ସ୍ୱଚ୍ଛ ଦର୍ପଣକୁ ଆବିଷ୍କାର କରିବାରେ ହିଁ ଦର୍ପଣ ଶିଳାର ତାତ୍ପର୍ଯ୍ୟ ନିହିତ । ବସ୍ତୁରୁ ବସ୍ତୁତ୍ୱକୁ ମୁକ୍ତି ଦେବା ଏଇଠି ସମ୍ଭବ । ଯଦିଓ ଏହାପରେ ଅକ୍ଷୁର୍ଣ୍ଣ ଦେଖିବାର ମହତ୍ତର ଉପଲବ୍ଧି କବିଙ୍କର ହୋଇଛି ।

ଶିଳାର କଠିନ ସ୍ଥାୟୀତ୍ୱରେ ଦର୍ପଣ ସର୍ବକାଳର ପ୍ରତିନିଧି । ମଣିଷ ନଥାଏ, ପ୍ରତିବିମ୍ବ ନଥାଏ ଅଥଚ ରହିଥାଏ ଦର୍ପଣ ଆଉ କେଉଁ ଦୃଶ୍ୟ ପାଇଁ । ସେଇ ଅପ୍ରତ୍ୟୟ ଦୃଶ୍ୟାନ୍ତରରେ କବିଙ୍କ ଦୃଷ୍ଟିଭଙ୍ଗୀରେ ରୋମାଣ୍ଟିକ୍ ଚେତନାର ଏକ ତରଳ ଆଚ୍ଛାଦନ ବି ଦୃଶ୍ୟମାନ । ସେ ଦେଖନ୍ତି 'ଦେଖୁଥିବା ଦୁହେଁ ଦୁହିଁଙ୍କୁ/ଯେମିତି ନିଜେ ନିଜକୁ/ଯିବାକୁ ହେବ ତ ଏଥର ବାରମ୍ବାର ଦିଗ୍‌ବିଜୟ ପରେ ।' ଅନ୍ତରଙ୍ଗ ସାନ୍ନିଧ୍ୟରେ ଆପଣାକୁ ଗଭୀର ଅନ୍ୱେଷାରେ ଖୋଜିବା ଆତ୍ମ ସଚେତନତା ଛଡ଼ା ଆଉ କ'ଣ ହୋଇପାରେ ? ଏଇ ଆତ୍ମ ସଚେତନତା ହିଁ ଦେଖାଇଦିଏ ନିଜକୁ ତ ପୁଣି ଲୁଚାଇଦେଇପାରେ ସମାଜର କୋଳାହଳରୁ । ଯେଉଁଠି ଆତ୍ମସନ୍ତୋଷ ନିମିତ୍ତ ରତୁର ଚଳମାନ

ଚିତ୍ର ସମୟକୁ ଉପେକ୍ଷା କରେ ସ୍ଥିତିକୁ ଭୃକ୍ଷେପ ନ କରି । ସମ୍ଭାବିତ ଶୃଙ୍ଗାରରେ ଗର୍ଭମୁକ୍ତ ପ୍ରମତ୍ତ ଦୀପାନ୍ୱିତା ପଥର ପରି ସତ୍ୟର ଜଘନ ସନ୍ଧିରେ ତ୍ରିତାପ ତ୍ରିକାଳରେ ସଦା ପ୍ରସ୍ତୁତ ଥାଏ । ସକଳ ପ୍ରୟାସ ସତ୍ତ୍ୱେ ଅବସାଦ ଓ ଅବଶୋଷର ଶେଷ ନଥାଏ । 'ଯେଉଁଠି ରହସ୍ୟ ହିଁ ରସବୋଧର ଅନ୍ତରାୟ ସେଇଠି ହିଁ ଅସନ୍ତୋଷ । ଯାହା ଅଛି ପଥରରେ/ହୃଦୟରେ ବୁଝାମଣା/ରସ ଓ ରହସ୍ୟ/ ମଣିଷ ବୁଝୁନି ତାହା/ଏହାହିଁ ତ ତୁମ ଅବଶୋଷ ?' ଜୀବନ କାଳର ଅଭ୍ୟୁଦୟ ପର୍ବରେ ହିଁ ରହିଛି ଉତ୍ତରଣ, ଅଛି ଦ୍ୱିଧା ଓ ଦ୍ୱନ୍ଦ୍ୱ । ଫୁଲମାନଙ୍କ ସମୁଦ୍ରରେ ସକାଳ ପ୍ରହରରୁ ନିଜ ପରିଚୟ ଖୋଜିବା କମ୍ ଦ୍ୱିଧା କି ? ପୁଣି ସଚେତନ ହୁଏ ସିଂହର ପରାକ୍ରମର ଆସ୍ପର୍ଦ୍ଧାରେ । ଦର୍ପଣ ଶିଳା ଏକ ବସ୍ତୁ ବିଶେଷ । ଏପରି ଏକ ଆଧୁନିକ କାବ୍ୟଶୈଳୀକୁ ଦୀର୍ଘ କବିତା ନ କହି 'ମୁକ୍ତକ' ବା 'ମୁକ୍ତ କାବ୍ୟ' ଭାବେ ନାମିତ କରାଯାଇପାରେ । ଏହା କୌଣସି ଏକ ପୌରାଣିକ ଚରିତ୍ର ବା ସାଧାରଣ ନାୟକ ନାୟିକାଙ୍କ ଶିରୋନାମାରେ ନାମିତ ନୁହେଁ । ସମଗ୍ର କବିତା ସଙ୍କଳନରେ 'ଦର୍ପଣ ଶିଳା' ହିଁ ସେ କାବ୍ୟ ପୁରୁଷ । ବସ୍ତୁ ହିଁ ସ୍ୱୀୟ ଆବେଗ ଓ ବୌଦ୍ଧିକ ବିଚାରକୁ ଉପସ୍ଥାପନା କରେ । ଯେଉଁଠି ସେ ହୋଇଛି ଇଚ୍ଛାର ସାମ୍ରାଜ୍ଞୀ, ସେଇଠି ବି ନାୟିକା ହୋଇଛି (କବିତା-୧୩) । 'କେଉଁ ଗ୍ରହର ପଥର/ତୁ' ଲୋ ଦର୍ପଣୀ ନାୟିକା/ପୃଥିବୀ ତ ? x x x ଯୋଉଠୁ ଦିଶୁଥାଏ ଚଉଦ ଭୁବନ/ଯେଉଁଠାରୁ ସବୁ ନିୟନ୍ତ୍ରିତ/ଏପରିକି ସାଗରର ଉର୍ମିମାଳା/ଦୁକ୍ ଦୁକ୍ ବୁକୁର ସ୍ପନ୍ଦନ ।'

ଏଇ ଆଲୋଚ୍ୟ ପର୍ବରେ ଚିତ୍ରକଳ୍ପ ଅତ୍ୟନ୍ତ ଆକର୍ଷଣୀୟ । କବି ତାଙ୍କର ଶବ୍ଦର ଗହଣାରେ ଅକୃପଣ ଭାବରେ ସଜେଇ ଦିଅନ୍ତି କାବ୍ୟ ନାୟିକାକୁ । ସିଏ ବାଟ କଢ଼େଇନିଅନ୍ତି ସେଇ ନାୟିକାମାନଙ୍କୁ ସ୍ୱର୍ଗକୁ । ସେଇମାନଙ୍କ ଶୋଭଯାତ୍ରାରୁ ଦୂରେଇ ଯାଆନ୍ତି କବି । କବି ତାଙ୍କର ମାନସ ଇନ୍ଦ୍ରପୁରୀରୁ ଦୂରେଇଯାଇ ନିର୍ବିଘ୍ନରେ ସେମାନଙ୍କୁ ସ୍ୱାଧୀନତା ଦେବା କ'ଣ କମ୍ ଦାତାପଣ !

ଆଧୁନିକ ଜଟିଳ ମାନସିକତାରେ କାବ୍ୟପୁରୁଷ ଅସମୟର ଧୂର୍ତ୍ତତାକୁ ଧରିବାକୁ ଯାଇ ଦ୍ୱନ୍ଦ୍ୱରେ ପଡ଼ନ୍ତି । ଧୂର୍ତ୍ତ-ସମୟ ନା ଭ୍ରମର ? ଦେହ ଚେତନାର ଉପଲବ୍ଧିରେ ଅନ୍ତରାୟ ସମୟକୁ ଦାୟୀ କରନ୍ତି । ରସମତ୍ତ, ରହସ୍ୟବାଦୀ ଭ୍ରମରର ବୋକାପଣରେ ଅଛି ଆତ୍ମଝାସ । ପଦ୍ମ କୋରକରେ ତ ପୁଣି କଣ୍ଟକ ବୃକ୍ଷରେ ମୃତ୍ୟୁକୁ ପ୍ରତ୍ୟକ୍ଷ୍ୟ କରୁଛି ସେ । ଚତୁରୀ ଚିରକୁମାରୀ ଫୁଲର ମାୟାରେ ବନ୍ଦୀ ସେ । (କବିତା ୧୬, ପୃ-୩୫) ଏମିତି ଦିନେ/ମାଟିର ବିବରରୁ ଖସି/ ଭାସି ଭାସି ଆସିଲା ସେ/ କଣ୍ଟକ ବୃକ୍ଷକୁ/ ଯେଉଁଠି ବିଦ୍ଧ ହୋଇ ଜଳୁଥିଲେ / ସହସ୍ର ଆଖିଭଳି / ଅନେକ ଅନ୍ଧ ଭ୍ରମର ।

'ଅବକ୍ଷୟ-ଅସ୍ତିତ୍ୱ' ଓ ଆକାଂକ୍ଷାର ଉଦ୍‌ଜୀବନରେ କବିତାର ଅଭିବ୍ୟକ୍ତି ଏଇଠି ଇଙ୍ଗିତମୟ । ସାର୍ବଜନୀନ ଉପଲବ୍ଧି ପାଇଁ ଆତ୍ମସମର୍ପଣରେ ନାହିଁ ଆତ୍ମଗ୍ଲାନି ଅଥଚ ସେଇଠି ଅଛି ବିବର୍ତ୍ତିତ ସମୟ (ଶିଉଳି) ପ୍ରତି କଟାକ୍ଷ, ଦୁଃଖ ବ୍ୟକ୍ତ କରିବାର ଚମତ୍କାରିତା

ସହ ସମର କୌଶଳର ସଚଳତା । ଶବ୍ଦରେ କହନ୍ତି-'ମୁଁ ପୋଲଟିଏ/ ନା ନୌକାଟିଏ/ କିବା ଚିରକାଳ ସେଇ ରାସ୍ତାଟିଏ/ ଯେ ବରାଭୟ ପାଇ/ ହାତ ଯୋଡ଼ିଛି ଅବା/ ଯନ୍ତ୍ରଣାର ଧନୁରେ ତୀର ସଳଖୁଛି/ ଢଳ ଢଳ ଶିଉଳି ଡୋଳାକୁ... ।' ସୁଖକୁ ପରସ୍ପର ଭିତରେ ବାଣ୍ଟି ଦେବାରେ ଯେମିତି ମହାନନ୍ଦଥାଏ ସମଦୁଃଖି ହେବା ଅନୁଭବରେ କିଛି କମ୍ ସାର୍ଥକତା ନଥାଏ । ଯାହାହିଁ ରତ୍ନାକରରୁ ଆଦି କବିରେ ରୂପାନ୍ତର ହେବାର ପ୍ରକ୍ରିୟା । (ପୃ-୪୯) । ଆମ ଶୂନ୍ୟବାଦୀ ସନ୍ଥ ସାହିତ୍ୟର ସୃଜନ କ୍ରିୟାରେ ଆସ୍ଥାବାନ କବି । ଯେଉଁଠି ସବୁରି ଅଲକ୍ଷ୍ୟରେ ହେଲେ ବି ସୃଜନ ଚକ୍ରରେ ପୁନଃ ପୁନଃ ସାମ୍ନା କରେ ସୃଷ୍ଟିର ନିଶ୍ଚିତ ସମ୍ଭାବନା । ପାର୍ଥିବ ଜଗତରେ ଏଇ ମହାଜାଗତିକ ରୀତି ଅବିଶ୍ୱାସନୀୟ ଓ ରହସ୍ୟମୟ ମନେହେଲେ ହେଁ ସେଇ ବିଶ୍ୱାସର କଳ୍ପନା ପ୍ରାଣମୟ ଓ ବାସ୍ତବ । ମଞ୍ଜି ପୁଣି ଖୋଜା ପଡ଼େ/ ଯିଏ ରଖି ପାରିଥାଏ/ ମହିମା ତା ଶଙ୍ଖ, ଚକ୍ର, ଗଦା ଓ ପଦ୍ମର/ ଅଶ୍ଲୀଳ କୋଳାହଳ/ ଶୂନ୍ୟର ପ୍ରାର୍ଥନା ସକଳ/ ଦ୍ୱନ୍ଦ୍ୱରେ ପଡ଼ିଲେ ବି କବି ସକଳ ନାସ୍ତି ସୂଚନା ସତ୍ତ୍ୱେ ବି ପୁନଃଜନ୍ମର ସମ୍ଭାବନା ଦେଖନ୍ତି । 'ଚେଇଁ ଉଠିବ ଜଗତ/ ଶିଶିରର ସଞ୍ଜୀବନିରେ/ ହସି ଉଠିବ ମଲା ଘାସ' (ପୃ-୬୨) । ପୁଣି-ବଳିଦାନର କୁଆଁ ଧ୍ୱନିରେ/ ଫାଟି ପଡ଼ିବ ଗର୍ଭଗୃହ, ଅନାହତ ସନ୍ଧି ମୁହୂର୍ତ୍ତରେ । ବାଲିଗରଡ଼ାକୁ ଶାଳଗ୍ରାମ କରିବା ଭିତରେ କବି ଅବକ୍ଷୟରୁ ଫେରିପଡ଼ି ପୁନଃ ସୃଜନର ଆଶା ବାନ୍ଧନ୍ତି ।

ସମଗ୍ର ବିଶ୍ୱ ନିଥର ହୋଇଗଲାବେଳେ ସମଷ୍ଟିରୁ ବାହାରି ଆସି ବ୍ୟକ୍ତି ତାର ସତ୍ତାକୁ ଅନୁଭବ କରିବା ବୋଧେ ଆତ୍ମସଚେତନତା । ଅନ୍ତର୍ମୁଖୀ ଭାବରୁ ପୁଣି ଉର୍ଦ୍ଧ୍ୱମୁଖୀ ହେବାର ପ୍ରୟାସ କରେ ସେତେବେଳେ ସେ । ଅଦୃଶ୍ୟ ମହାଜାଗତିକ ଶକ୍ତି ନିକଟରେ ବିହ୍ୱଳ ପଣରେ କେବେ ପ୍ରତ୍ୟକ୍ଷ କରେ ତ ଅଶ୍ରୁର ତର୍ପଣରେ ନିଜ ଭୁଲର ସ୍ୱୀକାର କରି କେବେ ଶାପମୁକ୍ତ ହୁଏ । ସାମ୍ପ୍ରତିକ ସମୟର ବିଶ୍ୱାସହୀନତା ଓ କପଟତା ଶାଣିତ ଭାଷାରେ ବ୍ୟକ୍ତ ଏଇ 'ଅବକ୍ଷୟ' ପର୍ବରେ । ଏପରିକି ଏହାର କୌଣସି ପ୍ରତିକାର ନ ଥାଇ କାବ୍ୟପୁରୁଷ ଅଦୃଶ୍ୟ ହୋଇଯାଏ ଓ ଘୋଷଣା କରେ-'ଏଠି ଆଉ ରାତି ପାହିବ ନାହିଁ/ କି କ୍ଷତ ବିକ୍ଷତ ଯନ୍ତ୍ରଣାରୁ ମୁକ୍ତି ମିଳିବ ନାହିଁ ।' ଏଥିରେ ଆମ ଜୀବନବୋଧ ଦୁଇ ଶ୍ରେଣୀର, ଗୋଟିଏ ହେଲା ସାଧାରଣ ମଣିଷର ଓ ଅନ୍ୟଟି ମଣିଷୋତ୍ତର (ବୋଧେ ଈଶ୍ୱର-ସ୍ଥଳବିଶେଷରେ ମୃତ୍ୟୁ ଚେତନାର ସ୍ଥିତି ଏଇ ଦୁଇଟି ଶ୍ରେଣୀ ନିକଟରେ ଭିନ୍ନ ଭାବରେ) ।' ସାଧାରଣ ଲୋକଟି ଭଳି ସେ ଆସେ ଓ ଦେଖେ ଦୈନନ୍ଦିନ ସେବା କରୁ କରୁ/ପହଡ଼ ପଡ଼ିଯାଏ/ ଅବଶିଷ୍ଟ କାଳ ଥାଉ ଥାଉ । ଅନ୍ୟ ନିକଟରେ ଆସିବାର ଅଛି ସ୍ୱପ୍ନରେ, ଯାହାର ଜନ୍ମ କି ମରଣ ନାହିଁ । କ୍ଷୟ, ବୃଦ୍ଧି କିଛି ନାହିଁ ।

ଅବକ୍ଷୟୀ ମାନସିକତାରେ ନିନ୍ଦୁକମାନେ ଯେତେବେଳେ ସର୍ପିଳ ଉନ୍ମାଦନାରେ ଏକ ଶ୍ୟାମଳ ଦେହକୁ ଦଂଶନ କରନ୍ତି ସେତେବେଳେ ଋତୁ ବଦଳାଏ ତା'ର ନିର୍ମୋକ, ସମାଜ ରହେ ନିର୍ବାକ୍, ନିଷ୍କ୍ରିୟ । ଶୋକାଚ୍ଛନ୍ନ ମଣିଷର ଅଭିଳାଷ ହୋଇଯାଏ ଚରିତାର୍ଥ ଓ ଶୁଣେ

ଅଦୃଶ୍ୟରୁ ଶେଷ ଶବ୍ଦ ଓ ଶେଷ ଉଚ୍ଚାରଣ । ଅବକ୍ଷୟର ଚରମ ମୁହୂର୍ତ୍ତରେ ପୁଣି ଆଶ୍ୱାସନା ଓ ପ୍ରତିଶ୍ରୁତି ଜାର ମହୁରା ଭଳି ଏଇ ସଂସାରରୁ ଶୋଷିନେବ ସମସ୍ତ ନୀଳ ବିଷ ଏବଂ ଅବସାଦରେ ଆଖିର ଲୁହରେ ଧୋଇଦେବ ଏଇ ବସୁନ୍ଧରାର ସମସ୍ତ ଶୋଣିତ ।

'ଅପବର୍ଗ'-ମୋହମୟ ସଂସାରରୁ ବିଦାୟବେଳା ଇଏ । ସମସ୍ତ ପାର୍ଥିବ ମାନବୀୟ କର୍ମସମାପନ ପରେ ଅବଶିଷ୍ଟ ଆୟୁଷରୁ ପରିତ୍ରାଣ ପାଇଁ ଛଟପଟ ହୁଏ । ଆସନ୍ତା କାଲି ପାଇଁ ପଡ଼ି ରହିବ ଦେହ/ସମ୍ଭବ ହେଉନଥିବ ଘଟାନ୍ତର/ପଡ଼ି ରହିଥିବ ଅଶାନ୍ତ ଦେହ/ଯୁଗ ବିତିଯିବ (ପୃ-୮୪) । ଯେତେବେଳେ ସେ ସମ୍ମୁଖୀନ ହୁଏ ଚରମ ଉପଲବ୍ଧିରେ ସେତେବେଳେ ମୁକ୍ତିର ଏରୁଣ୍ଡି ବନ୍ଧକୁ ଡେଇଁ ଯିବାକୁ ସାହସ ବାନ୍ଧିପାରେନା କାବ୍ୟ ପୁରୁଷ । ସତର୍କ କରାଇଦିଏ ମାୟାମୟ ପୃଥିବୀର ପୁନରାବୃତ୍ତିରା ଭୋଗରୁ ଖସିଯାଇ ମହର୍ଗରୁ କାନ୍ତାରରେ ପଡ଼ିବାର ଭୟ ବି ସେଇଠି । ଅଜନ୍ମା ଅଜରା ଓ ଅମୃତ୍ୟୁର ଲୀଳାଭୂମି ହୁଏତ ସ୍ୱର୍ଗ । ସେଇଠି ଥାଏ ସବୁଜ ଜୀବନ, କେବଳ ଚିର ସବୁଜ ଜୀବନ । ତା'ର କବିପଣରେ ସିଏ ଥାଏ ସେଇଠି, ସୁଖରେ ଥାଏ । ସ୍ୱର୍ଗଠାରୁ ମହନୀୟ ସେଇ ମାନସ ଭୂମି । ସନ୍ତୁଳନର ଭୂମି ସିଏ । ସେଇଠି ପ୍ରଳୟ ଅଛି, ଅଛି ବି ପ୍ରହେଳକା ଓ ପରମ ସୁଖ । ଅତଏବ ପରିତ୍ରାଣ ପାଇଁ ଯେଉଁ ଅନ୍ତିମ ଉଦ୍ୟମ ହୁଏ ତା'ର ସମାପ୍ତି ଘଟେ ଶ୍ରୀ ଜଗନ୍ନାଥ ଓ ଶ୍ରୀକୃଷ୍ଣ ଚେତନାର ପଟ୍ଟଭୂମିରେ । ଜଟିଳ ଦର୍ଶନ, ନିର୍ଗୁଣ ଓ ନୈର୍ବ୍ୟକ୍ତିକ ଚେତନାରେ କବି ହରିହରଙ୍କ କାବ୍ୟ ମାନସ ପ୍ରସାରିତ ଆମ ମହାନ ଭାରତୀୟ ତଥା ଉତ୍କଳୀୟ ସଂସ୍କୃତିର ପଥ ଦେଇ । ଏହି ଦୀର୍ଘ କବିତାରେ ଏକ ଜଡ଼ ବସ୍ତୁଟି ମାଧମରେ କାବ୍ୟିକ ଆବେଗ ପ୍ରବଣତା ଓ ନୈତିକତାର ବିସ୍ତରଣ ହେଉଛି ଆମ ଦୀର୍ଘ କବିତା ଗୁଡ଼ିକ ଭିତରେ ଏକ ବ୍ୟତିକ୍ରମ । ମୁଦ୍ରଣ ପରିପାଟୀ ଓ ନିର୍ଭୁଲ ଅଙ୍ଗ ବିନ୍ୟାସରେ କାବ୍ୟଗ୍ରନ୍ଥଟି ସୁନ୍ଦର ହୋଇଛି ମଧ୍ୟ । ସମ୍ପ୍ରତି ଯେଉଁ କେତୋଟି ନୂତନ ପ୍ରକାଶକ ଆଧୁନିକ ମୁଦ୍ରଣ କୌଶଳରେ ସୁନ୍ଦର ପୁସ୍ତକମାନ ପ୍ରକାଶ କରୁଛନ୍ତି ସେମାନଙ୍କ ଭିତରେ 'ଆର୍ଯ୍ୟ ପ୍ରକାଶନୀ' କଟକ, ସ୍ୱୀୟ ମୌଳିକତା ପ୍ରମାଣ କରିଛନ୍ତି ।

'ଦର୍ପଣ ଶିଳା' ତାର ଯଥୋଚିତ ପାଠକୀୟ ସ୍ୱୀକୃତି ଲାଭ କରିବ ଓ ଏହାର ଅନନ୍ୟ ଦିଗନ୍ତରେ ଏକ ଆଲୋକିତ ଆହ୍ୱାନର ଆଦର ଲାଭ କରିବ ବୋଲି ଆଶା କରିବା ଯଥାର୍ଥ ବୋଲି ମନେହୁଏ ।

ବୀରସୁରେନ୍ଦ୍ର ସାଏ ନଗର
ଭୁବନେଶ୍ୱର-୪



# ହରିହର ମିଶ୍ରଙ୍କ ଦର୍ପଣ ଶିଳା

*ପ୍ରଫୁଲ୍ଲ କୁମାର ମହାନ୍ତି*

ବିଶ୍ୱାସ ଯେଉଁ ସଭ୍ୟତାରେ ଶ୍ୱାସରୁଦ୍ଧ, ସେଠି କାବ୍ୟ ନୈତିକତା କୌଣସି ନୂତନ ଶିହରଣ ଆଣେ ନାହିଁ । ତଥାପି ଯେଉଁମାନଙ୍କ ପାଇଁ ବିଶ୍ୱାସ ମରିନାହିଁ, ସତ୍ୟ ମରିନାହିଁ, ସେମାନଙ୍କ ପାଇଁ 'ଦର୍ପଣଶିଳା' କିଛି ନୈତିକ ଶିହରଣ ଆଣେ ଯାହା ସ୍ପନ୍ଦିତ ସ୍ଥିର ହୋଇଯାଏ ନୀରବତାରେ । ହରିହର ମିଶ୍ର ଆଗରୁ 'ଶଙ୍ଖନାଭି', 'ଅକ୍ଷମ ଦେବତା', 'ଚାହାଁଣି ମଣ୍ଡପ' ଓ 'ଚନ୍ଦ୍ରବିମ୍ବ' ଭଳି କବିତା ସଙ୍କଳନରେ ଶବ୍ଦମାନଙ୍କର ଅର୍ଥ ସଂଘାତକୁ ଶବ୍ଦମୟ ଦ୍ୟୁତିରେ ପ୍ରକାଶ କରିଥିଲେ । 'ଦର୍ପଣଶିଳା'ରେ କେବଳ ଦ୍ୟୁତି : ଅର୍ଥ ଓ ଧ୍ୱନି ନିଶବ୍ଦରେ ସ୍ପନ୍ଦିତ କରନ୍ତି ପାଠକକୁ । ଏହି କବିତା ଗୁଚ୍ଛ ଚାରୋଟି ବିଭାଗରେ ଗତିଶୀଳ । (୧) ଆବାହନ, (୨) ଅଭ୍ୟୁଦୟ, (୩) ଅବକ୍ଷୟ, (୪) ଅପବର୍ଗ । କବି ସୂଚେଇ ଦେଇଛନ୍ତି ଯେ 'ଦର୍ପଣଶିଳା' ଏକ ସଙ୍କଳନ ନୁହେଁ । ଏହା ଏକ କାବ୍ୟ ଏବଂ ଏଥିରେ ସନ୍ନିବେଶିତ ପ୍ରତ୍ୟେକ 'କାବ୍ୟାଂଶ' ସ୍ୱତନ୍ତ୍ର କବିତା ହେଲେ ମଧ୍ୟ 'ଦର୍ପଣ ଶିଳା' ଭିତରେ ପରସ୍ପର ସହିତ ସମ୍ପର୍କିତ । ସେହିପରି 'ଆବାହନ-ଅଭ୍ୟୁଦୟ-ଅବକ୍ଷୟ-ଅପବର୍ଗ' ପରସ୍ପର ସହିତ କେବଳ ସମ୍ପର୍କିତ ନୁହନ୍ତି ବରଂ ଏକ ଜୀବନଧାରା ପରି ଆରମ୍ଭରୁ ଶେଷଆଡ଼କୁ ବୋହିଯାନ୍ତି । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ, କାଳରୁ ମହାକାଳ ପର୍ଯ୍ୟନ୍ତ, ବିଳାସରୁ ବୈରାଗ୍ୟ ପର୍ଯ୍ୟନ୍ତ ସବୁ ଭାବ ବିଭାବକୁ ଛୁଇଁଯାଏ ଏହି ଧାରା । ବ୍ୟକ୍ତି ଭାବେ ମଣିଷର ଜନ୍ମ-ମୃତ୍ୟୁ ଓ 'ଜଗନ୍ନାଥ' ବା ଅମର, ଅକ୍ଷୟ, ଈଶ୍ୱରସତ୍ତା, ଉଭୟ ଏହି 'ଦର୍ପଣ ଶିଳା'ରେ ପ୍ରତିଫଳିତ । ଅର୍ଥାତ୍ ଏକକ ଜୀବନ ଓ ମହାଜୀବନ, ଋତୁ ଚକ୍ରର ବର୍ଷ ଓ ଅନନ୍ତ ମହାକାଳ, ଉଭୟ ଏହି ଦର୍ପଣଶିଳାରେ ଦେଖାଯାନ୍ତି । ମର-ଅମର, କୈଶୋର-ଯୌବନ ବାର୍ଦ୍ଧକ୍ୟ-ମୃତ୍ୟୁର ଚକ୍ର ଅସରନ୍ତି ପ୍ରକ୍ରିୟାରେ ଚାଲିଥାଏ । ଏହି କାବ୍ୟ ତେଣୁ ଆରମ୍ଭ ହୁଏ ଦର୍ପଣ ଦେଖାରୁ । ଦର୍ପଣ ଯଦି ବାସ୍ତବ ସୃଷ୍ଟି କରେ ନାହିଁ, କେବଳ ପ୍ରତିଫଳନ କରେ, ତେବେ ଟି.ଭି. ପରଦା ପରି ଅନ୍ୟ ପ୍ରଯୋଜିତ କାର୍ଯ୍ୟକ୍ରମ ନୁହେଁ ଏହି ଦର୍ପଣ ଛବି । ପ୍ରତ୍ୟେକ ବ୍ୟକ୍ତି ତାର ନିଜର ଦର୍ପଣ ଧରେ । ବିଶ୍ୱରୂପୀ ଜଗନ୍ନାଥ ହୁଏତ ସମସ୍ତ ବିଶ୍ୱ ସେଠି ଦେଖିପାରନ୍ତି କିନ୍ତୁ ମଣିଷ ତାର ନିଜ ପୃଥିବୀର କାନିଏ ଦେଖିବ, ତାର ନିଜ ଚଲାପଥର ମୂଲ୍ୟବୋଧମାନଙ୍କରେ । ନିଜ ଛବିକୁ ନିଜେ ତଉଲିବ ତାର ବିଶ୍ୱାସକୁ ନେଇ,

ତାର ନିଜ ନୀତିବୋଧ ଓ ପରିସ୍ଥିତିକୁ ନେଇ କାରଣ ପ୍ରତ୍ୟେକ ବ୍ୟକ୍ତି ତାର ନିଜର ଦର୍ପଣଶିଳା ସୃଷ୍ଟି କରିବ ନିଜର ଜୀବନଚର୍ଯ୍ୟାରେ ।

'ଯାହାର ଯୋଉଥିରେ ରୁଚି ତାର ସମୟ ସେହି ବାଟରେ ଚାଲୁ ତମର କି ଆମର, କଣ କହିବାର ଅଛି ସେଥିରେ ସମୟର କିଛି କହିବାର ଅଛି ତ କହୁ ।' (ପୃ-୭)

ଏହି ବିଶ୍ୱାସରେ ଈଶ୍ୱର ମଧ୍ୟ ନିଜ ରୁଚିର ପୃଥିବୀରେ ବିଚରଣ କରନ୍ତି । ତାଙ୍କର ଦର୍ପଣଶିଳା ରହିଛି 'ବାଇଶିପାହାଚ'ର ସାତ ପାହାଚତଳେ । ଯେଉଁଠି ମହାବାହୁ ନିଜର ଚଉଦ ଭୁବନର ବିଶ୍ୱରୂପ ଦେଖନ୍ତି । କିନ୍ତୁ ଜଗନ୍ନାଥ ମଧ୍ୟ ନିଜକୁ ଦେଖୁ ଦେଖୁ 'ଚେତନାର ଠଣା ଦେଇ' ଖସିଯାନ୍ତି 'ଭୋଗ ମୁହୂର୍ତ୍ତରେ' । ଅନୁରାଗର ମୁଦ୍ରା ବିରାଗରେ ଅନ୍ୟବ୍ରତ ଧାରଣ କରେ । ଲକ୍ଷେ ରୂପରେ କୃଷ୍ଣ (ଜଗନ୍ନାଥ) ଚମକନ୍ତି ଏ ପୃଥିବୀରେ କିନ୍ତୁ ରାଧାର ବଂଶୀ ଆଉ ବଜାନ୍ତି ନାହିଁ । ପ୍ରେମର ଯମୁନା ପୌରୁଷରେ ବିସର୍ଜିତ ହୁଏ; ରାଷ୍ଟ୍ର, ନ୍ୟାୟ, ରାଜନୀତି, ସମାଜ ବ୍ୟବସ୍ଥା ଓ ବିଶ୍ୱ ଜୀବନର ଆହ୍ୱାନରେ ବଂଶୀ ଆଉ ବାଜେ ନାହିଁ । ଜୀବନର ଅତଳ ସତ୍ତା ଛାଡ଼ିଯାଏ, ପ୍ରେମ ଓ ମିଳନର ପର୍ଯ୍ୟାୟକୁ । ତେଣୁ ସେହି ପ୍ରେମ ଖୋଜି ଖୋଜି ଆଜି ବି 'ଅନ୍ଧାରରେ ସୁ ସୁ ଗର୍ଜୁଥାଏ' ପ୍ରାଣର ମହାସମୁଦ୍ର ।

ପବନରେ ଥିରି ଥିରି ଶୁଣୁରିରେ ଡାକୁଥାଏ... 'ବଂଶୀ ଛାଡ଼ି କି ଯଶ ମିଳିଲା
ହେଲ ଶଙ୍ଖଚକ୍ର ହସ୍ତ ଆହେ, ରାଧାନାଥ-ହେଲ ଗଦା ପଦ୍ମ ହସ୍ତ !'

ତେଣୁ ମଣିଷ ସେଇ ପଳାତକ ପ୍ରେମର ସର୍ତ୍ତ ଖୋଜି ଦୁଃଖୀ । ଅପ୍ରମିତ ସ୍ୱପ୍ନର ତାଡ଼ନାରେ ସେ ସମୟର ନାଚ ଭିତରେ ହଜିଯାଏ । ସମ୍ପର୍କ ଧୀରେ ଧୀରେ ସଂକ୍ଷିପ୍ତ ହୁଏ, ତା'ପରେ ଧ୍ୱଂସ ପାଏ :

'ଅବଶିଷ୍ଟ ରହିଯାଏ 'ମୁଁ' ଟିଏ
ଯାହା ତୁମ ଭଳି ଦିଶୁଥାଏ
ତା' ଦିଶେ ମୋ ଭଳି ଶୂନ୍ୟ ଦର୍ପଣରେ
ଯଦିଓ ତା' ଆକାର ନ ଥାଏ ।'

ସମ୍ପର୍କର ମାୟା ଭିତରେ ସମ୍ପର୍କ ନଥାଏ । ନିରର୍ଥକ ଝାଳ ବୁହାରେ ସମୟ ବିତିଯାଏ । ଏହି ସମ୍ପର୍କର ମାୟାବାସ୍ତବତା ସ୍ୱୀକାର କରିନପାରି ମଣିଷ ଧନ୍ଦି ହୁଏ । ସେ ଜାଣିପାରେ ନାହିଁ, ଜୀବନଟା କ'ଣ, ସମ୍ପର୍କଟା କ'ଣ, ବଂଶୀର ରାଧା ସ୍ୱପ୍ନ କ'ଣ ? ଏତେଗୁଡ଼ିଏ ଗ୍ୟାଲେରୀ ଦର୍ଶକଙ୍କ ଗହଳିରେ ବ୍ୟକ୍ତି ଜାଣିପାରେ ନାହିଁ କ'ଣ କରିବ ବା କ'ଣ ହେଉଛି । କ'ଣ କାହାର ଇଙ୍ଗିତରେ ଘଟିଯାଉଛି ସବୁ, ନା ସେ ନିଜେ କରୁଚି କିଛି ? ନିଜର କର୍ତ୍ତାପଣ ସନ୍ଦିଗ୍ଧ ହୁଏ ।

ଦିଗ୍‌ବିଜୟର ମୁହଁସବୁ ଅଚିହ୍ନା ଲାଗେ ନିଜକୁ । ତଥାପି ମଣିଷ ସଂଘର୍ଷ କରି ଚାଲେ । ଗୀତା ତତ୍ତ୍ୱର ସାରକଥା ଏହି ଆତ୍ମପ୍ରସ୍ତୁତି ସମସ୍ତ ସଂଘର୍ଷ ପାଇଁ । ଆନନ୍ଦ ନିରାନନ୍ଦର ଊର୍ଦ୍ଧ୍ୱକୁ ଉଠିବା ପର୍ଯ୍ୟନ୍ତ ସମସ୍ତ ସଂଘାତ ସହିବାକୁ ପଡ଼େ । କିନ୍ତୁ ବିଚରା ମଣିଷ, ଅସହାୟ ମଣିଷ ଚକ୍ର କାଟେ ନିଜର ଛୋଟିଆ ପରିଧିରେ । ବାରମ୍ବାର ଠକି ହୋଇଯାଏ, ପୁରୁଷାକାର । ଦର୍ପଣରେ ଅନେକ ପ୍ରଲୋଭନ, ଭ୍ରାନ୍ତ ବାସ୍ତବରେ ଉଦ୍‌ଭ୍ରାନ୍ତ ହୁଏ ମଣିଷ । ଏବେ ଏବେ ଯିଏ ରାଜଲକ୍ଷ୍ମୀ, ସେ ଅଚେତ ହୋଇପଡ଼େ, ଲୁଟିଯାଏ ବାଉନ ଭଣ୍ଡାର ଗୋଟିଏ ପଲକରେ । କିଏ କରେ ଏ ସବୁ ? ଏଇ ଦର୍ପଣ ଶିଳାର ପୃଥିବୀ ? ନା ଇଚ୍ଛାମୟ ମହାକାଳ ? ହରିହର ମିଶ୍ରଙ୍କ ପାଇଁ ଏଇ ଦର୍ପଣ ଶିଳାର ପୃଥିବୀ ହିଁ ସବୁ ମାୟା, ପ୍ରଲୋଭନର ସୁନ୍ଦରୀ ନାୟିକା । ସାଗର ମନ୍ଥନର ଦର୍ପଣ-ଶିଳା ସେ ନୁହେଁ; ସେ ହେଲା ଆମର ପୃଥିବୀ, ଆମର ସମ୍ପୂର୍ଣ୍ଣ ଜୀବନ ଇଲାକା ଯେଉଁଠି ଦେଖାଯାଏ ।

'ପୃଥିବୀ ତ
ଯୋଉଠୁ ଦିଶୁଥାଏ ଚଉଦ ଭୁବନ
ଯେଉଁଠାରୁ ସବୁ ନିୟନ୍ତ୍ରିତ
ଏପରିକି ସାଗରର ଉର୍ମିମାଳା
ଦୁକ୍ ଦୁକ୍ ବୁକୁର ସ୍ପନ୍ଦନ ।'

ଏଇ ବିଶ୍ୱମଞ୍ଚରୁ, ଯେଉଁଠି ସବୁ ଦେଖାଯାଏ, ସବୁ ଅନୁଭୂତିର ଦୃଶ୍ୟାନ୍ତର ଘଟୁଥାଏ ସତେ ଯେମିତି କେଉଁ 'ବିଶ୍ୱାସର ମାୟା ଯଷ୍ଟି'ର ନିର୍ଦ୍ଦେଶରେ ସବୁ ବଦଳୁଥାଏ, ଯୁଦ୍ଧରୁ, ଅନ୍ଧ କୂପରୁ ପ୍ରତିବିମ୍ବ ପର୍ଯ୍ୟନ୍ତ ଲମ୍ବି ଯାଇଥାଏ ପ୍ରତିଦ୍ୱନ୍ଦ୍ୱୀମାନଙ୍କର ପୌରୁଷର ଇସ୍ତାହାର । ବିଶ୍ୱାସକୁ ନେଇ ଯୁଦ୍ଧ ଘଟିଛି । ବିଗ୍ରହ ସ୍ଥାପନା ହେଉଛି । ପୂଜା-ଅର୍ଚ୍ଚନା ହେଉଛି । ପୁଣି ମନ୍ଦିର ଭାଙ୍ଗିଛି । ଗୋଷ୍ଠୀ ବିଶ୍ୱାସ ତୁଟିଛି । ଦଧିନଉତିରୁ ଡେଇଁ ପଡ଼ି ଈଶ୍ୱରମାନେ ପୃଥିବୀରେ ବୁଲିଛନ୍ତି । କବି, ଗାୟକ, ନଟ, ପ୍ରଚାରକ, ସନ୍ନ୍ୟାସୀ, ତାନ୍ତ୍ରିକ ବେଶରେ ସେମାନେ ବଣପାହାଡ଼, ସଭ୍ୟ ସହର ଘୂରିଛନ୍ତି, ପାଟ ପିନ୍ଧିଛନ୍ତି, କଳାମଲ୍ଲୀମାଳ ଧାରଣ କରିଛନ୍ତି । ଅନ୍ୟ ଭାଷାରେ ଧର୍ମଧାରଣା ଓ ସାମ୍ପ୍ରଦାୟିକ ଗୋଷ୍ଠୀ ବିଶ୍ୱାସରୁ ଉଠି କୃଷି, ସଂସ୍କୃତି ଓ ନୂଆ ବିଶ୍ୱାସ ଅନ୍ୱେଷଣରେ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ପହଞ୍ଚି ଯାଇଛନ୍ତି । କିନ୍ତୁ 'ସୂର୍ଯ୍ୟାସ୍ତ ହିଁ ସୂର୍ଯ୍ୟୋଦୟ' ଶ୍ରମିକର ସ୍ୱପ୍ନ ଅଭିନୟରେ । କବି ମଧ୍ୟ ଏହିପରି ସ୍ୱପ୍ନ ଅଭିନୟ କରେ । ତା ପୂର୍ବରୁ ସନ୍ନ୍ୟାସୀ କରୁଥିଲା ଜୀବନ ବିଶ୍ୱାସର ସ୍ୱପ୍ନ ଅଭିନୟ । ଜୀବନର 'ଅଭ୍ୟୁଦୟ' କେବଳ ଏଇ ସ୍ୱପ୍ନ ଦେଖା ! ଯିଏ ଯାହାର ସ୍ୱପ୍ନ ଦେଖିବେ ବିଭୋର ହୋଇ । ନିଜ ଦର୍ପଣ ଶିଳାକୁ ଉଦ୍ଭାସିତ କରିବେ ନିଜ ଆତ୍ମାର ପ୍ରତିଫଳନରେ । ତେଣୁ କବି ବା ସନ୍ଥ ସମସ୍ତଙ୍କ ପାଇଁ ବିଶ୍ୱାସ

ଖୋଜିପାରିବ ନାହିଁ । କବି ମଧ କହିବ ତାର ନିଜର କଥା । ଅନ୍ୟର ପ୍ରତିନିଧି କିମ୍ବା ଉତ୍ତରଣର ମଧ୍ୟସ୍ଥି ହୋଇପାରିବ ନାହିଁ ।

'କବିର ମଧ୍ୟସ୍ଥି ବା ମନ୍ତ୍ରର ପୁରୋହିତୀ
ସବୁ ବାଜେ କଥା,
ସେମାନେ ଫେରିଯାଆନ୍ତୁ ତାଙ୍କ
ଆଟୋପ ଓ ଶୋଭାଯାତ୍ରା ନେଇ ସ୍ୱର୍ଗକୁ
ଆଦିଅନ୍ତ ନ ଥିବା ସ୍ଥାନକୁ ।' (ପୃ-୩୨)

ଗ୍ରୀକ୍ ଦାର୍ଶନିକ ପ୍ଲେଟୋ କବିଙ୍କୁ ତାଙ୍କର ରିପବ୍ଲିକ୍‌ରେ ସ୍ଥାନ ଦେଇନଥିଲେ। ଚେତନାର ପ୍ରଶାସନରେ ଆବେଗକୁ କୌଣସି ଗୁରୁତ୍ୱ ଦେଇନଥିଲେ । ହରିହର ସେହି କଥା କହିଛନ୍ତି ଦୁଇ ଚାରିଥର । କବି ମଣିଷ କଥା କହିପାରିବ ନାହିଁ ପୂରାପୂରି । ପ୍ରତ୍ୟେକ ମଣିଷ ତାର ନିଜର କବି ହେବାକୁ ପଡ଼ିବ । ତେଣୁ ଜୀବନକୁ ମୂଲ୍ୟହୀନ କରି ଯେଉଁମାନେ ଆକାଶର ଶକ୍ତି କେନ୍ଦ୍ରର ଅସ୍ୱୀକାର କରିଛନ୍ତି କିମ୍ବା ବ୍ୟକ୍ତିଗତ ରୂପଚର୍ଚ୍ଚାରେ ସେ ଶକ୍ତିକୁ ଅବୁଝା କରିଛନ୍ତି, ସେମାନେ ଆଉ ଆମର ପ୍ରତିନିଧିତ୍ୱ କରିପାରିବେ ନାହିଁ । ଜଗନ୍ନାଥ ବା ମୂଳପ୍ରାଣ ଶକ୍ତି ଯେମିତି ନିଜେ ତାର ବିଶ୍ୱମଞ୍ଚର ପାତ୍ର, ବ୍ୟକ୍ତି ସେହି ସ୍ତରକୁ ଗଲେ ହିଁ ସତ୍ୟ ସନ୍ଧାନ କରିପାରିବେ : 'ଦିଗରୁ ବିଦିଗ ଯାଏଁ ନିଜେ ହିଁ ପାତ୍ର ସିଏ ।' ମଣିଷ ଯେମିତି ତାର ପାତ୍ର ହେବ ବିଶ୍ୱାସରେ । କିନ୍ତୁ ଏହି ପ୍ରେମ ଅନ୍ଧ ଭ୍ରମର ପରି ବିଦ୍ଧ ହୁଏ । ପୂର୍ଣ୍ଣତା ପାଏ ନାହିଁ ।

ମନରେ ବେଳେ ବେଳେ ପ୍ରତ୍ୟୟ ଜନ୍ମେ ଯେ, ମଶାଣିର ଫୁଲକୁ ଉଦ୍ଧାର କରିବାପାଇଁ, ଅର୍ଥାତ୍ ଜୀବନ ପ୍ରେମ କାହାଣୀର ସତ୍ୟ ଆବିଷ୍କାର ପାଇଁ ଥିଲା ଓ ରହିଛି । କିନ୍ତୁ ସତ୍ୟ ପାଇନାହିଁ କବି, ମାଟି ଉପରକୁ ଅର୍ଥାତ୍ ଦେହ ଉପରକୁ ଉଠିପାରିନାହିଁ ପ୍ରେମକାହାଣୀ । 'ସ୍ନାୟବିକ କମ୍ପନ' ଛଡ଼ା ଏକାଗ୍ରତାର ପ୍ରଶାନ୍ତି ପାଇନାହିଁ ସେ । ନାରସିସସ୍ ପରି ନିଜ ପ୍ରତିବିମ୍ବରୁ ମୁକ୍ତି ପାଏ ନାହିଁ ମଣିଷ ।

'ମୁଁ ଥାଏ ସେଠାରେ
ନିଜର ପ୍ରତିବିମ୍ବକୁ
ନିଜେ ସଜାଡ଼ିବାରେ
ଶତଧିକ୍କାର ସହି ନେବାପରେ
ନିଜର ଦୃଷ୍ଟିରେ ।' (୪୪)

ପ୍ରତ୍ୟେକ ମୁହୂର୍ତ୍ତରେ ଏହି ପ୍ରତିବିମ୍ବ ସଜାଡ଼ିବାକୁ ପଡ଼େ ନାରସିସସ୍‌ର ମନଲାଖି କରିବାପାଇଁ । କାରଣ ମହାକାଳ ବା ଅନନ୍ତର ପରିପ୍ରେକ୍ଷୀ ଆଉ ଆମର ନାହିଁ । ବଞ୍ଚିବାର 'ଅଭିଶାପ'ରେ ମୁହୂର୍ତ୍ତଟିଏ (ପ୍ରବଞ୍ଚିତ ପଥିକଟିଏ), ବଞ୍ଚିଗଲେ ମଧ୍ୟ ସାର୍ଥକତା ମିଳେ ବୋଲି ମଣିଷ ସବୁ ଅଭିନୟ କରେ । ତେଣୁ ପଥରକୁ ସଜେଇ ଦେବତା ଭାବେ ପୂଜିବାରେ ବା ଶିଳା ଦର୍ପଣ ପାଲଟିଗଲେ-ଚଣ୍ଡାଶୋକ ଧର୍ମାଶୋକ ହେଲା ପରି କିଛି ଯାଏ ଆସେ ନାହିଁ । 'ଅବକ୍ଷୟ'ରେ ହରିହର ଚରମ ଶୂନ୍ୟବୋଧ ପାଇଛନ୍ତି ଯାହା ଜଣେ ମନନଶୀଳ ଅନୁଭବୀର ଭାଷାରେ 'ଶବ୍ଦମୁକ୍ତ' କରୁଛି ଶବ୍ଦମାନଙ୍କୁ :

'କେଉଁଠି କିଛି ନଥାଏ
ନା ପଥରରେ ନା ପରାଣରେ
ଆମର କି ଯାଏ ଆସେ
ଯିଏ ଯାହାର ଥାଉ ଯା' ଭିତରେ' । (୫୧)

କାବ୍ୟ ପୁରୁଷ, ସବୁ ସତ୍ତା ଓ ସ୍ଥିତିକୁ ଅସ୍ୱୀକାର କରି ନିଜକୁ ମଧ୍ୟ ଅସ୍ୱୀକାର କରେ । ଏହି ଅସ୍ୱୀକାର ମଧ୍ୟରେ ହରିହର ପୁଣି ସନ୍ଦେହ ବଳୟରେ ପହଞ୍ଚି ଯାଇଛନ୍ତି । ଅଶୋକ ବଣରେ ସୀତାର ବିରହ ବେଦ୍‌ନା ଓ ଶୂନ୍ୟବୋଧ ଯଦି ରାମପରି ପୁରୁଷକୁ କର୍ମପ୍ରେରଣା ଦେଇ 'ସାମର୍ଥ୍ୟର ସହସ୍ର ବୀଜ' ବପନ କରାଉଥିଲା ଏ ମାଟିରେ, ସେ କ'ଣ କେବଳ 'ଆଲୋକିତ ଥିବା ନିଜ ଦୁଃଖର ଦର୍ପଣ' ? (୫୨) ଏ ଦର୍ପଣ ବର୍ତ୍ତମାନ ବିଚୂର୍ଣ୍ଣ ଯନ୍ତ୍ରଣାର କଣିକା । ଆମେ କ'ଣ ସେହି ଏକା ଓ ନିଜ ବଡ଼ ପଣରେ ବିଚ୍ଛିନ୍ନ ଭଗବତ୍ ସତ୍ତା ପରି ଜଗନ୍ନାଥର ଦର୍ପଣ ଶିଳାର ସ୍ୱଚ୍ଛ କଣିକା ? କିବା ଯନ୍ତ୍ରଣାର ରକ୍ତଧାର ? କଂସ କାରାଗାରର ବଧଶିଳା-ଏ ଦର୍ପଣ ଶିଳା । ଭ୍ରମ ଆସେ ପୁଣି ମନରେ, ଏହା କ'ଣ ବ୍ରହ୍ମସତ୍ତା ? ବ୍ରହ୍ମ ବା ଜଗନ୍ନାଥ କ'ଣ ଆମର ସୃଷ୍ଟ ସନ୍ତାନ ନା ଆମେ ସବୁ ତା'ର ସୃଷ୍ଟି ? ଏହି ଦ୍ୱନ୍ଦ୍ୱ ଭିତରେ ଅନୁରାଗ-ବିରାଗ ଉଭୟ ଗ୍ରାସିଯାନ୍ତି ମନକୁ । ଏହି ଭ୍ରମ ଓ ଦ୍ୱନ୍ଦ୍ୱ ଭିତରୁ ଆଉ ଏକ ପ୍ରତ୍ୟୟ ଆସେ ଯେ ମୁଁ ଓ ମୋର ସ୍ରଷ୍ଟା ଏକାପରି ସଂଯୋଗହୀନ, ଯୋଗହୀନ, ପ୍ରେମହୀନ, କାରଣ ବିଶ୍ୱ ସହିତ ସଂଯୋଗ ହି ପ୍ରେମଯୋଗ । ମୁଁ ଯେମିତି ମୋର ଦର୍ପଣ ଶିଳା ଧରିଛି, ଜଗନ୍ନାଥ ମଧ୍ୟ ତାଙ୍କ ଦର୍ପଣ ଶିଳାରେ ଦେଖୁଛନ୍ତି ନିଜର ସୃଷ୍ଟିକୁ । ତେଣୁ 'ତତ୍ ତ୍ୱଂ ଅସି' ପରି 'ମୁଁ ଯାହା, ସେ ତାହା' (୬୫) ।

ଏମିତି ଲାଗିଥିବ ଜନ୍ମ ମୃତ୍ୟୁର ଦୃଶ୍ୟାନ୍ତର ନିଜ ନିଜର ଦର୍ପଣ ଶିଳାରେ । ଗୋଟିଏ ଗଲେ ଆଉ ଗୋଟିଏ ଉକୁଟି ଆସୁଥିବ ଶବ୍ଦ, ଦେହ ଓ ଇଚ୍ଛାର ଅଭ୍ୟନ୍ତରକୁ । ଏବଂ ପ୍ରତ୍ୟେକ ବ୍ୟକ୍ତିର ପୃଥିବୀ ତା ପାଇଁ ନୂଆ ସ୍ୱପ୍ନର ଐଶ୍ୱର୍ଯ୍ୟ ରଚନା କରି ବାରମ୍ବାର ସ୍ୱପ୍ନଭଙ୍ଗ ହେଲାପରେ ମଧ୍ୟ । ସ୍ୱପ୍ନ ଦେଖିପାରେ ବୋଲି ମଣିଷର ଏକାପଣର ଅନ୍ୱେଷଣ ଚାଲିଥିବ

ଅନନ୍ତ ପର୍ଯ୍ୟନ୍ତ । ସମୟର ଶିଶୁ, ଯୁବା ଓ ବୁଢ଼ା ସ୍ୱପ୍ନମାନେ ଅନନ୍ତରୁ ବାହାରି ଅନନ୍ତରେ ଶେଷ ହୁଅନ୍ତି । ଭଗବଦ୍ ଗୀତାର ମହାକାଳ ଓ 'ମୁଖ ନିଃସୃତ-ମୁଖଲୀନ' ରୂପମାନେ ଯେମିତି ସମୟ-ମହାକାଳ ସମ୍ପର୍କରେ ବ୍ୟକ୍ତି ଓ ବ୍ରହ୍ମର ସତ୍ତା ସୂଚାନ୍ତି । ହରିହର ମିଶ୍ର ପ୍ରାୟ ସେହି ମର୍ମରେ ମଣିଷର ବିବୃତ ବର୍ତ୍ତମାନକୁ ବିମ୍ୱିତ କରନ୍ତି ଦର୍ପଣ ଶିଳାରେ । ତଥାପି ଏହି ବିବୃତି ବର୍ତ୍ତମାନ ମଧ ସତ୍ୟ ନୁହେଁ । କାରଣ 'ଶରୀର' ଏକ ମସ୍ତ ମିଥ୍ୟା । ଏହି ମିଥ୍ୟାର ବେଦୀ ଉପରେ ସତ୍ୟର ପୂଜାଫୁଲ ଥାପିବା ସହଜ ନୁହେଁ । ଖାଲି ଗର୍ଭରୁ ଗର୍ଭକୁ ସ୍ଥାନାନ୍ତର ଚାଲିଥାଏ ବିଶ୍ୱାସହୀନତାରେ । ତା'ଭିତରେ ସତ୍ତା ନ ଥାଏ । ସେ ସତ୍ତାର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଏକ ନିର୍ଲିପ୍ତ ଲକ୍ଷରେ ଚାଲିଥାଏ । ଦୀପରୁ ଦୀପ ଜଳିଲା ପରି ଜଳେ ଗୋଟାକ ପରେ ଗୋଟାଏ । ଅବିନାଶୀ ଆତ୍ମା ଆଉ ଏକ କୁଆଁ ଶବ୍ଦରେ ସ୍ୱପ୍ନ ତୋଳେ, 'ଚକୁଆ ଓ ଚକୋଇର ଅସ୍ତ ଆକାଶରେ ।' (୭୫)

ଏହି ଆତ୍ମାର ଅନ୍ୱେଷଣ ହିଁ ପ୍ରେମ, ଯାହା ମିଳେ ନାହିଁ ମଣିଷକୁ । ଯାହା କାମ୍ୟ, ତାହା ଏ ପୃଥିବୀରେ ଅପ୍ରାପ୍ୟ । ସେହି ପ୍ରେମରସର ଦିବ୍ୟାନୁଭୂତିର ଅପେକ୍ଷାରେ ଶୀତରତୁ ମାଡ଼ିବସେ । ଆଶ୍ରୁଯାକି ଧୂମାଳ ଆଖିରେ ଦେଖିବାକୁ ହୁଏ ଶେଷ ଦୃଶ୍ୟ, ଜିତେନ୍ଦ୍ରିୟ ପୁରୁଷର ଶେଷ ଉଚାରଣ ଶୁଣିବାକୁ ହୁଏ । ମରିବାକୁ ହୁଏ ସର୍ବସ୍ୱ ହରାଇ । ତଥାପି ବିଦ୍ରୋହୀ ହୋଇଉଠେ ମନ । କ'ଣ ପାପ ଲାଗି ମିଳିଲା ନାହିଁ ମତେ ବଂଶୀସ୍ୱନର ମିଳନଛନ୍ଦ ? ପଚାରେ ରାଧା । ଏ ରାଧା ସବୁ ବ୍ୟକ୍ତି; ସବୁ ପ୍ରେମିକ, ପ୍ରେମିକା । ଯେଉଁମାନେ ଜୀବନରେ ମାତାଲ ହୋଇ ମାଗିଥିଲେ ବିଭୁ ଏବଂ ପ୍ରେମ । କିନ୍ତୁ କେବଳ ପଞ୍ଚଭୂତକୁ ଛାଡ଼ି, ଘଟ ବଦଳାଇ, ସ୍ୱର୍ଣଗନ୍ଧ ଇତ୍ୟାଦିକୁ ଫେରାଇ ନେବାକୁ ହୁଏ ଏହି ପ୍ରେମହୀନ ବଳୟରେ । ତଥାପି ରାଧା ଅପେକ୍ଷା କରେ ଏକା ଏକା ତା'ର ବିରହତାପର ପୃଥିବୀରେ ପ୍ରତ୍ୟେକ ମଣିଷର ଏକାପଣ ନେଇ । ଯିଏ ଯାହାର ସ୍ୱତନ୍ତ୍ର ବିରହରେ ରାଧାପରି ବଂଶୀ ବାଉଳା ଦହନରେ କାତର, ତଥାପି ପ୍ରେମ ପାଇଁ ଅପେକ୍ଷା ଓ ଅନ୍ୱେଷଣ ଅନନ୍ତ, ଅକ୍ଷର । ବଂଶୀ ଛାଡ଼ି, ଶଙ୍ଖଚକ୍ର ଧରିଥିବା ହାତ ପ୍ରତି ଅନେକ ରୁଦ୍ଧ ଅଭିମାନରେ ଅପେକ୍ଷା କରେ ରାଧା । ପ୍ରତ୍ୟେକ ମଣିଷ ଅପେକ୍ଷା କରେ ପ୍ରେମବଂଶୀର ସଫଳ ମହ୍ଲାର ପାଇଁ ଜନ୍ମ-ମୃତ୍ୟୁ ଦୁଃଖ-ଯନ୍ତ୍ରଣାର ପୃଥିବୀରେ । କିନ୍ତୁ କ'ଣ ପାଇଁ ଏ ଅପେକ୍ଷା ? ମୋକ୍ଷ-ନିର୍ବାଣ ପାଇଁ ନା ପରିତ୍ରାଣ ପାଇଁ ? ପରିତ୍ରାଣ ଏଠି ମିଳେ ନାହିଁ । ମିଳେ ନାହିଁ ବୋଲି ମଣିଷ ଅନୁରାଗର ମନ୍ତ୍ର ଭୁଲି ବିରାଗ ମନ୍ତ୍ର ସାଧନା କରେ । କିନ୍ତୁ ବିରାଗରେ ମଧ ମିଳେନାହିଁ । ତଳକୁ ଗଲେ ଯେତିକି ଉପରକୁ ଗଲେ ମଧ ସେତିକି । ହେରାକ୍ଲିଟସ୍‌ଙ୍କ (The way up is the very down) ଉପର-ତଳ ଯୁକ୍ତି ସମାନ ଭାବେ ବିଚଳିତ ବା ଆମୋଦିତ କରେ ଜୀବାତ୍ମାକୁ । କେଉଁଠି କିଛି ନାହିଁ ଉପର-ତଳ ମିମାଂସାରେ । ମୁକ୍ତିର ଏରୁଣ୍ଡି ବନ୍ଧ କେଉଁଠି ନାହିଁ ଯାହା ଡେଇଁଗଲେ ରମ୍ଭା-ମେନକାର ଆଶ୍ଲେଷ ମିଳିବ ।

'ଡେଇଁଗଲେ ବାରଣ ଶିରକୁ
ଅଶେଷ ଭେଟଣା ହେବୁ ସେ ପାଖରେ
ଏ ପାଖେ ତା' ଭେଟ ନ ପାଇବୁ
ଯୋଗରେ ବନ୍ଦୀ ହେବୁ
ଭ୍ରମର ତୁ ମାଟିର ଦୁର୍ଗରେ
ଭୋଗରୁ ଖସିଯାଇ ମହର୍ଗରୁ କାନ୍ତାରେ
ପଡ଼ିବୁ
କୁମରରେ, ଯୋଗ ହେଉ ଭୋଗ ହେଉ
ପାଦଟିଏ ଘୁଞ୍ଚ୍ ଠିଆ ହେବୁ ।

କୈଶୋର, ଯୌବନ, ବାର୍ଦ୍ଧକ୍ୟ ଯୋଗୀପଣ ସବୁ, ହରିହର ମିଶ୍ରଙ୍କ କାବ୍ୟାନାଭୂତିରେ ଅଳୀକ ଏବଂ କେହି ମୃତ୍ୟୁ ଜିଣିବା ମନ୍ତ୍ରରେ ଦୀକ୍ଷିତ ନୁହନ୍ତି । ପ୍ରତ୍ୟେକ ବ୍ୟକ୍ତି ତାର ଏକାପଣ ଜୀବନ ଯାତ୍ରାରେ ମୃତ୍ୟୁ ଛଡ଼ା ଅନ୍ୟ ନିର୍ବାଣ ପାଏ ନାହିଁ । ଯୋଗୀ ହେଲେ ମଧ କୁମର ମଣିର ନିସ୍ତାର ନାହିଁ ।

ହରିହର ମିଶ୍ର ମିଥ୍-ଗୁଡ଼ିକୁ ଏପରି ବ୍ୟବହାର କରିଛନ୍ତି ଯେ, କେଉଁଠି ମିଥ୍‌ର ସ୍ୱତନ୍ତ୍ର ଆକର୍ଷଣରେ କବିତା ଦିଗହରା ହୋଇନାହିଁ ଅର୍ଥାତ୍ ମିଥ୍‌ମାନେ କାବ୍ୟର ସାଂସ୍କୃତିକ ମଣ୍ଡଳ ଭିତରେ ଜୀବନର ପ୍ରବାହ ପାଇଁ ନିମନ୍ତ୍ରିତ । ଜଗନ୍ନାଥଙ୍କ ଯାତ୍ରା ଓ ବାହୁଡ଼ା କବିତାର ସୀମା ନିର୍ଦ୍ଧାରଣ କଲେ ମଧ, ପ୍ରତ୍ୟେକ ମଣିଷ ଓ ସାମୂହିକ ଆତ୍ମାର କାବ୍ୟ ପୁରୁଷ ଜଗନ୍ନାଥଙ୍କୁ ନିଜ ଭିତରେ ଧାରଣ କରେ ଓ ସମସ୍ତଙ୍କୁ ଜଗନ୍ନାଥଙ୍କ ଭିତରେ ଦେଖେ । ମହାପ୍ରାଣର ସଞ୍ଚାଳକ ଭାବେ ଜଗନ୍ନାଥ ଏଠି ସବୁ ପ୍ରାଣରେ ଜଗନ୍ନାଥ । ପ୍ରତ୍ୟେକ ବ୍ୟକ୍ତି ଜୀବନଯାତ୍ରା ଓ ବାହୁଡ଼ାର ଆରମ୍ଭ ଶେଷ ବିନ୍ଦୁକୁ ଏକାଠି କରି ଜନ୍ମ-ମୃତ୍ୟୁକୁ ମଧ ଏକାତ୍ମ କରେ ।

'ଆରମ୍ଭରେ ଯେତେଥିଲା ଆଡ଼ମ୍ବର
ଫେରିବାରେ ସେତିକି ବେଭାର
କେଉଁଠି ଆରମ୍ଭ ଯାତ୍ରା
କେଉଁଠାରେ ପୁଣି ଶେଷ ତାର' ?

ତେଣୁ ଜଗନ୍ନାଥଙ୍କ ପରି ନବଦିନର ଯାତ୍ରା ଲୀଳା ପରେ ମନ୍ଦିରକୁ ଫେରିଲାପରେ ମଧ ମୁକ୍ତି କିମ୍ବା ମୋକ୍ଷ ନାହିଁ । ଏ ଯାତ୍ରା ପୁଣି ଆରମ୍ଭ ହେବ । ଅନବରତ ଚାଲିଥିବ— ଜନ୍ମ, ବଂଶୀସ୍ୱନ,

ଦ୍ୟୁତକ୍ରୀଡ଼ା, ହତ୍ୟା, ପ୍ରେମାଞ୍ଜନ ପରେ ସେହି ଘଟାନ୍ତରର ଅପେକ୍ଷା ରହେ ଶୂନ୍ୟଗର୍ଭା ବିଗ୍ରହକୁ । ଅନୁରାଗ, ବିରାଗ କିମ୍ବା ଅପରାଗ ଅର୍ଥହୀନ ସମୀକ୍ଷାରେ କେବଳ ଶବ୍ଦ କୁହାଟ ସୃଷ୍ଟି କରନ୍ତି । ଏହି ଶବ୍ଦ ନିଶବ୍ଦ ହେଲେ ହୁଏତ ଶବ୍ଦର ଆକାଶରେ ନିଥର ଇଥରର ପ୍ରଶାନ୍ତି ଆସିପାରେ । ମହାପ୍ରୟାଣ ପରି ଶେଷ ଯାତ୍ରାର ଘଟାଟୋପ ପରେ ସବୁ ଶାନ୍ତ । ଆନନ୍ଦ-ନିରାନନ୍ଦ, ଭୋଗ-ଯୋଗରୁ ନିର୍ଲିପ୍ତ ଯାତ୍ରାର ଅନ୍ୟ ନାମ ହିଁ ଜୀବନ । ନିହାତି ସରଳ, ନୀରବିତ ଭାଷାରେ ହରିହର ଜୀବନ ଯାତ୍ରାର ସାଂସ୍କୃତିକ ଓ ଆଧ୍ୟାତ୍ମିକ ଅବତାରଣା କରିଛନ୍ତି 'ଦର୍ପଣଶିଳା'ରେ ।

ବିଗତ ଦଶବର୍ଷ ଭିତରେ ପଡ଼ିଥିବା କାବ୍ୟ କବିତାରେ ମୋ ପାଇଁ 'ଦର୍ପଣଶିଳା' ଏକ ସୁନ୍ଦର ସୃଷ୍ଟି । ହଜିଯାଉଥିବା ଛନ୍ଦର ସଂରକ୍ଷଣ ଓ ଶବ୍ଦର ଅଭେଦ୍ୟ ପାଚେରୀ ଡେଇଁ ନିଶବ୍ଦ ପ୍ରାଣସ୍ପନ୍ଦନର ପରିବେଷଣ, ହରିହର ମିଶ୍ରଙ୍କର ସାର୍ଥକତା । ଓଡ଼ିଆ ତଥା ଭାରତୀୟ ସଂସ୍କୃତିରେ ଜୀବନର ନିଗୂଢ଼, ଅନ୍ବେଷଣ 'ଦର୍ପଣ ଶିଳା'ରେ ରହିଛି ଅନୁଭୂତିର ନିର୍ଯ୍ୟାସ ନେଇ । ଓଡ଼ିଆ କବିତାର ଭବିଷ୍ୟତ ପ୍ରତି ଆଶାନ୍ୱିତ ହେବାପାଇଁ 'ଦର୍ପଣ ଶିଳା' ଏକ ପ୍ରେରଣା ।

ଗଜପତି ନଗର
ଭୁବନେଶ୍ୱର- ୫
(ରବିବାର 'ସମୟରେ' ପ୍ରକାଶିତ)



# ।। ଅନାମ କାବ୍ୟ ଦର୍ଶନ ଓ ଅଣ ଅକ୍ଷର ।।

*ବସନ୍ତ କୁମାର ପଣ୍ଡା*

'ଅନେକ ଦିନରୁ ଜାଣେ
ଶୂନ୍ୟରେ ହିଁ ଠୁଳ ସବୁ
ଶୂନ୍ୟରେ ହିଁ ସ୍ଥିତି ମୋର
ଶୂନ୍ୟ ମୋର ନାମ ପରିଚୟ'

— ଅଣ ଅକ୍ଷର

କବି ହରିହର ମିଶ୍ରଙ୍କ ସୃଷ୍ଟିଜଗତ ବିପୁଳ ଓ ବିଚିତ୍ର । ବହୁ କାର୍ଯ୍ୟ,ଧ୍ୱନି ଓ ଶୈଳୀ ସମନ୍ୱିତ ହୋଇ ଓଡ଼ିଆ କାବ୍ୟୋତିହାସକୁ ତାହା ସମୃଦ୍ଧ କରିଛି । କିନ୍ତୁ କ୍ୱଚିତ ଆଲୋଚନାର ପରିସରକୁ ଆସିଛି । ହୁଏତ ତାଙ୍କ ବିସ୍ତୃତ ଓ ଗଭୀର ଭାବସୂତ୍ରକୁ ବୁଝି ବୁଝାଇବା ଯେ କୌଣସି ପାଠକ ବା ଆଲୋଚକ ପାଖରେ ସହଜ ବା ସମୟସାପେକ୍ଷ ହୋଇପାରିନାହିଁ । ଯେଉଁ କେତେଜଣ ସେଇ ଅରଣ୍ୟ ପଥର ପଥିକ ହୋଇଛନ୍ତି, ସେମାନେ ପୁଷ୍ପର ସୁରଭି, କିଶଳୟର କୋମଳତା, କୋକିଳର କୁହୁତାନ ପୁଣି ସପ୍ତଫେଣୀର କଣ୍ଟକିତ ଫଳକ ବା ବ୍ୟାଘ୍ରର ଗର୍ଜନ ଅବା ବିଷଧର ସର୍ପର ଫୁତ୍କାର ଏସବୁ ଏକାସଙ୍ଗେ ଅବିଛିନ୍ନ ଓ ଅବିଶ୍ଲିଷ୍ଟ ଭାବେ ସହାବସ୍ଥାନ କରୁଥିବା ଦେଖିଛନ୍ତି । ତେଣୁ ସୁରେନ୍ଦ୍ର ମହାନ୍ତିଙ୍କ ପରି ବହୁ ଶାସ୍ତ୍ରଦର୍ଶୀ କିଛି ଆଲୋଚକ ଲେଖିଛନ୍ତି, 'ହରିହରଙ୍କ ଅଧିକାଂଶ କବିତା ସର୍‌ରିଆଲିଷ୍ଟିକ୍-- ସେଥିପାଇଁ ତାହା ଦୁର୍ବୋଧ୍ୟ । 'ଅନାମ' ଗୋଷ୍ଠୀର ଜଣେ କବି ରୂପେ ପରିଚିତ ହେଲେହେଁ 'ଅନାମ' କବିତାର ଘୋଷିତ ଆଭିମୁଖ୍ୟ ସହିତ ତାଙ୍କ କବିତାର କୌଣସି ସାମଞ୍ଜସ୍ୟ ପରିଲକ୍ଷିତ ହୁଏନାହିଁ ।' ଏହି ମନ୍ତବ୍ୟରୁ ହରିହର ମିଶ୍ରଙ୍କ କବିତାର ମର୍ଯ୍ୟାଦା କ୍ଷୁର୍ଣ୍ଣ ହେଉଛି ଭାବିବା ଉଚିତ ହେବନାହିଁ । ବରଂ ଆଲୋଚକଙ୍କ ନିଷ୍ଠା ଓ ସମୟ ଅଭାବର ଫଳ ବୋଲି ବୁଝିବାକୁ ହେବ । ଏତେକଥା କହିବାର ଉଦ୍ଦେଶ୍ୟ ହେଉଛି ଆଲୋଚ୍ୟ ଗ୍ରନ୍ଥ 'ଅଣଅକ୍ଷର'ର କାବ୍ୟଦର୍ଶନ ଓ ବକ୍ତବ୍ୟ ବିଷୟରେ

ବୁଝାଇବାର ଦୁଃସାଧ ଦାୟିତ୍ୱବୋଧ ବିଷୟରେ ସଚେତନ ହେବା ଓ କରାଇବା । ଏଥିରେ ବୁଝାଇବାର ସାମର୍ଥ୍ୟ ଅପେକ୍ଷା ବୁଝିନେବାର ଆଗ୍ରହ ବେଶୀ ଥିଲେ ହିଁ ଏହା ସମ୍ଭବ ହେବ ।

'ଅଣଅକ୍ଷର'କବିଙ୍କର କାବ୍ୟଧାରାରେ ଏକ ବ୍ୟତିକ୍ରମ । କେବଳ ନାମକରଣରେ ଗୂଢ ଦାର୍ଶନିକତା ପାଇଁ ନୁହେଁ, ମୁଖବନ୍ଧରେ ନିଜସ୍ୱ କଥନ ପାଇଁ ମଧ ନୁହେଁ, ଏକ କାବ୍ୟ ଆନ୍ଦୋଳନ ଭିତରେ ଗୋଟିଏ ସାଂସ୍କୃତିକ ଜାଗରଣକୁ ପ୍ରତିଷ୍ଠା ଦେଇ ତା'ରି ମାଧମରେ ନିଜର ଜୀବନବ୍ରତକୁ ଚରିତାର୍ଥ କରିବାର ଅକୃତ୍ରିମ ପ୍ରୟାସ ପାଇଁ 'ଅଣଅକ୍ଷର' ପୁରୁଷୋତ୍ତମ ଚେତନାର ପ୍ରତିଭୂ । ଗୀତାର ପୁରୁଷୋତ୍ତମ ଯୋଗରେ -''ଯସ୍ମାତ୍ କ୍ଷରମତୀ ତୋଽହମକ୍ଷରାଦପି ଚୋତ୍ତମଃ । ଅତସ୍ମି ଲୋକେ ବେଦେଚ ପ୍ରଥିତଃ ପୁରୁଷୋତ୍ତମ'' ।। ଯାହା କୁହାଯାଇଛି ତାହା ଅଚ୍ୟୁତାନନ୍ଦଙ୍କ 'ଅଣାକାର ସଂହିତା' ଓ ଭୀମଭୋଇଙ୍କ 'ସ୍ତୁତି ଚିନ୍ତାମଣି'ର 'ଅଣଅକ୍ଷରକୁ ଅନାମ କହି' ବାଟ ଦେଇ ଆଧୁନିକ କାଳରେ 'ଅନାମ କାବ୍ୟ ଆନ୍ଦୋଳନ' ଭିତରେ ଆସି ପ୍ରତିଭାତ ହେଲା । ଅଚ୍ୟୁତାନନ୍ଦଙ୍କର ଧର୍ମକୁ ସାର୍ବଜନୀନ କରିବା ଓ ଭୀମଭୋଇଙ୍କର ମନ୍ଦିରର ସିଂହାସନରୁ ଦେବତାଙ୍କୁ ଓହ୍ଲାଇ ଆଣି ସାଧାରଣ ଜନତାଙ୍କ ହୃଦୟରେ ସ୍ଥାପନ କରିବା ଓ ଆପଣା ଜୀବନକୁ ନର୍କରେ ପକାଇ ଜଗତ ଉଦ୍ଧାର କାମନା କରିବା ଅନାମଙ୍କ ସୃଷ୍ଟି ଓ ଦୃଷ୍ଟିରେ, ଜାଗରଣ ଓ ଆବାହନରେ, ବଚନ ଓ ରଚନା ନୈପୁଣ୍ୟରେ ଆଧୁନିକତମ ରୂପ ନେଇ ଆବିର୍ଭୂତ ହେଲା ।

ସଂସ୍କୃତି ଓ ସାହିତ୍ୟର ଇତିହାସରେ ଏପ୍ରକାର ବୌଦ୍ଧିକ ଆନ୍ଦୋଳନ ଦୁର୍ଲ୍ଲଭ ନୁହେଁ, କିନ୍ତୁ କ୍ଷଣସ୍ଥାୟୀ । ସମାଜର ବଳିବର୍ଦ୍ଦତ୍ୱକୁ ଓ ମାନବିକ ଚେତନାର ରଚିବଦ୍ଧତାକୁ ସହସା ଚହଲାଇ ଦେବା ପାଇଁ ଏସବୁ ଗୋଟିଏ ଗୋଟିଏ ବିଦ୍ୟୁତ୍ କଣିକା । ମଧଯୁଗରେ ଶଙ୍କରାଚାର୍ଯ୍ୟଙ୍କ ପରବର୍ତ୍ତୀ ଭକ୍ତ ଓ ସନ୍ଥକବିମାନେ ଏଇଭଳି ଭୂମିକା ଗ୍ରହଣ କରିଥିଲେ । ପ୍ରାଚୀନଯୁଗର ମନ୍ତ୍ରଦ୍ରଷ୍ଟା ଋଷି ଓ ଆଚାର୍ଯ୍ୟମାନଙ୍କର ବାଣୀକୁ ଜନମୁଖୀ ନ କରାଇବା ପାଇଁ ସେମାନେ ଲୌକିକ କଥିତ ଭାଷା, ଛନ୍ଦ ଓ ସ୍ୱର ଲୟକୁ ମାଧମ କରିଥିଲେ । ଅନେକ ଭାବରେ ହେଲେ ମଧ ଗୋଟିଏ ମୌଳିକ ସତ୍ୟ ଓ ଶାଶ୍ୱତ ମୂଲ୍ୟବୋଧର କଥା କରୁଥିଲେ । ବହୁ ଉପମା, ଅନୁପ୍ରାସ ଓ ରୂପକଳ୍ପ ସଂଯୋଜନକରି ବ୍ୟଙ୍ଗ ଓ ବିଦ୍ରୂପତା ଭିତରେ ସେମାନେ ସମାଜର ବୁଦ୍ଧିମତ୍ତା, ଛଳନା, ଦୁର୍ନୀତି, ବୃଥା ଅହଂକାର, କୁସଂସ୍କାର ଓ ଧାର୍ମିକ କ୍ରିୟାଚାର ବିରୁଦ୍ଧରେ ସାଂସ୍କୃତିକ ଯୁଦ୍ଧ ଘୋଷଣା କରିଥିଲେ । ଆଧୁନିକ ଭାରତ ବର୍ଷରେ ମଧ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ, ବିନୋବାଜୀଙ୍କ ଭୂଦାନ ଓ ଆଚାର୍ଯ୍ୟ ତୁଳସୀଙ୍କର ଅଣୁବ୍ରତ ଆନ୍ଦୋଳନ

ପ୍ରଭୃତିରେ ସେଇ ମହତ୍ ଐତିହ୍ୟର ପୁନଃ ପ୍ରତିଷ୍ଠା ପାଇଁ ପ୍ରୟାସ ହୋଇଛି । ଅନାମଙ୍କ ତତ୍ତ୍ୱଗୁରୁ ସ୍ୱର୍ଗତଃ ମଧୁ ମହାନ୍ତି, ବ୍ୟାଖ୍ୟାକାର ଗୋକୁଳି ମହାନ୍ତି ଓ ପ୍ରମୁଖ କବି କୁମାର ମହାନ୍ତିଙ୍କ ଅବିମିଶ୍ର ବକ୍ତବ୍ୟରେ ସେ ପ୍ରକାର ଏବଂ ଆବେଗ ସଂଜାତ ଅସଂଲଗ୍ନ, ଅବିମୃଷ୍ୟବାଦୀ ଓ ସର୍ବାରମ୍ଭ ପରିତ୍ୟାଗୀ ଭାବର ଆଦେଶରେ କିଛି କାଳ ଓଡ଼ିଆ କାବ୍ୟ ପାଠକ ଚମତ୍କୃତ ହୋଇଥିଲେ । ତେବେ ଏମାନଙ୍କ ଠାରୁ ହରିହର ମିଶ୍ରଙ୍କ ଭୂମିକା ଭିନ୍ନ । କାରଣ ସେ ଅନାମ ପୂର୍ବରୁ ଓ ପରେ ଓଡ଼ିଆ ସାହିତ୍ୟର ଜଣେ ସାଧକ କବି, ଆଲୋଚକ ଓ ଓଡ଼ିଆ ସଂସ୍କୃତିର ବିଲକ୍ଷଣ ଭାଷ୍ୟକାର । ତେଣୁ ସେ ଅନାମଙ୍କ ସଂପର୍କରେ 'ଓଡ଼ିଆ ସାହିତ୍ୟର କ୍ରମ ବିକାଶ'ରେ ସୁରେନ୍ଦ୍ର ମହାନ୍ତିଙ୍କ ମନ୍ତବ୍ୟକୁ ('କିନ୍ତୁ ସାହିତ୍ୟ କ୍ଷେତ୍ରରେ ଏହାର କୌଣସି ସ୍ୱତନ୍ତ୍ର ବକ୍ତବ୍ୟ ଅଛି ବୋଲି ଏହି ଗୋଷ୍ଠୀର ଦୁଇଜଣ ବିଶିଷ୍ଟ କବି ହରିହର ମିଶ୍ର ଅଥବା କୁମାର ମହାନ୍ତି ଏପର୍ଯ୍ୟନ୍ତ ପ୍ରକାଶ କରିପାରି ନାହାନ୍ତି ।' ପୃ. : ୪୦୧) ନିଜର ଅନାମ କାବ୍ୟ ଦର୍ଶନ ଅବତାରଣାରେ ଅଯଥାର୍ଥ ପ୍ରମାଣିତ କରିଛନ୍ତି । ଲେଖିଛନ୍ତି, 'ଅନାମ କାବ୍ୟାଦର୍ଶରେ ପରମ୍ପରା, ପରିସ୍ଥିତି, ପରିବର୍ତ୍ତନ, ପ୍ରଗତି ଓ ପ୍ରତିବାଦର ସ୍ୱର ଅନେକଟା ଜ୍ଞାନ ବିଜ୍ଞାନର ପାରସ୍ପରିକ ଶୃଙ୍ଖଳାରେ ଅଙ୍ଗୀକୃତ । ଏଥିପାଇଁ ବୌଦ୍ଧିକ ଚେତନାର କ୍ଷେତ୍ର ଅଧିକ ପ୍ରଶସ୍ତ ଓ ଉଜ୍ଜ୍ୱଳ । ଓଡ଼ିଆ ସାହିତ୍ୟରେ – ନୃତାତ୍ତ୍ୱିକ, ବୈଜ୍ଞାନିକ ବସ୍ତୁବାଦ, ମନସ୍ତାତ୍ତ୍ୱିକ କ୍ରିୟାର ବ୍ୟାପକ ଜଗତ ସହିତ ଏକ ଅବଚେତନ ଓ ଅତିଚେତନ ସ୍ଫୁରଣ କରିବାରେ ଅପସଂସ୍କୃତିର ସଂକ୍ରମଣ ବିରୁଦ୍ଧରେ ଏକ ବୈପ୍ଳବିକ ସଂଗ୍ରାମୀ ବ୍ୟକ୍ତିତ୍ୱର ପ୍ରତିଭୂ ବା ମିଥ୍‌ର ପରିକଳ୍ପନା ଜନ୍ମ ନେଲା ଅନାମଙ୍କ 'କଲ୍‌କୀ' ଚେତନାରେ ।' ('ଅଣଅକ୍ଷର' ମୁଖବନ୍ଧ)

ଅନାମର ଅଭ୍ୟୁତ୍‌ଥାନ ପ୍ରକୃତରେ ଥିଲା ଅଦ୍ଭୁତ । ସମ୍ବଲପୁରର 'ଅକବିତା' କଟକର 'ଙ,ଞ,ଲୁ' ଭଦ୍ରଖର 'ନକ୍ଷତ୍ର' ପରି କେବଳ ଆଙ୍ଗିକ ନୂତନତାରେ ମାତିବା ଏମାନଙ୍କ ଉଦ୍ଦେଶ୍ୟ ନଥିଲା । ଏମାନେ ଥିଲେ ଅଧିକ ଭାବବାଦୀ । ମାଟିରୁ ଉଦ୍‌ଭୂତ ଶବ୍ଦରେ ଅକୃତ୍ରିମ ଆତ୍ମୀୟତାଭରା ଉଷ୍ଣ ଆବେଗ ଭିତରେ ଓଡ଼ିଆ ଜାତିର ପ୍ରକୃତ ପରିଚୟ ସନ୍ଧାନ, ସାମ୍ୟ, ମୈତ୍ରୀ ଓ ମୁକ୍ତିର ଗାନ ରଚନା କରିବା ଥିଲା ଅସଲ ଆଭିମୁଖ୍ୟ । ତଥାକଥିତ ଅନିକେତ ଭାବ, ବ୍ୟକ୍ତି ସର୍ବସ୍ୱତା ଓ ପରାନୁସରଣର ପ୍ରତିବାଦରେ ମୁଖର ଥିଲା ଅନାମ କବିତା । ଆତ୍ମ ମର୍ଯ୍ୟାଦା ପ୍ରତିଷ୍ଠା ଓ ସେଥିରେ ମୌଳିକତା ପ୍ରତିପାଦନର ଉଦ୍ୟମ, ନିଜସ୍ୱ ବାକ୍‌ରୀତି ପ୍ରତି ସତ୍ୟନିଷ୍ଠ ଓ ସନ୍ନିବଦ୍ଧ ହେବାର ଅଙ୍ଗୀକାର ଏହାର ମୁଖ୍ୟ ଦିଗ । କବିଙ୍କ ବାକ୍ୟରେ ଏହା ଆହୁରି ସ୍ପଷ୍ଟ ଓ ସୁନ୍ଦର – 'ଏଥିରେ ଗଣମାନସର ଭବିଷ୍ୟତ, ଆଶା ଆକାଂକ୍ଷା ବିଶ୍ୱାସ

ପୁଞ୍ଜିଭୂତ । କଳାଗତ ପରପାଟୀ ନିଜ ମାଟି, ନିଜ ସୀମିତ ଇଲାକାରେ ଖୋଜି ଆପଣାର ଭାବାନୁରାଗ ସହିତ ସାଂପ୍ରତିକ ଅବବୋଧର ଭିନ୍ନ ଭିନ୍ନ ଦିଗକୁ ଉନ୍ମୋଚିତ କରିବା ଓ ବ୍ୟକ୍ତିକୁ ବହୁ ଭିତରେ ଦେଖିବାର ଆଭିମୁଖ୍ୟ ଯେମିତି ସୃଷ୍ଟି ହେଲା, ଅନାମ କବିତାରେ ସେଭଳି ଶୈଳ୍ପିକ ବିକାଶ, ଭାଷା, ଛନ୍ଦ, ଭଙ୍ଗୀ, ଚାତୁରୀ, ବ୍ୟଙ୍ଗ ଓ ଜୀବନ୍ତ କଥା ରୂପରେ ଅନିବାର୍ଯ୍ୟ ବିକାଶ ଓ ଆବଶ୍ୟକତାର ସୃଷ୍ଟି ହେଲା – ତା'ର ସାହିତ୍ୟ ପ୍ରତି ଦାୟିତ୍ୱବୋଧରୁ ।' ସାମ୍ପ୍ରତିକତା ସହିତ ଜଡ଼ିତ କରି ଅତୀତର ମହାନ୍ ଶକ୍ତିରେ ଓଡ଼ିଆ ସାହତ୍ୟକୁ ମହନୀୟ କରିବାର ଐତିହାସିକ ଆଭିମୁଖ୍ୟ ଘେନି 'ଅନାମ' ଅଗ୍ରସର ହୋଇଥିଲା । ଅନିବାର୍ଯ୍ୟ ବିଚ୍ଛିନ୍ନତାବୋଧ ଓ ଅହେତୁକ ଆତ୍ମନିର୍ବାସନର ସଙ୍କଟ ଭିତରୁ ମୁକୁଳି ଆଧ୍ୟାତ୍ମିକ ଚେତନା, ଐତିହ୍ୟବୋଧ ଓ ସର୍ବୋପରି କଲ୍ୟାଣକାମୀ ମାନସିକତାର ସୃଷ୍ଟି ଥିଲା ଏହାର ପ୍ରମୁଖ ଦାୟିତ୍ୱ ।

'ଅଣ ଅକ୍ଷର'ରେ ସଙ୍କଳିତ ପଚାଶଟି କାବ୍ୟାଂଶ ଭିତରୁ କତିପୟ ଉପରୋକ୍ତ କାବ୍ୟଦର୍ଶନରେ ସଞ୍ଜୀବିତ । ଆଉ ଅନ୍ୟ କବିତାରେ ମାନସିକ ଦ୍ୱନ୍ଦ୍ୱର ଚିତ୍ର ମାର୍ମିକ । କବି ପ୍ରଥମରୁ କହି ରଖିଛନ୍ତି, 'ମୁଁ ତ କହିବି ସଂସ୍କୃତି ପ୍ରତି ଏକ ଆକ୍ରୋଶ, ଏକ କ୍ରୋଧ ଜର୍ଜରିତ ସ୍ୱର ଓ ଅବିଶ୍ୱାସର ପ୍ରଶ୍ନ ବେଶୀ ଅନାମ କବିତାରେ ଓ ଏ ସଙ୍କଳନରେ ।' ଏସବୁ ସଚେତନ ଅଙ୍ଗୀକାର ସତ୍ତ୍ୱେ ଅନେକତ୍ର ଅନାମ କବିତା କବି ଲେଖନୀରେ ଚିରାୟତ ମର୍ଯ୍ୟାଦା ବହନ କରି ପ୍ରକାଶ ପାଇଛି ।

'ଶୂନ୍ୟରେ ଘେରା ରଶ୍ମି ଜାଲ
ଝୁଲାଏ ମାଟି କଳେବର
ମାଟିରୁ ଖସେ ମୁଁ ଶୂନ୍ୟରେ
ଓଲଟ ପାରା ଭଳି ପଡ଼େ'

ପୁଣି 'ଦେବା ପାଇଁ ଫୁଲର ନଉକା ଏକ
ଯେଉଁମାନେ ମୋ ପଛରେ ଆସୁଛନ୍ତି ଧାଇଁ
ମୁଁ ଆସିଛି କାଳ କାଳ ସେମାନଙ୍କ ପାଇଁ'

ଏଥିରେ ଶୂନ୍ୟ ଦର୍ଶନକୁ ଅତିକ୍ରମ କରି ଶୁଦ୍ଧ କବିତ୍ୱର ଦୀପ୍ତି ପାଠକ ଚିତ୍ତକୁ ଝଲସାଇ ଦିଏ ।

୧୯୬୯-୭୦ରୁ ଆରମ୍ଭ ଅନାମର ଗୋଷ୍ଠୀ ଚେତନା ।

ସେସବୁ କବିତାକୁ ପାଠ କଲାବେଳେ ମନେହୁଏ, ଅନାମର ଭୂୟୋଦର୍ଶନ ଇତିହାସ କ୍ରମ ପରିଣାମରେ ଯେଉଁ କ୍ରାନ୍ତିବାହୀ ଫଳଶ୍ରୁତି ବହନ କରିଥିଲା; ତାହା ପାଶ୍ଚାତ୍ୟ ପୀଡ଼ିତ ଅବକ୍ଷୟବାଦରେ ବିବର୍ଣ୍ଣ ବା ବିଦୀର୍ଣ୍ଣ ନହୋଇ ନିଜସ୍ୱ ଦୀପ୍ତିରେ ଭାସ୍ୱର ହୋଇ ରହିଛି । ଆଲୋଚକ. ଚିତ୍ତରଂଜନ ଦାସ ଅନାମଙ୍କ ସମ୍ପର୍କରେ ନିଜ ଆଲୋଚନାରେ ଯେଉଁ ସପ୍ରଶଂସ ଆସ୍ଥା ପ୍ରକଟ କରିଥିଲେ, ତାହା ଯେପରି ଅଧିକ ବଳିଷ୍ଠ ହୋଇଛି । "The Amam poets have quite powerfully made it said that the poets in Orissa have yet to explore the appropriate archetypes so that the poetry can flourish upon the real substance giving roots." (A glimpse into oriya literature) । ଦେଶଜ କାବ୍ୟଶୈଳୀ ଓ ଭାବବସ୍ତୁ ପ୍ରତି ଆସ୍ଥା ପ୍ରକଟ କରି ଅହେତୁକ ଦୁର୍ବୋଧ ଜଟିଳତା ଓ ଅଥର୍ବତାରୁ ଓଡ଼ିଆ କବିତାକୁ ମୁକ୍ତି ଦେଇ ମହାକାଳର ପୁରୁଷୋତ୍ତମ ଚେତନାକୁ ନବନ୍ୟାସ ଦିଆଗଲା ଅନାମକବିତାରେ । ଅଣ ଅକ୍ଷର'ରେ ସେଇ କାବ୍ୟଚିନ୍ତାର ଚରମ ନୈପୁଣ୍ୟ ପ୍ରକଟିତ । ତେବେ କେବଳ ଅନାମର ବନ୍ଧନରେ ଏହା କ୍ଲୁପ୍ତ ନୁହେଁ, ନିଟୋଳ କବିତାର ନାନ୍ଦନିକ ଲାବଣ୍ୟରେ ଏହା ଠାଏଁ ଠାଏଁ ବିସ୍ମୟକର ଭାବେ ରମଣୀୟ ।

'ମୋ ପାଇଁ ତ କେହି ଅଛି ଏ ବର୍ଷାରେ ଭୂମି ଅଛି
ବାସ ମୋର ଅଛି,
ଯେଉଁଠି ମୋ ଲାଗି ଅଛି ପ୍ରାଣ ଏକ ଅନ୍ଧାର ଓ
ଅପେକ୍ଷାର ଉର୍ବର ଭୂଇଁରେ
ନିର୍ବୋଧ ହାତରେ ମଧ୍ୟ ଫଳିପାରେ ସ୍ୱପ୍ନ କିଛି କିଛି ।'

ଅଧ୍ୟାପକ
ରିଜିଓନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଏଜୁକେଶନ
ଭୁବନେଶ୍ୱର



# ଅନୁସୃଜିତ : ସୂକ୍ତଶତକ ଓ କବି ହରିହରଙ୍କ ମୌଳିକତା

*ପ୍ରଫୁଲ୍ଲ କୁମାର ମିଶ୍ର*

କଟକ ଷ୍ଟୁଡେ଼ଣ୍ଟ୍‌ସ୍ ଷ୍ଟୋର ପକ୍ଷରୁ ପ୍ରକାଶିତ (୧୯୭୯) 'ସୂକ୍ତଶତକ' ବେଦରୁ ବଛା ଯାଇଥିବା ପ୍ରସିଦ୍ଧ ଏକଶହ ମଂତ୍ରର ରଚିତ ଲଘୁକବିତା । କବି ସ୍ୱୀକାର କରିଛନ୍ତିଯେ ସତ୍ୟକାମ ବେଦାଳଂକାରଙ୍କ Wisdom of the Vedas ରୁ ବେଦମଂତ୍ରମାନଙ୍କ ଅର୍ଥକୁ ଆଧାରକରି ତାର ଛାୟାନୁବାଦ କରିଛନ୍ତି ।

ବେଦମନ୍ତ୍ରର ବାଖ୍ୟାନରେ ଓ ଭାଷ୍ୟନିର୍ମାଣରେ ଅନେକ ପରମ୍ପରା ରହିଛି । ବେଦମନ୍ତ୍ର ବୁଝିବାପାଇଁ ବ୍ରାହ୍ମଣ,ଆରଣ୍ୟକ ଓ ଉପନିଷଦ୍ ଗ୍ରନ୍ଥର ସହାୟତା ନେବା ଏବଂ ତତ୍ ସଂଲଗ୍ନ କଳ୍ପସୂତ୍ରମାନଙ୍କୁ ଅଧାର କରି ପ୍ରୟୋଗ କରିବାର ପରମ୍ପରା ଥାଏ । ଦ୍ୱିତୀୟତଃ ନିରୁକ୍ତରେ ପ୍ରବର୍ତ୍ତିତ ପାରମ୍ପାରିକ ଅର୍ଥାଭିଧାନକୁ ଆଶ୍ରୟକରି ଅର୍ଥାବବୋଧ ନିରୂପିତ ହୋଇଥାଏ । ତୃତୀୟତଃ ସ୍କନ୍ଦସ୍ୱାମୀ, ସାୟଣ ଉବଟ, ମହୀଧର, ଦୟାନନ୍ଦ ଓ ଶ୍ରୀ ଅରବିନ୍ଦ ପ୍ରମୁଖଙ୍କ ଭାଷ୍ୟ ଦ୍ୱାରା ବେଦାର୍ଥ ନିର୍ଣ୍ଣୟ ହୁଏ । ଚତୁର୍ଥତଃ ପାଶ୍ଚାତ୍ୟ ବିଦ୍ୱାନ ଉଇଲସନ, ଗ୍ରୀଫିଥ୍, ବୋଟଲିଙ୍ଗ, ରୋଟ୍, ମାକ୍ସମ୍ୟୁଲାର୍, ମ୍ୟାକ୍‌ଡ଼ୋକିଲ୍ ଓ ମୋନିୟର ଉଇଲିଅମ୍ ପ୍ରଭୃତିଙ୍କ ଭାଷ୍ୟ ଓ ଅନୁବାଦକୁ ଆଶ୍ରୟ କରାଯାଇଥାଏ । ଏହି ଚାରୋଟି ପରମ୍ପରାରୁ ପ୍ରଥମ ଦୁଇଟି ପରମ୍ପରା ହିଁ ମୂଳ ବୈଦିକ ସ୍ରୋତରୁ ଉତ୍ସାରିତ । ସାଧାରଣ ଶବ୍ଦ ମଧ୍ୟରେ ଅସାଧାରଣ ଅର୍ଥାବବୋଧ କରିବା ଗ୍ରନ୍ଥ ବେଦକୁ ସେହି ଚେତନାର ଅନୁଗମନ ନକରି ବୌଦ୍ଧିକ ବ୍ୟାୟାମ ଓ ଯାଞ୍ଚିକ ଦୃଷ୍ଟିରେ ଦେଖିବାଦ୍ୱାରା ବେଦର ପୂର୍ଣ୍ଣାଙ୍ଗ ଅର୍ଥ ପ୍ରୟୋଗ କରାଯାଇପାରିନାହିଁ । ସତ୍ୟକାମ ବେଦାଳଂକାର ପ୍ରଭୃତି ଲେଖକ ଆର୍ଯ୍ୟସମାଜ ଗୁରୁକୁଳ ପରମ୍ପରା ପ୍ରସୂତ ଦୟାନନ୍ଦଙ୍କର ଅନୁଗାମୀ ହୋଇଥିବାରୁ ସେମାନଙ୍କ ଅର୍ଥଗୁଡ଼ିକ ଅନେକ ସମୟରେ ପରମ୍ପରାର ମୂଳସ୍ରୋତ ଠାରୁ ଭିନ୍ନ ପରିଲକ୍ଷିତ ହୁଏ ।

ତେବେ କବି ହରିହର ଏହି ଅନୁବାଦକୁ ଆମୂଳଚୂଳ ଅବଲମ୍ବନ ନକରି କେବଳ ହଂସକ୍ଷୀର ନ୍ୟାୟରେ ତାର ସାରବସ୍ତୁର ସୌରଭ ସଂଗ୍ରହ କରି ଅର୍ଥାବଚୟନ କରିଥିବାରୁ ତାଙ୍କ ଲଘୁକବିତା ଗ୍ରନ୍ଥ 'ସୂକ୍ତଶତକ' ଏହି ଦୋଷରୁ ମୁକ୍ତି ପାଇଯାଇଛି ।

ତାଙ୍କର ରଚନାକୁ ସମୂଚିତ ବିଚାରକୁ ନେବା ପୂର୍ବରୁ ଜାଣି ରଖିବାକୁ ହେବଯେ, କବି ହରିହର ଜଣେ ରହସ୍ୟବାଦୀ କବି । କାରଣ ତାଙ୍କର 'ସ୍ୱପ୍ନ ବିନିମୟ', 'ଅଣ ଅକ୍ଷର', 'ଦର୍ପଣଶିଳା', 'ଶଙ୍ଖନାଭି', 'ଭିତିରିଚନ୍ଦନ' ଆଦି ସଂକଳନ ଗୁଡ଼ିକରେ ବ୍ୟକ୍ତି-ସମାଜ, ଜୀବ-ବ୍ରହ୍ମ, ପ୍ରେମ ଓ କାମର ଏବଂ ସଂଗୁପ୍ତ ଦ୍ୱିଧାରକୁ ଆଧାର କରି ବିମ୍ବ-ପ୍ରତିବିମ୍ବର ଚୟନ କରାଯାଇଛି । ତେଣୁ ସେ ସବୁଥିରେ ଥିବା ବିଶାଳତା, ବ୍ୟାପକତା ଓ ଅର୍ଥାନ୍ତର-ସଂକ୍ରମିତ ବ୍ୟଞ୍ଜନା ରହସ୍ୟବାଦ ଛଡ଼ା କିଛି ନୁହେଁ । କାରଣ ପ୍ରଚଳିତ ପରମ୍ପରା, ଚାଲିଚଳଣର ଶବ୍ଦାବଳୀରୁ ସେ ତା'ର ଆଭ୍ୟନ୍ତରୀଣ ଅନ୍ୟଅର୍ଥ ଦେଖିଥିବାରୁ ଏବଂ ସେହି ଅର୍ଥମାନଙ୍କ ମଧ୍ୟରେ ସମସ୍ତ କାବ୍ୟକୃତିର ଏକ ସଂଯୋଗ ସୂତ୍ର ଥିବାରୁ ରହସ୍ୟବାଦର ଲକ୍ଷଣ ଏଠାରେ ବିଦ୍ୟମାନ ହୁଏ । ଯଦି କେହି କହେ ଯେ ସାମ୍ପ୍ରତିକ କବିତାରେ ସମସ୍ତେ ପ୍ରାପ୍ତ ଅର୍ଥର ଅନ୍ୟାନ୍ୟଅର୍ଥକୁ ଆଶ୍ରୟ କରୁଛନ୍ତି, ତେବେ ତାର ଉତ୍ତରରେ କୁହାଯାଇ ପାରେ ଯେ ସେହି ଅର୍ଥମାନଙ୍କର ପରସ୍ପର ସଂଯୋଗସୂତ୍ର ଏବଂ ପରସ୍ପର ସଙ୍ଗତି ରହିବା ଏକାନ୍ତ ଅପରିହାର୍ଯ୍ୟ । ଯଦି ଅର୍ଥମାନଙ୍କର ସଙ୍ଗତିପୂର୍ଣ୍ଣ ରହସ୍ୟ ଆମୂଳଚୂଳ ରହିପାରେ, ତେବେ ସେଗୁଡ଼ିକୁ ରହସ୍ୟବାଦୀ କାବ୍ୟ-କଦମ୍ବଭାବେ ଗ୍ରହଣ କରିବାରେ ଆପତ୍ତି ନାହିଁ ।

ଏହି 'ସୂକ୍ତଶତକ'ରେ ବିରଚିତ କବିତାର ଭୂମି ବହୁତ ଉର୍ଦ୍ଧ୍ୱରେ ଥିବାରୁ ସେଗୁଡ଼ିକୁ ଆକଳନ କରିବା ପାଇଁ ସେହିଭଳି ଏକ ଉତ୍ତରଣ ଆବଶ୍ୟକ । ଏହା ହେଉଛି କାବ୍ୟସମାଲୋଚନା ବିଜ୍ଞାନର ସର୍ବନିମ୍ନ ସର୍ତ୍ତ । କାରଣ କବି ଓ ପାଠକ ଏକାଭୂମିରେ ପହଞ୍ଚି ପାରିଲେ ନାହିଁ ଆଦାନ ପ୍ରଦାନ ହୁଏ ଏବଂ ସେଥିପାଇଁ ପାଠକକୁ ଆଲଙ୍କାରିକମାନେ ସହୃଦୟ ବୋଲି କରିଥାନ୍ତି ।

'ସୂକ୍ତଶତକ'ର ଚୟନ କରାଯାଇଥିବା ମନ୍ତ୍ରମାନଙ୍କ ସୂଚୀ ଏବଂ ବିଷୟସୂଚୀ ନଥିବାରୁ ବା ସେମାନଙ୍କ ଆରୋହାବରୋହ କ୍ରମ ନଥିବାରୁ ସେଗୁଡ଼ିକର ସ୍ୱରୂପ ଜାଣିବା ପାଠକ ନିମିତ୍ତ ଆୟାସସାଧ୍ୟ । ତେବେ ଜଣେ ସମାଲୋଚକ/ ସହୃଦୟ ଦୃଷ୍ଟିରେ ଯେଉଁ ସୁକୁମାର ପ୍ରୟୋଗମାନ ଉପଲବ୍ଧହୁଏ, ସେଗୁଡ଼ିକୁ ଯତ୍‌କିଞ୍ଚିତ୍ ନିମ୍ନକ୍ରମରେ ଆଲୋଚନା କରାଯାଉଛି । ଏହି କବିତାମାନଙ୍କ ବିଷୟବସ୍ତୁ ହେଲା : ତପସ୍ୟାର ପରାକାଷ୍ଠା, କର୍ମର ପ୍ରେରଣା, ଫଳଭୋଗ ଅପେକ୍ଷା ଫଳଦାନ ଶ୍ରେୟସ୍କର, ଜାଗ୍ରତହେବା ନିମିତ୍ତ ଉତ୍ସାହବାଣୀ, ଈଶ୍ୱରଙ୍କୁ କରୁଣାଭିକ୍ଷା, ସୃଷ୍ଟିତତ୍ତ୍ୱ, ଚେତନାରଆରୋହଣ, ଶିକ୍ଷା ମଣିଷକୁ ପତନରୁ ଉର୍ଦ୍ଧ୍ୱକୁ ଉଠାଇବା ପାଇଁ, କର୍ମସମର୍ପଣ, ଗୌରବରକ୍ଷା , ଈଶ୍ୱର, ଈଶ୍ୱରଜ୍ଞାନ, ପ୍ରତିହିଂସାରୁ ମୁକ୍ତି, ସମସ୍ତ ପ୍ରାଣୀଙ୍କ ଠାରେ ସମଭାବ, ସଂଗତି ଓ ସମୂହ କଲ୍ୟାଣ, ସହ ଜୀବନ, ମାଟି ପାଇଁ ଓ ଦେଶ ପାଇଁ ବଳିଦାନ, ଏକତାବୋଧ, ସ୍ୱାମୀ ସ୍ତ୍ରୀ ପରିପୂରକତା, ପିତାପୁତ୍ର ଓ ଭାଇଭାଇ ସମ୍ବନ୍ଧ, ଧନ, ସବୁକିଛି

ନୁହେଁ, ଦାନ ଓ ଈଶ୍ୱର ବିଶ୍ୱାସ, ପ୍ରେମରେ ଅମୃତବିନ୍ଦୁର ସନ୍ଧାନ, ପାପ ଓ ପୁଣ୍ୟ, ଭଲକଥା କୁହ, ଭଲକଥା ଭାବ, ଓ ଦେହମନ ଶକ୍ତି ଶାରୀରିକ । ଆବେଗଠାରୁ ବୁଦ୍ଧିର ମହତ୍ତ୍ୱ ଅଧିକ, ସତ୍ୟବଚନ କହିବାର ମହତ୍ତ୍ୱ, ସରସ୍ୱତୀଙ୍କ ପ୍ରାର୍ଥନା, ଧର୍ମ, ଯୋଗୀ ଓ ଭଗବାନଙ୍କ ସମ୍ପର୍କ, ବୌଦ୍ଧିକ ସୁଖ ବିମୁଖତା, ସରଳତା ଓ ଅପାର୍ଥିବତା, ଅହେତୁକ ଆନନ୍ଦ, ମରଣ ଭୟ ଦୂରୀକରଣ, ପବିତ୍ର କର୍ମରେ ପ୍ରେରଣା, ଈଶ୍ୱରଙ୍କ ଶକ୍ତି ଆଗରେ ମନୁଷ୍ୟର ତୁଚ୍ଛତା, ମାନବିକତା, ଚତୁର ବିଜ୍ଞପ୍ତିରେ ଭୁଲି ନଯିବାପାଇଁ ଆହ୍ୱାନ, ହଂସ କଥା, ଯୁଦ୍ଧ ପ୍ରତି ବୀତସ୍ପୃହତା, ସହସ୍ର ଶୀର୍ଷା ପୁରୁଷ, ବିରାଟ ପୁରୁଷ, ସୃଷ୍ଟି ରହସ୍ୟ, ଶରୀର ମନ୍ଦିର, ଶରୀର ତତ୍ତ୍ୱ, ଜୀବ ପରମ, ଈଶ୍ୱର ମନୁଷ୍ୟ, ସଂସାର ସାଗର ପାରି କରିବାରେ ଗୋଟିଏ ଡଙ୍ଗା, ଈଶ୍ୱର ତାଙ୍କ ଧ୍ୱଂସକାରିଣୀ ଶକ୍ତି, ପରମପିତା, ଅର୍ନ୍ତଦୃଷ୍ଟି ସନ୍ଧାନ, ଚେତନା ସାମ୍ରାଜ୍ୟ ଅମରତ୍ୱ, ପରମେଶ୍ୱରଙ୍କ ଅଭିବ୍ୟକ୍ତି, ମୃତ୍ୟୁକୁ ଜୟ, ସୌନ୍ଦର୍ଯ୍ୟ ଈଶ୍ୱରଙ୍କ ଛଦ୍ମବେଶ, ସ୍ରଷ୍ଟାଙ୍କ ସଙ୍ଗୀତ ଓ କର୍ତ୍ତବ୍ୟ ଆଦି ଏ ବିଷୟ ମାନଙ୍କର ବିବେଚନାରେ ସଂସାରର ସମସ୍ତ ସୁଖଦୁଃଖ, ଭଲମନ୍ଦ, ଈଶ୍ୱର ଓ ମନୁଷ୍ୟ, ବ୍ୟକ୍ତି, ସମାଜ, ରାଷ୍ଟ୍ରାଦି ଯେଉଁ ମହାନ୍ ବିଚାରମାନ ପ୍ରତିପାଦିତ କରାଯାଇଛି, ତାହା ବାସ୍ତବିକ୍ ଓଡ଼ିଆ ସାମ୍ପ୍ରତିକ କାବ୍ୟଜଗତର ଗତାନୁଗତିକ ବିଷୟବସ୍ତୁଠାରୁ ଏକ ଭିନ୍ନ ସ୍ୱାଦର ଓ ଏକ ଭିନ୍ନ ଚେତନାର । କବିତା ସରଳ ଓ ସାବଲୀଳ ଭାଷାରେ ରଚିତ —

'ତମର ସମଗ୍ର ସତ୍ତା
ଭରି ଯାଇପାରେ
ଉତ୍ତମ ଫଳାଫଳରେ
ପ୍ରାଚୁର୍ଯ୍ୟ ନିଅ ପର୍ଯ୍ୟାପ୍ତ ଦିଅ
ଶହେଟି ହାତରେ ସାଉଁଟି ନିଅ
ସହସ୍ର ହାତରେ ବାଣ୍ଟି ଦିଅ'

— କବିତା — ୫

କେବଳ ଭାଷା ନୁହେଁ, ଭାବଗତ ସାବଲୀଳତା ମଧ୍ୟ ଏଠି ଏକ ଅମୂଲ୍ୟ ଗୁରୁଭାବେ ଉଭା—

'ନାଦମୁଣ୍ଡେ ଶ୍ରୀ ଚୁମ୍ବନ
ସ୍ନେହେ ବୋଲେ ଜୀବଧନ
ପ୍ରୀତିପୂର୍ଣ୍ଣ ହେଉସ୍ୱର

ସତ୍ୟ ଏବଂ ପ୍ରେରଣା ଦାୟକ
ନିନ୍ଦାପାଇଁ କର ନାହିଁ
ଶବ୍ଦ ଅପବ୍ୟୟ
କିବା ଦ୍ୱେଷବିତରଣ
ସ୍ନେହଁକର, କଲ୍ୟାଣକର
ଶବ୍ଦକର........ ମାନବର ଶାନ୍ତି ଓ ମଙ୍ଗଳଗୀତି
ଦ୍ୱନ୍ଦ୍ୱର ଅନଳ ତେଜି ନ ଦେଉ
ତମର ସଂଳାପ... ।' (କବିତା – ୫୪)

ଅନେକତ୍ର ଈଶ୍ୱର ପ୍ରେମର ଏକ ଅପରୂପ ଆଲେଖ୍ୟ ଫୁଟି ଉଠିଛି ଏହି କାବ୍ୟ କଦମ୍ବରେ ।

'ପ୍ରକୃତି ସହିତ ସ୍ୱର ମିଳେଇ ଯାଅ
ଈଶ୍ୱରଙ୍କ କରୁଣାକୁ ଉପଲବ୍ଧି କର
ତାଙ୍କ ସୁନ୍ଦର ଦୃଷ୍ଟିରେ
ଆଶୀଷ ପ୍ରାପ୍ତ ହୁଅ ଈଶ୍ୱରଙ୍କ
ପ୍ରୀତିର ପ୍ରତିଶ୍ରୁତିରେ ।' (କବିତା - ୯୦)

'ଈଶ୍ୱରଙ୍କ ଅଭିଷେକେ ଯୋଗ ଦେବା ଚାଲ... (କବିତା - ୯୧)
'ତାଙ୍କରି ଗୌରବ ଗାନେ ନାଚି ଉଠୁ ଏ ହୃଦୟ' (କବିତା - ୯୨)
'ମୋ ହୃଦୟ ନିଭୃତ କକ୍ଷରେ ଶୋଇପଡ଼ ହେ ମଘବା ମହାସୁଷୁପ୍ତିରେ'
(କବିତା - ୯୩)

'ସାହାଯ୍ୟ ପାଇଁ ଆମେ ଚିତ୍କାର କଲାବେଳେ
ଈଶ୍ୱର ହିଁ ପଛେ ପଛେ ଥାନ୍ତି'' (କବିତା - ୯୪)
'କର୍ତ୍ତବ୍ୟ କରିଯାଅ, ବାକିତକ ଛାଡ଼ିଯାଅ ଈଶ୍ୱରଙ୍କୁ
ବିଶ୍ୱାସ ରଖ ତାଙ୍କ ନ୍ୟାୟରେ' (କବିତା - ୯୫)
'ଆମ ପ୍ରାର୍ଥନା କରୁ ତୁମରି ନିର୍ଦ୍ଦେଶ ପାଇଁ
ହେ ଦିବ୍ୟ ଆଲୋକ ଦାତା ପରମ ଈଶ୍ୱର' (କବିତା - ୯୭)

ଶେଷରେ ଶିଶୁଟିଏ ଭଳି ଈଶ୍ୱରଙ୍କ ପାଖେ କବି ନିଜକୁ ଭର୍ତ୍ସନା କରିଛନ୍ତି – ଆତ୍ମସମର୍ପଣର ଭାବରେ

''ମୁଁ କାନ୍ଦେ ତମ ପାଇଁ
ଶିଶୁ ଭଳି ଭୂଇଁରେ ଲୋଟଇ
ମୋ ଭିତରେ ତମର ସାନ୍ତ୍ୱନା
ଚୁପ୍ ହେବା ପାଇଁ ।। (କବିତା - ୧୦୦)

ମନୁଷ୍ୟ ଜୀବନର, ସତ୍ୟ, ଶିବ, ସୁନ୍ଦର ବିଭାବକୁ ଆଧାର କରି ବିରଚିତ ଏହି କାବ୍ୟ କଦମ୍ବ ଓଡ଼ିଆ କବିତାର, ଏକ ଆଲୋକିତ ପଥକୁ ଉନ୍ମୋଚିତ କରିଛି । ଏଥିରେ ଭାଷା, ଭାବ, ସରଳ ଓ ପଦରଚନାର ସୁଗମତା ଦୃଷ୍ଟିରୁ ଶୈଳୀ ବା କାବ୍ୟ ବନ୍ଧ ଆଳଂକାରିକ ଦୃଷ୍ଟିରୁ ବୈଦର୍ଭୀ ରୀତି ଗୁମ୍ଫିତ । ଏହାର ଗୁଣ ବିଚାର କରାଗଲେ ଏହାକୁ ପ୍ରସାଦ ଗୁଣସମ୍ପନ୍ନ କାବ୍ୟ ବୋଲି କୁହାଯିବ । ଏହାର ରସ ବିବେଚନା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ ଈଶ୍ୱର ଓ ସଂସାର, ଆନନ୍ଦ ଓ ସୁନ୍ଦର ଭାବ ପ୍ରଣୋଦିତ କାବ୍ୟରେ ସ୍ଥାୟୀ ଭାବ କ'ଣ ହୋଇପାରେ ? ଏହାର ଅନ୍ତିମ ପରିଣାମ ଦେଖି ଦେବାଦିବିଷୟାରତିରେ ଭକ୍ତିଥିବାରୁ ଏହାକୁ ଭାବ କହିବା ନାହିଁ ସାମଗ୍ରିକ ଦୃଷ୍ଟି କୋଣରୁ ସମସ୍ଥାୟୀଭାବ ଥିବାରୁ ଶାନ୍ତରସ ମଣିବା ? ଅଥବା ଏହା ମୁକ୍ତକ କୋଟୀର ରଚନା ହୋଇଥିବାରୁ ପ୍ରତ୍ୟେକ କବିତାର ସ୍ୱତନ୍ତ୍ର ମୂଲ୍ୟାୟନ କରିବା ? ଏହି ନାନା ବିକଳ୍ପ ମଧ୍ୟରୁ ଉପସଂହାରରେ କୁହାଯାଇପାରେ ଯେ, କ୍ଷୁଦ୍ର କ୍ଷୁଦ୍ର କବିତା ମୁକ୍ତକ ହେଲେ ମଧ୍ୟ ସେ ସବୁର ଏକ ଅନ୍ୱୟ ବା ସମ୍ପର୍କ ରହିଛି ଆମୂଳ ଚୂଳ । ତପରୁ ଆରମ୍ଭ କଲେ ମଧ୍ୟ ପ୍ରଥମ କବିତାର ପରିଣତି ଶେଷ କବିତାର ଈଶ୍ୱରଙ୍କ ଠାରେ ଭକ୍ତି ସମର୍ପିତ ହୋଇଛି । ତେଣୁ ଏହି ପରସ୍ପରାନ୍ୱିତ ଲଘୁ କାବ୍ୟନିଚୟ 'ଶମ' ଭାବରେ ପରିପାକ ହୋଇ ଶାନ୍ତି ରସର ପ୍ରସାର କରୁଛି । ଏଥିରେ ଅନେକ ସ୍ଥାନରେ ବସ୍ତୁଧ୍ୱନି ଓ ରସଧ୍ୱନିର ସଂଯୋଜନା କରାଯାଇଛି । ତେଣୁ ଏହା ଏକ ଉତ୍ତମକୋଟୀର କାବ୍ୟ ଭାବେ ବିବେଚିତ ହେବାର କୌଣସି ବାଧା ନାହିଁ – କାରଣ ବ୍ରହ୍ମାସ୍ୱାଦ ସହୋଦର ହେବାରେ ଏହା ବେଶ୍ ସହାୟକ ।

ଉପାଚାର୍ଯ୍ୟ
ସଂସ୍କୃତ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର-୪



# କବି ହରିହର ମିଶ୍ରଙ୍କ ଗୀତି କବିତା ସ୍ୱର ବର୍ଣ୍ଣ : ଏକ ଅନ୍ତର୍ଦୃଷ୍ଟି

*ଉପେନ୍ଦ୍ର ପ୍ରସାଦ ନାୟକ*

ଚିର ସଙ୍ଗୀତମୟ ଏ ମଣିଷ ଜୀବନ । କେବଳ ମଣିଷ କହିଲେ ଠିକ୍ ହେବ ନାହିଁ, ମଣିଷ ସହିତ ପଶୁପକ୍ଷୀ, ଜୀବଜନ୍ତୁ ବି ଏହି ସଙ୍ଗୀତର ମନ୍ମୟତାରେ ରୋମାଞ୍ଚିତ ହୁଅନ୍ତି, ପୁଲକିତ ହୁଅନ୍ତି ।

କେତେବେଳେ କେଳାର ନାଗେଶ୍ୱର ଶୁଣି ସର୍ପ ବିଳରୁ ବାହାରି ଫଣା ଟେକେ ତ ପୁଣି କେତେବେଳେ ମହ୍ଲାରର ସ୍ୱର ଝଙ୍କାରରେ ମେଘ ତା'ର ଅବାରିତ ବାରି ବର୍ଷଣ କରେ ।

ସବୁ ଏକ ଭୌତିକ ପ୍ରବାହ । ସବୁ ଏକ ସ୍ୱତଃ ପରିଚଳନ ପ୍ରକ୍ରିୟା । ଧ୍ୱନିର ଝଙ୍କାର ।

ଏହି ସଙ୍ଗୀତ ଭିତରେ ଅଛି ଜୀବନ । ଏହି ସଙ୍ଗୀତ ଭିତରେ ଭରି ରହିଛି ବଞ୍ଚିବାର ଆବେଦନ । କର୍ମ ମୁଖର ଜୀବନର ବିରତିରେ ପୁଲକିତ ହେବାର ଆବେଗ ଏବଂ ତନ୍ମୟ ହେବାର ପ୍ରବଣତା ।

ଭିନ୍ନ ଭିନ୍ନ ପରିବେଶରେ କିଏ କେତେ ଭାବରେ କେତେ ରଙ୍ଗରେ କେତେ ଢଙ୍ଗରେ ଏହି ସଙ୍ଗୀତମାନ ପରିବେଷଣ କରିପାରେ । ଗଛର ଗହଳ ଡାଳପତ୍ର ଭିତରେ କେଉଁଠି କୋଇଲି ଗୀତ ଗାଏ ତ ପଞ୍ଜୁରୀ ଭିତରେ ରହି ଶୁଆ ଶାରୀ ହରିନାମ ଗାନ କରିପାରେ । କେଉଁଠି ଭିକାରୀଟିଏ ଖଞ୍ଜଣି ଧରି ବିଷ୍ଣୁ କୀର୍ତ୍ତନରେ ବିହ୍ୱଳ ହେଉଥାଏ ତ ପୁଣି କେଉଁଠି ଯୋଗୀଟିଏ କେନ୍ଦେରା ଧରି ଟୀକା ଗୋବିନ୍ଦଚନ୍ଦ୍ର ଗୀତ ଗାଇ ବନ୍ଧନ ଓ ବୈରାଗ୍ୟର ମାର୍ଗତତ୍ତ୍ୱ ପ୍ରଖ୍ୟାପନ କରେ କେଉଁଠି ଗାୟକ ପାଲା, ଦାସକାଠିଆ ଆଦିରେ ସାହିତ୍ୟ ଚର୍ଚ୍ଚା ମାଧ୍ୟମରେ ଛାନ୍ଦ, ଚମ୍ପୂ, ବିଭିନ୍ନ ରାଗ-ରାଗିଣୀ ସମନ୍ୱିତ ସଙ୍ଗୀତ ପରିବେଷଣ କରେ ତ କେଉଁଠି ଅନ୍ୟ ଗାୟକ-ଗାୟିକାମାନେ ତାଙ୍କର ସୁଲଳିତ କଣ୍ଠରେ ଆଧୁନିକ, ଭଜନ, ଜଣାଣ ପଲ୍ଲୀସ୍ୱର ଗାଇ ଜନମନ ହରଣ କରିପାରନ୍ତି ।

ସବୁଠି ସେହି ଗୋଟିଏ କଥା । ଗୋଟିଏ ଆଭିମୁଖ୍ୟ । ପ୍ରାଣର ଅପୂର୍ବ ସ୍ପନ୍ଦନ ଉଦ୍ରେକକାରୀ ଏହି ସଙ୍ଗୀତର ମାୟା ସବୁଠି ସବୁ ଯୁଗରେ ମଣିଷ ବା ପଶୁପକ୍ଷୀ ଜୀବଜଗତକୁ ମୋହାଚ୍ଛନ୍ନ କରିଆସିଛି ।

ଓଡ଼ିଆ କାବ୍ୟ ଜଗତରେ ବହୁ କବି ଆସିଛନ୍ତି । କିଏ ତା'ର ଛନ୍ଦାୟିତ କାବ୍ୟ କବିତାର ନୂପୁର ଧ୍ୱନିରେ କାବ୍ୟ ପୁରୁଷକୁ ରସାଣିତ କରିଛି ତ କିଏ ସଙ୍ଗୀତର ଅପୂର୍ବ ମନ୍ମୟତାରେ ତନ୍ମୟ କରିଦେଇଛି ସଙ୍ଗୀତ ପ୍ରାଣ ଜନମାନସକୁ । ସଙ୍ଗୀତର ଯାଦୁକରୀ ଆକର୍ଷଣ ନିକଟରେ ରାଜା-ପ୍ରଜା, ଧନୀ-ଦରିଦ୍ର, ପୁରୁଷ-ସ୍ତ୍ରୀର ଭେଦାଭେଦ ବାଛ ବିଚାର ନାହିଁ । ସଭିଙ୍କ ପ୍ରାଣକୁ ଝଙ୍କୃତ କରିପାରେ ସଙ୍ଗୀତର ଚଳଚଞ୍ଚଳ ଝଙ୍କାର ଓ ମନମୁଗ୍ଧକର ମୂର୍ଚ୍ଛନା । ଚମ୍ପୂ, ଛାନ୍ଦ, ଜଣାଣ, ଭଜନଠାରୁ ଆରମ୍ଭ କରି ଆଧୁନିକ, ଦେଶାତ୍ମବୋଧକ ଓ ପଲ୍ଲୀସ୍ୱରର ଗୀତ ଯାଏ ସବୁପ୍ରକାର ସଙ୍ଗୀତ ଭରି ରହିଛି, ଉତ୍କଳ ଭାରତୀଙ୍କ ସଙ୍ଗୀତ ଭଣ୍ଡାରରେ ।

ଏହି ପରିପ୍ରେକ୍ଷୀରେ ଅତ୍ୟାଧୁନିକ କାବ୍ୟ ପ୍ରବାହର ଅନ୍ୟତମ ବିନ୍ଧାଣୀ କବି ହରିହର ମିଶ୍ରଙ୍କ ଗୀତି କବିତା ଉପରେ ଆଲୋଚନା କରାଯାଇପାରେ । କବି ଶ୍ରୀମିଶ୍ର ଏକାଧାରରେ ଜଣେ ସଫଳ କବି, ଧୂରୀଣ ନାଟ୍ୟକାର ଓ ଦକ୍ଷ ଅଭିନେତା ହୋଇଥିଲେ ମଧ୍ୟ ତାଙ୍କ ସଙ୍ଗୀତ ରଚନାର ସାଫଲ୍ୟ ତାଙ୍କୁ ଏକ ସଫଳ ଗୀତିକାରର ମର୍ଯ୍ୟାଦା ପ୍ରଦାନ କରେ ।

ହରିହର ମିଶ୍ର ଓଡ଼ିଶାର ସାମ୍ପ୍ରତିକ ଅନ୍ୟାନ୍ୟ ତଥାକଥିତ କବିମାନଙ୍କ ଠାରୁ ବାସ୍ତବିକ ଏକ ନିଆରା ଆତ୍ମାଟିଏ । ନିରୁତା କଳାକାରଟିଏ । ସୁଦୂର ପ୍ରସାରୀ ତାଙ୍କର କାବ୍ୟରଥ । ସେ କେତେବେଳେ ହେଲେ କେଉଁଠି ଏକ ସୀମିତ କାନ୍ଭାସ୍‌ରେ ଅଟକି ଯାଇନାହାନ୍ତି । ତାଙ୍କର ନାଟ୍ୟବିଭବ ଯେପରି ଚଳଚଞ୍ଚଳ, କାବ୍ୟ ପ୍ରବାହ ଯେପରି ଚିରମର୍ମର, ତାଙ୍କର ଆବେଗଧର୍ମୀ ମୁକ୍ତ ମଳୟ ସେହିପରି ଚିର ପ୍ରବାହିତ ।

ଗୀତିମୟ ଲୀଳାୟିତ ଅପୂର୍ବ ସ୍ୱର ଝଙ୍କାର ହରିହରଙ୍କ ସଙ୍ଗୀତର ପ୍ରାଣ । ଅନନ୍ୟ ଭାବକଳ୍ପ ଓ ରୂପକଳ୍ପ ତାଙ୍କ ଗୀତି କବିତାର ମାଧୁର୍ଯ୍ୟ । ତାଙ୍କ ଗୀତି କବିତା ଗୁଡ଼ିକ ଅଯଥା ଶବ୍ଦର ଭୋଜବାଜି କିବା ପଦ ସଂଯୋଜନାରେ ଟାଣି ଓଟାରି ଶାବ୍ଦିକ ଯମକରେ କ୍ଲିଷ୍ଟ କରାଯାଇନାହିଁ । ପଦ ଯୋଜନାର ସାରଲ୍ୟ ସାଙ୍ଗକୁ ତାଙ୍କ ଗୀତ କବିତାର ଅଙ୍ଗ ଓ ଆତ୍ମା ଯେପରି ଭାବୋଦ୍ଦୀପକ ତାଙ୍କ ଶବ୍ଦ ଓ ଛନ୍ଦର ଲାବଣ୍ୟ ସେହିପରି ମହିମା ମଣ୍ଡିତ ।

ସ୍ୱରବର୍ଣ୍ଣରେ ହରିହରଙ୍କ ଗୀତି କବିତା ଗୁଡ଼ିକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଛି-(୧)- ଲଘୁ ସଙ୍ଗୀତ (ଆଧୁନିକ), (୨) ଭକ୍ତି ସଙ୍ଗୀତ (ଭଜନ, ଜଣାଣ), (୩) ଉଦ୍‌ବୋଧନୀ ସଙ୍ଗୀତ (ଦେଶାତ୍ମବୋଧକ) । ତେଣୁ ପର୍ଯ୍ୟାୟକ୍ରମେ ତାଙ୍କର ଏହି ଗୀତି କବିତା ଗୁଡ଼ିକ ଆଲୋଚନା କରାଯାଇପାରେ ।

**ଲଘୁ ସଙ୍ଗୀତ :-** ହରିହର ମିଶ୍ର ମୁଖ୍ୟତଃ ଜଣେ ମାନବବାଦୀ କବି । ମଣିଷ ଜୀବନର ନାନାଦି ହସ କାନ୍ଦ, ବ୍ୟଥା ବ୍ୟର୍ଥତା ଓ ଅନ୍ଧାର ଆଲୋକର ରୂପକଳ୍ପ ରୂପାୟିତ ହୋଇଛି ତାଙ୍କ ଲଘୁସଙ୍ଗୀତ ଗୁଡ଼ିକରେ । ତାଙ୍କ ଲଘୁ ସଙ୍ଗୀତ ବା ଆଧୁନିକ ସଙ୍ଗୀତ ଗୁଡ଼ିକ ଅତ୍ୟନ୍ତ ଆବେଦନମୟ ଓ ମନଛୁଆଁ । ତନ୍ମଧ୍ୟରୁ କେତେକ ବେତାର ଓ ଦୂରଦର୍ଶନରେ ପ୍ରସାରିତ । ଅନୁରାଧା ପୋଡ଼ୱାଲ, ଅନୁପମା ଦେଶପାଣ୍ଡେ, କବିତା କ୍ରୀଷ୍ଣମୂର୍ତ୍ତି, ବାଣୀ ଜୟରାମ, ଚିତ୍ତରଞ୍ଜନ ଜେନା ଗୁରୁଦତ୍ତ କ୍ୟାସେଟ୍‌ରେ ଗାଇଛନ୍ତି । ହରିହରଙ୍କ ଲଘୁସଙ୍ଗୀତ ଗୁଡ଼ିକ କେଉଁଠି ଅନେକ ଆଶା, ଅଭିଳାଷ, ସ୍ୱପ୍ନ ଓ ପ୍ରବଣତାର ଛନ୍ଦମୟତାରେ ଅଙ୍କିତ ହୋଇଛି ତ ପୁଣି କେଉଁଠି ହତାଶା, ନୈରାଶ୍ୟ ସ୍ୱପ୍ନଭଙ୍ଗର ଗ୍ଲାନି ଓ କାଳିରେ ଆଚ୍ଛାଦିତ ହୋଇଛି । କବି କେଉଁଠି ଜହ୍ନ, ଫୁଲ, ମେଘ, ଫଗୁଣ, ପ୍ରେମ ଓ ପ୍ରଣୟର ମଧୁଗୁଞ୍ଜନରେ ପୁଲକିତ ହୋଇଛନ୍ତି ତ ପୁଣି କେଉଁଠି ସ୍ୱପ୍ନ ଓ ସ୍ମୃତିର ରଙ୍ଗୀନ ଯାଦୁକରୀ ମାୟାରେ ଉଲ୍ଲସିତ ହୋଇଉଠିଛନ୍ତି ।

କେତେ ଆଶା କେତେ ସ୍ୱପ୍ନ
କେତେ ସ୍ମୃତି ପାଦ ଚିହ୍ନ
ଛୋଟ ଛୋଟ ବାଲି ଘର
କେତେ ଲୁଚକାଳି ଖେଳ
ହଜିଯାଏ ବାଲି ବୁକେ
କେହି ଜାଣେନା....

(ସ୍ୱରବର୍ଣ୍ଣ-ପୃ-୧)

କିମ୍ବା-

ତୋ ଲାଗି ତୋଳିଛି ରଙ୍ଗ ଏ ଫୁଲରୁ
ତୋ ଲାଗି ଆଣିଛି ରୂପେଲି ଚାନ୍ଦରୁ
ଆକାଶର ନେଳି ଆଣିଛି ଗୋଟେଇ...
ରୂପ ନେଇ ତୁ ଯା ।। (ସ୍ୱରବର୍ଣ୍ଣ-ପୃ-୧୯)

ପ୍ରେମିକାର ବିଚ୍ଛେଦରେ ବିରହ ବେଦନା ବିଧୂରିତ କବି ପ୍ରେମିକାର ପ୍ରତିଟି ସ୍ମୃତିକୁ ଲିପିବଦ୍ଧ କରି ରଖିବାକୁ ତତ୍ପର ହୋଇ ଉଠିଛନ୍ତି । ଅନାବିଳ ପ୍ରେମ କେବେ ମରେନାହିଁ କି ମରିନାହିଁ ବୋଲି କବି ନିର୍ଘୋଷ କଣ୍ଠରେ ଘୋଷଣା କରିଛନ୍ତି । ଯଥା-

ଏକା ଏକା ଆଜି ଏତେଦିନ ପରେ
କେମିତି କାଟିବି ଦିନ
ପୋଛି ଦେଇ ସବୁ କେମିତି ଚାଲିବି
ସବୁଠି ତା' ପାଦ ଚିହ୍ନ
ଅମା ଅନ୍ଧାରେ ଚାଲିଛି ଏକା ମୁଁ
ପଥ ମୋର ସରିନାହିଁ ।।
ହାତଛଡ଼ା ମୋର ଫୁଲଟିଏ ଆଜି
ହାତଛଡ଼ା କରିଦେଲି
ଦେଉଳ ଦୁଆରେ ଦେଇଥିଲି ତାକୁ
ସମାଧିରେ ପାଇଗଲି
ସମାଧିରେ ମୋର ଲେଖିବ ଏତିକି
ପ୍ରେମ କେବେ ମରିନାହିଁ

(ସ୍ୱରବର୍ଣ୍ଣ-ହରିହର ମିଶ୍ର-ପ୍ରକାଶକ-ଲକ୍ଷ୍ମଣ କୁମାର ସାହୁ, ସରସ୍ୱତୀ ପବ୍ଲିକେଶସନ୍, ଜଗତପୁର, କଟକ-ପୃ-୨୭)

ପ୍ରେମିକ ତାର ପ୍ରେମିକା ପାଇଁ, ପ୍ରଣୟ ପାଇଁ କେବେ ନିନ୍ଦା ଅପବାଦକୁ ଅପେକ୍ଷା ରଖେ ନାହିଁ । ସବୁ ଯନ୍ତ୍ରଣା, ସବୁ କଳଙ୍କ ଭିତରେ ନୀଳକଣ୍ଠ ପରି ସବୁ ବିଷମୟ ଦୁଃଖକୁ ହଜମ କରି ପ୍ରେମିକାର ହସନ୍ତ, ଗୋଲାପୀ ଓଠରେ ହଜିଯିବାକୁ ଚାହେଁ । ତାହା ହିଁ ତ ଶାଶ୍ୱତ ଅନାବିଳ ପ୍ରେମର ପ୍ରକୃତ ପରିଚାୟକ । କବିଙ୍କ ଭାଷାରେ-

ଭଲପାଏ ବୋଲି କେବେ
ତୁମ ଆଗେ କହିନି
ଚାଲିଗଲେ ଆଜି ତୁମେ
ଲୁହ ମନା ମାନିନି
ନଦୀ ତୁମେ ତୃଷ୍ଣା ତୁମେ
ଦୁଃଖ ତୁମେ ସୁଖ ବି ।।

ନିନ୍ଦା ଅପବାଦ ବିନା
ଭଲ କେହି କହିନି
ଭଲ ବୋଲି ଫୁଲଟିର
ମୂଲ କେହି ଦେଇନି
ପ୍ରୀତି ତୁମେ ଗୀତି ତୁମେ
ଛାତି ତଳେ ତାତିଟି । (ସ୍ୱରବର୍ଣ୍ଣ-ପୃ-୪୩)

ଏହିପରି ବହୁ ବ୍ୟଥା ବେଦନାର, ପ୍ରୀତି ଓ ପ୍ରକୃତିର, ରଙ୍ଗ ଓ ରଜନୀର, ଫୁଲ ଓ ପଂଗୁର ପ୍ରେମ ପ୍ରଣୟର ଫୁଲ ଫୁଟି ଉଠିଛି ଶ୍ରୀ ମିଶ୍ରଙ୍କ ସୃଷ୍ଟି ପାଦପରୁ । ତାଙ୍କର ଏହି ଗୀତିକବିତା ଗୁଡ଼ିକ ଅନ୍ୟାନ୍ୟ ପାରମ୍ପରିକ ଗୀତଠାରୁ ସାମାନ୍ୟ ନିଆରା ଏବଂ ଏ ଗୁଡ଼ିକର ଭାବକଳ୍ପ ଅତ୍ୟନ୍ତ ଗଭୀର । କବି ବିଭିନ୍ନ ସ୍ୱରକୁ ସାମ୍ନାରେ ରଖି ଗୀତ ରଚନା ଦରନ୍ତି ବୋଲି ସ୍ୱୀକାର କରିଛନ୍ତି-ତେଣୁ ଏଥିରେ କବିଙ୍କର ସ୍ୱତନ୍ତ୍ର ଭାବ ସ୍ପଷ୍ଟ ପରିସ୍ଫୁଟ ହୁଏ ।

**(୨) ଭକ୍ତି ସଙ୍ଗୀତ :-** କବି ହରହର ଜଣେ ଜଗନ୍ନାଥ ଭକ୍ତ । ବିଭୁ ପ୍ରେମରେ ବିଭୋର । ତାଙ୍କ ରଚିତ ଭଜନ ଗୁଡ଼ିକ ତାଙ୍କ ଅନାବିଳ ବିଭୁ ପ୍ରେମର ପରିଚୟ ଦିଏ । ସ୍ୱତଃସ୍ଫୁର୍ତ ଭାବରେ ହରିହରଙ୍କ ଭଜନରେ ଅନାବିଳ ଭକ୍ତି ଓ ନିଜସ୍ୱ ଅଭିବ୍ୟକ୍ତି ଅତ୍ୟନ୍ତ ଜୀବନ୍ତ ଭାବରେ ଫୁଟି ଉଠିଛି । ଭକ୍ତ ଏଠି କେବଳ ନିଜ ପାଇଁ ନୁହେଁ, ସମଗ୍ର ଜନଗଣଙ୍କ ହିତ ପାଇଁ ଭଗବାନଙ୍କୁ ତାଙ୍କ ଆଶୀଷର ବାରି ଅବାରିତ ଭାବରେ ଢାଳି ଦେବାକୁ ନିବେଦନ କରିଛି । ଯଥା:-

ଢାଳିଦିଅ ସାରା ଧରଣୀରେ ଆଜି
ତୁମରି ଆଶୀଷ ଧାରା
ଅନ୍ଧାର ମନେ କଣ୍ଟକ ବନେ
ଦିଅ ଆଲୋକ ଇଶାରା ।

ପୁଣି ଭଗବାନଙ୍କ ମହିମା ପ୍ରଖ୍ୟାପନ କରିବାକୁ ଯାଇ ସେ କହିନ୍ତି-

ତୁମେ ତ ଅସୀମ ଆକାଶର ସମ
ସଂସାରେ ତୁମ ରୂପ ଅନୁପମ
ଦେଖିନି ଯା' ଆଖି ମନେ ଅଛି ଲାଖି
ମନସରୋବରେ ଛାୟା ତା'ର ଲେଖି

ଆକାଶର ସେହି ଶୂନ୍ୟତା ସାଥେ
ମିଶାଏ ମୋ ମନ ପରା ॥

(ସ୍ୱରବର୍ଣ୍ଣ-ପୃ-୮୦)

କବି ଭଗବାନଙ୍କୁ କେବଳ ସର୍ବବୃହତ୍ ଶକ୍ତି ଭାବରେ ବର୍ଣ୍ଣନା କରିନାହାଁନ୍ତି, ଭଗବାନ ହିଁ ଦୁଃଖିରଙ୍କି, ଭୋଖୀ ଶୋଷୀ ସଭିଙ୍କ ପାଇଁ କେବଳ ମାତ୍ର ସାହା ଭରସାର ଉତ୍ସ ବୋଲି ଉଲ୍ଲେଖ କରିଛନ୍ତି । କବିଙ୍କ ଭାଷାରେ-

ଅନ୍ଧର ଖଞ୍ଜଣି ତୁମେ ଖଞ୍ଜର ସଙ୍ଗୀତ
ଦୁଃଖିର ସଙ୍ଗାଳି ତୁମେ ଦୁଃଖିର ସଙ୍ଗାତ
କ୍ଷୁଧାର୍ତ୍ତ, ଭକତ ପାଇଁ ତୁମେ କଇବଲ୍ୟ
ତୃଷାର୍ତ୍ତ ସନ୍ଥର ତୁମେ ପାଦୁକର ଜଳ
ନିଆଶ୍ରୀ ଜନର ତୁମେ ରତନ ଭଣ୍ଡାର
ପତିତର ପାଇଁ ତୁମେ ନୀଳଚକ୍ରେ ନେତ ॥

(ସ୍ୱରବର୍ଣ୍ଣ-ପୃ-୮୧)

ଭକ୍ତକବି ହରିହର ଜଗନ୍ନାଥଙ୍କୁ ବହୁଭାବରେ ବହୁ ସ୍ୱରରେ ନିଜର ଅଭିବ୍ୟକ୍ତି ବଖାଣିଛନ୍ତି ଓ ମୁକ୍ତ ଭାବରେ ନିଜର ଭକ୍ତି ନୈବେଦ୍ୟ ବାଢ଼ିଛନ୍ତି । ଜଗନ୍ନାଥଙ୍କ ମହିମା ପ୍ରଖ୍ୟାପନ କରି ସହାୟତା ବାଞ୍ଛା କରିଛନ୍ତି । ବିଭୁ କୃପା ବିନା ଭକ୍ତର କିଛି ଅସ୍ତିତ୍ୱ ନାହିଁ ବୋଲି ସେ ମୁକ୍ତ କଣ୍ଠରେ ଘୋଷଣା କରିଛନ୍ତି । ଜଣେ ଭକ୍ତ ନିଜକୁ ସମ୍ପୂର୍ଣ୍ଣ ଭାବରେ ବିଭୁ ଚରଣାବିନ୍ଦରେ ନିବେଦିତ ନ କଲେ ଏପରି ଅଭିବ୍ୟକ୍ତି ବ୍ୟକ୍ତ କରିପାରିବ ନାହିଁ ବୋଲି ସେ କହନ୍ତି :-

ଜଗନ୍ନାଥ.....
କେଉଁ ଆଡ଼େ ନେଉ ମତେ ତତେ ହିଁ ଜଣା

x x x

ଆଖି ଦେଲୁ କାନ ଦେଲୁ
ହାତ ଦେଲୁ ପାଦ ଦେଲୁ
କେତେ ଯତନରେ ମତେ ସଜାଇ ଗଢ଼ିଲୁ

x x x

ଦେଖାଇଲେ ଦେଖିବି ମୁଁ

ଚଳାଇଲେ ଚାଲିବି ମୁଁ

ଖୁଆଇଲେ ଖାଇବି ମୁଁ

ଶୁଆଇଲେ ଶୋଇବି ମୁଁ

ତୁହି କରୁଣା ସାଗର ମୁହିଁ ଲହରୀ ସିନା

(ସ୍ୱରବର୍ଣ୍ଣ-ପୃ-୮୨)

ଅଥବା-କାଳିଆରେ ମତେ ତୁ ନେଇ ଯା କୋଳକୁ

ଟେକ ରହିଥାଉ ତୋର କାଳରୁ କାଳକୁ

x x x

ଯେତେ ସବୁ ଆପଣାର କଲେ ସବୁ ପର

ଏକା ହୋଇ ରହିଥାଉ ସିନା ତୁ ମୋହର (ଇତ୍ୟାଦି)

(ସ୍ୱରବର୍ଣ୍ଣ-ପୃ-୯୧)

କବି ଏକାନ୍ତ ଭାବରେ ଭୋଗବିଳାସ ପରିତ୍ୟାଗ କରିପାରି ନାହାନ୍ତି । ଅନ୍ୟମାନଙ୍କ ପରି ସେ ମଧ୍ୟ ଭଗବାନଙ୍କ ଆଶ୍ରୟ, ସହାୟତା ଏବଂ ସର୍ବୋପରି କରୁଣା କାମନା କରିଛନ୍ତି । ବାରମ୍ବାର ନାନା ଭାବରେ ବିଭୁଙ୍କର ମହିମାଗାନ କରିଛନ୍ତି, ପୁଣି କେତେବେଳେ ବିଭୁ କରୁଣାରୁ ବଞ୍ଚିତ ହୋଇ ଅଭିମାନରେ ଆକ୍ଷେପ କରି କହିଛନ୍ତି :-

ଫିଟାଇ କହିଛି ଫଟା କପାଳରେ
କେତେ ଅସରନ୍ତି କଥା
ଫଟାଇ ଦେଇଛି କେତେଥର ତୁମ
ପଥର ପାଦରେ ମଥା
ନ ଶୁଣିଲେ ବାକି ଭାବଗ୍ରାହୀ ବୋଲି
କାହିଁକି ଡାକିବି କହ ।।

(ସ୍ୱରବର୍ଣ୍ଣ-ପୃ-୮୫)

କିମ୍ବା-

ଜଗନ୍ନାଥ ହୋ.... ଭଲା ଲଗାଇଛ ବସି ପାଲା
କା' ଲାଗି ପକାଅ କଂସାର କବାଟ
କାହା ଲାଗି କର ସାହାଣ ମେଲା ॥
ଜପତପ ଧ୍ୟାନ ବେଦମନ୍ତ୍ର ପଢ଼ି
ଭକତି ବାଟରେ ଉଠିଲେ ଯେ ସିଡ଼ି
ପାଦରୁ ତାଙ୍କର ସିଡ଼ି ନିଅ କାଢ଼ି
ମୂରୁଖ ମୁଣ୍ଡରେ ବାନ୍ଧିଲ ପଗଡ଼ି
କା' ଲାଗି ଖୋଲୁଛ ମୁକତି ଦୁଆର
କା' ଲାଗି ପକାଅ ପିତଳ ତାଲା ।

(ସ୍ୱରବର୍ଣ୍ଣ-ପୃ-୯୦)

କବି ଧର୍ମ ବିଶ୍ୱାସରେ ଅତ୍ୟନ୍ତ ଉଦାର । ସର୍ବଧର୍ମ ସମନ୍ୱୟରେ ଆଲ୍ଲା, ଯୀଶୁ ଓ କୃଷ୍ଣଙ୍କୁର ଏକ ଈଶ୍ୱର ଶକ୍ତିରେ ରୂପାୟିତ କରି ନିଜ ଉଦାରତାର ପରିଚୟ ଦେଇଛନ୍ତି ।

କବି ଲେଖନୀରେ :-

କିଏ ଡାକେ ତୁମେ ଆଲ୍ଲା ଯୀଶୁ
ପୁଣି କିଏ ଡାକେ ତୁମେ କୃଷ୍ଣ
ସବୁଠି ଥାଅ ଭେଦ ନ କହ
ତୁମେ ତ ଦାରୁବ୍ରହ୍ମ ॥
ଇଦ୍‌ର ଚାନ୍ଦ ପରି ତୁମରି ଅଧର
ବୃକ୍ଷ ତୁମେ କ୍ରୁଶ ତୁମେ ଜଗତଠାକୁର
ଶ୍ୱେତ ପୀତ କୃଷ୍ଣ ତୁମେ ତ୍ରିଗୁଣରେ ସଜ୍ଜା
ଜଗତର ନାଥ ତୁମେ ତ୍ରିଭୁବନେ ରାଜା ।

(ସ୍ୱରବର୍ଣ୍ଣ-ପୃ-୮୯)

କିନ୍ତୁ ଜଗନ୍ନାଥ ଭକ୍ତ ହରିହର ପରୋକ୍ଷରେ ସବୁ ଧର୍ମର ଇଷ୍ଟ ପରିପ୍ରେକ୍ଷୀରେ ଜଗତର ନାଥ ଜଗନ୍ନାଥ ସେ ସର୍ବଶକ୍ତିମାନ ସର୍ବ ବିଦ୍ୟମାନ ତ୍ରିଭୁବନର ସର୍ବମୟ କର୍ତ୍ତା ବୋଲି ପ୍ରକାରାନ୍ତରେ ସୂଚନା ଦେଇଅଛନ୍ତି ।

**ଦେଶାତ୍ମବୋଧକ ସଙ୍ଗୀତ :-**

ସାଧାରଣତଃ ଦେଶାତ୍ମବୋଧକ ସଙ୍ଗୀତ ଗୁଡ଼ିକ ସମବେତ କଣ୍ଠରେ ବୋଲାଯାଇଥାଏ । ପ୍ରାରମ୍ଭିକ ସଙ୍ଗୀତ ଭାବେ ଅଥବା ଉଦ୍‌ଯାପନୀ ସଙ୍ଗୀତ ଭାବେ ସଭା ସମିତି ଆଦିରେ, ବେତାର, ଦୂରଦର୍ଶନ ଆଦିରେ ଗାନ କରାଯାଇଥାଏ । ଏହା ଯେପରି ଜନମାନସରେ ଜାତୀୟତାର ବହ୍ନି ପ୍ରଜ୍ୱଳନ କରିପାରେ ଠିକ ସେହିପରି ଶାନ୍ତି, ମୈତ୍ରୀ ଓ ଏକତାର ମନ୍ତ୍ର ଜନ ପ୍ରାଣରେ ଜାଗ୍ରତ କରିପାରେ । ଏ ଦିଗରେ ଓଡ଼ିଆ କବିମାନଙ୍କ ମଧ୍ୟରେ କବିବର ରାଧାନାଥଙ୍କ ରଚିତ 'ସର୍ବେଷାଂନୋ ଜନନୀ ଭାରତ', କାନ୍ତ କବି ଲକ୍ଷ୍ମୀକାନ୍ତଙ୍କ 'ବନ୍ଦେ ଉତ୍କଳ ଜନନୀ' ଅଥବା କବି ଗୋଦାବରୀଶ ମଶ୍ରଙ୍କ 'ତୁଙ୍ଗ ଶିଖରୀଚୂଳ' ଆଦି ଦେଶାତ୍ମବୋଧକ ସଙ୍ଗୀତ ଗୁଡ଼ିକ ବିଶେଷ ଲୋକପ୍ରିୟତା ଅର୍ଜନ କରିପାରିଛି । ସେହି ପରିପ୍ରେକ୍ଷୀରେ କବି ହରିହରଙ୍କର ମଧ୍ୟ କେତୋଟି ଉଦ୍‌ବୋଧନୀ ସମବେତ କଣ୍ଠ ସଙ୍ଗୀତ ଆମର ଦୃଷ୍ଟି ଆକର୍ଷଣ କରେ । ଯଥା:-

ରାତ୍ରୀ ପାହିଛି ଯାତ୍ରୀ ଚାଲିଛି
  ଗିରିପଥ ସୀମା ଡେଇଁ
ଜନନୀ ଦେଇଛି ରକ୍ତ ତିଳକ
  ଯାଅରେ ବିଦାୟ ନେଇ ॥

(ସ୍ୱରବର୍ଣ୍ଣ-ପୃ-୮୯)

ଅଥବା
ହିମାଳୟ ଯା'ର ଶିର
  ସାଗର ଯାହାର ଛାତି
ସେହି ଏ ଭାରତ ବର୍ଷ
  ସାହସ ହରାନା ସାଥି ॥ (ଇତ୍ୟାଦି)

(ସ୍ୱରବର୍ଣ୍ଣ-ପୃ-୯୭)

ହରିହରଙ୍କ ଉଦ୍‌ବୋଧନୀ ସଙ୍ଗୀତ ଗୁଡ଼ିକରେ ଭାଷା ଯେପରି ତୀକ୍ଷ୍ଣ ତା'ର ଆତ୍ମା ଠିକ୍ ସେହିପରି ପ୍ରାଣସ୍ପର୍ଶୀ । ଏହା କେବଳ ଯେ ହୃଦୟ ତନ୍ତ୍ରୀରେ ଜାତୀୟତାର ଶିହରଣ ସୃଷ୍ଟି କରେ ତାହା ନହେଁ, ଏହା ଜନମାନସକୁ ଦେଶପ୍ରେମର ମହାମନ୍ତ୍ରରେ ଦୀକ୍ଷିତ କରିବାରେ ସକ୍ଷମ ହୋଇପାରେ ।

କବି ହରିହରଙ୍କ ଲଘୁ ସଙ୍ଗୀତ ଓ ଦେଶାତ୍ମବୋଧକ ସଙ୍ଗୀତ ମାନଙ୍କଠାରୁ ଭକ୍ତି ସଙ୍ଗୀତ ଗୁଡ଼ିକ ଅଧିକ ମନଛୁଆଁ ଓ ଭାବଗର୍ଭକ ହୋଇଅଛି । ଏହା ତାଙ୍କ ନିରୁତା ବିଭୁ ପ୍ରେମର ସ୍ୱାକ୍ଷର ବହନ କରେ ।

ତେବେ ହରିହର ମିଶ୍ରଙ୍କ ଗୀତିକବିତା ଗୁଡ଼ିକର ଆବେଦନ ସାମଗ୍ରିକ ଭାବରେ ଅତ୍ୟନ୍ତ ଉଚ୍ଚକୋଟୀର ଏବଂ ପ୍ରାଣସ୍ପର୍ଶୀ । ତାଙ୍କର କେତେକ ଗୀତିକବିତା ସ୍ଥାନେ ସ୍ଥାନେ ସଙ୍ଗୀତର ଧରାବନ୍ଧା ନିୟମ ଓ ଧର୍ମରୁ ସାମାନ୍ୟ ଭାବେ ମୁକୁଳି ଯାଇଛି ଓ ଆଧୁନିକ କବିତାର ଛାପ ପଡ଼ିଯାଇଥିଲେ ମଧ ସାଙ୍ଗୀତିକ ମୂଲ୍ୟ ବ୍ୟାହତ ହୋଇନାହିଁ ।

ଅତ୍ୟାଧୁନିକ ଗଦ୍ୟଛନ୍ଦଧର୍ମୀ କବିତାଠାରୁ ଶ୍ରୀ ମିଶ୍ର ଏହି ଗୀତିକବିତା ରଚନାରେ ଅଧିକ ମନୋନିବେଶ କଲେ ଓଡ଼ିଆ କାବ୍ୟ ଭଣ୍ଡାର ଓଡ଼ିଆ ସଂସ୍କୃତି ଓ ସଙ୍ଗୀତ ଭଣ୍ଡାର ନିଶ୍ଚିତ ରୂପେ ଯେ ସମୃଦ୍ଧ ହୋଇପାରନ୍ତା ଏଥିରେ ସନ୍ଦେହର ଅବକାଶ ନାହିଁ ।

ବରିଷ୍ଠ ଅଧ୍ୟାପକ
ହୋମିଓପାଥୀ ମହାବିଦ୍ୟାଳୟ, ଭୁବନେଶ୍ୱର
'ଆଶା ସ୍ରୋତସ୍ୱିନୀ'ରେ ପ୍ରକାଶିତ ।



## ॥ ଯତିପାତ ॥

— ଏକ —

ପବନ ସବୁ ଖୋଲିଦେଲା ସଙ୍କେତ ପାହାଡ଼ରେ
ସ୍ପନ୍ଦନର ଯତିପାତରେ ଝର୍ଣ୍ଣା ଭଳି ପ୍ରପାତରେ
ଖସିଯିବାକୁ ଇଛାତ... ଇଛା ଉଲଗ୍ନ ହେବାକୁ
ନାରୀର ଗର୍ଭ ଭଳି ହୋଇପାରେ ମୂଳ ଉତ୍ସ ଖୋଜି ଖୋଜି
ପାହାଡ଼ ଖୋଲକୁ

ନାରୀ ଓ ପୁରୁଷ
ଶରୀରର ଅଭ୍ୟନ୍ତର ବାଛି ନେଲେ... ଏକମାତ୍ର ମୂଳାଧାର
ଶୀତ ତାପ ନିୟନ୍ତ୍ରିତ ଏକ ହଂସପୁର,
ସ୍ୱପ୍ନମୟ ସଦା ଗର୍ଭାଶୟ...

ଗରଳ ପିଇଲା ପରେ
ଶିବଙ୍କ ଇଛା ହେଲା ଦିନେ
ରାକ୍ଷସଙ୍କ ମୃତ୍ୟୁ ପରେ
ବିଷ୍ଣୁଙ୍କର ଇଛା ହେଲା ଦିନେ
ଏକ ଅଙ୍ଗେ ବହୁ କଳା ବହୁ ରଙ୍ଗ
ମୋହିନୀ ମାୟାର

ଆମର ସମସ୍ତ କର୍ମ ଆଜି ଠାରୁ ଭୟହୀନ
ଜଳମଗ୍ନ ଦ୍ୱାରକା ବା ଯଦୁବଂଶ ନାଶ
ଅତିରିକ୍ତ ମଦ୍ୟପାନ ଅଚେତନ ଏରକା ଉଦ୍ୟାନ
ସର୍ପ ବ୍ୟାଘ୍ର ମେଘ ବଜ୍ର ବିଜୁଳି ବୃଂହପାତ
ଆମ ଦେହେ ସ୍ପର୍ଶ, କିନ୍ତୁ ପବନ ଓ କ୍ରମଶଃ ଶୂନ୍ୟର
ଏଠାରେ ବିମୁକ୍ତ ଆମ ଉତ୍ତେଜନା
ଏଠାରେ ଆମେ ଆମ ଅଦୃଶ୍ୟମୂର୍ତ୍ତିର ରୂପ
ନିଶ୍ଚଳ ଶାଖା ପ୍ରଶାଖାରେ ଛନ୍ଦାୟିତ
ଆମର ମୃତଅରଣ୍ୟ, ମୃତଜହ୍ନ ଜହ୍ନରାତି ।

— ଦୁଇ —

ତରଙ୍ଗ... ତରଙ୍ଗ ହୁଏ ପାହାଡ଼
ବଙ୍କିମ କେଶ ସଜ୍ଜା ଭଳି ଓଡ଼ିଆ ନାରୀର
ପକ୍ଷ୍ମପାତ ଘନ ଘନ ବିଦ୍ୟୁତ୍‌ର
ମ୍ଳାନ-ଚନ୍ଦ୍ରମାର କୁଙ୍କୁମ
ଦେହେ ଦେହେ ଧୂସର ସଞ୍ଜର ରଙ୍ଗ
ଉଜ୍ଜଳ କପୋଳ ଦେଶ... ଶୁଭ୍ର ସ୍ମିତ

ଏଠୁ ଯିବାକୁ ଦିଏ ନା ପବନ
ନିଦାଘର ଅସହ୍ୟ ତାତିରୁ ନେଇ
ଛାତିରେ ପକେଇ ରଖେ ରାତି ରାତି

ତମେ ମତେ ଏକା ଦେଖୁଛ
ମୋ' ଚାରୋଟି ହାତ, ଚରୋଟି ଗୋଡ଼
                    ଦେଖୁନାହଁ

ଆମର ଛନ୍ଦାଛନ୍ଦି ବାହୁ ବନ୍ଧନରେ
କ୍ୱଚିଦ୍ ପଡ଼ିବାର ଭୟ, କ୍ୱଚିଦ୍, ଆଶଙ୍କା

ମୁଁ ଜାଣେ ତମେ ଏଥିପାଇଁ ଦିନେ ଦିନେ
ଏକୁଟିଆ ଛଟପଟ ହୁଅ ଠିଆ ହୋଇ
ଅନ୍ୟ ପାହାଡ଼ରେ
ଆମର ସଙ୍କେତ ସବୁ ବେଶି କିଛି
କହିଦିଏ ପବନ
ଯେଉଁ ସମ୍ପର୍କ ଆମେ ଶିଖୁ
'ଲୁଚେଇ ରଖିବୁ' ବୋଲି
ଅଯଥା ଛାତିରେ ଆମ ପଥର ମଡ଼େଇ
ଆଜି ତା ଉପରେ ଚଲାବୁଲା କରିବାର
ସମୟ ଫେରି ଆସିଛି
ସୁଯୋଗ
ନୂତନ ଗ୍ରହରେ ଏକ ପଦ ଚାଳନାର
ନିଜ ନିଜ ସ୍ୱପ୍ନ ଆଉ ସ୍ପନ୍ଦନର ଯତିପାତ ନେଇ ।



# ହରିହର ମିଶ୍ରଙ୍କ ଯତିପାତ ଏକ ଅଧ୍ୟୟନ

— ଏକ —

*୰ ମଧୁସୂଦନ ମହାନ୍ତି*

'ଯତିପାତ' ନବରବି, ଜୁନ୍, ୧୯୭୩ରେ ପୃଷ୍ଠା ୧୭, ପ୍ରକାଶିତ ।

'ଇଚ୍ଛା ଉଲଗ୍ନ ହେବାକୁ.............................. ଆମର ସମସ୍ତ କର୍ମ ଆଜିଠାରୁ ଭୟହୀନ ।।''

ସାହିତ୍ୟର ଉପଜୀବ୍ୟ ମଣିଷ । ମନୁଷ୍ୟର ସୁଖ-ଦୁଃଖ, ଭାବନା-କଳ୍ପନା, କ୍ରିୟା-କଳାପ, ଅନୁଭୂତି ଅଭିଜ୍ଞତାର ଉପାଦାନ ବିନା ସାହିତ୍ୟ ସୃଷ୍ଟି ସମ୍ଭବ ନୁହେଁ ।

ସାହିତ୍ୟିକ ପକ୍ଷରେ, ମନୁଷ୍ୟ ମାତ୍ରେହିଁ ଅନନ୍ତ ରହସ୍ୟର ଆଧାର ଓ ସେଇ ସୂତ୍ରରେ ଅନନ୍ୟ । ବ୍ୟକ୍ତିର ଚେତନ, ପ୍ରାକ୍‌ଚେତନ ଓ ମଗ୍ନଚେତନର ସମଗ୍ର ରୂପରେ ହିଁ ସାହିତ୍ୟିକର ସତ୍ୟ ସନ୍ଧାନ । ଯେଉଁ ସାହିତ୍ୟକର୍ମୀ ମନୁଷ୍ୟ ସମ୍ବନ୍ଧରେ, ଯେତେ ବେଶୀ ଅନୁସନ୍ଧାନ ତତ୍ପର, ତାଙ୍କର ସାହିତ୍ୟ ସୃଷ୍ଟି ସେତେବେଶୀ ମୂଲ୍ୟବାନ ।

ସମାଜରେ ନିଜର ନିର୍ଦ୍ଦିଷ୍ଟ ସ୍ଥାନଟି ମାନି ନେଇ ସେଇ ସ୍ଥାନର ଉପଯୋଗୀ ହୋଇ ଉଠିବାର ନାମ ଯଦି 'ଚରିତ୍ର ହୁଏ ତେବେ ସାହିତ୍ୟିକ ସେ 'ଚରିତ୍ରବାନ' ଏକଥା କୁହାଯାଇ ପାରେନା । କାହିଁକି ନା ସାହିତ୍ୟିକର 'କୌତୂହଳ' କୌଣସି ବିଶେଷ କର୍ମ ବିଧିରେ ଆବଦ୍ଧ ନୁହେଁ ।

ସମାଜର ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଅଧିକାର କରି, ସେଇ ସ୍ଥାନର ଉପଯୋଗୀ ହୋଇ ଉଠିବାକୁ... ବ୍ୟକ୍ତିର ପରାମାର୍ଥ ବୋଲି କୌଣସି ସତ୍-ସାହତ୍ୟିକ ମାନିନେବାକୁ ଅମଙ୍ଗ । ସାହିତ୍ୟିକର କାରବାର ସେଇ ମଣିଷକୁ ଘେନି, ଯେଉଁ ମଣିଷ ପ୍ରତିଷ୍ଠାନର ପ୍ରକୋପରେ ନିଃଶେଷିତ ନୁହେଁ । ଯେଉଁ ମନୁଷ୍ୟର ମନ କୌଣସି ପୂର୍ବ ନିର୍ଦ୍ଦିଷ୍ଟ ସରଳରେଖାରେ ଧରାଯାଇ ପାରେନା.. ଯେଉଁ ମଣିଷ ଜଟିଳ, ବହୁମୁଖୀ, ଆତ୍ମ ବିଭକ୍ତ.., ଯେଉଁ ମନୁଷ୍ୟ, ବହୁ ସହସ୍ର ଶତାବ୍ଦୀର ବିବର୍ତ୍ତନ ମଧ୍ୟ ଦେଇ ମନୁଷ୍ୟତ୍ୱର ପର୍ଯ୍ୟାୟରେ ପହଞ୍ଚିଛି ।

ସେ ମନୁଷ୍ୟର ପାଖୁଡ଼ାଠାରୁ ପାଖୁଡ଼ା, କେତେ ଯୁଗର, କେତେ ରୂପାନ୍ତର ସ୍ୱାକ୍ଷର ପ୍ରଚ୍ଛନ୍ନ !

ସେ ମନୁଷ୍ୟର ଅସ୍ତିତ୍ୱରେ, ଏକାସାଙ୍ଗେ ଆଦିମ ଅରଣ୍ୟର ଅନ୍ଧକାର ସ୍ମୃତି ଏବଂ ଭବିଷ୍ୟତ ସଭ୍ୟତାର ଉଲ୍ଲାସ ସ୍ୱପ୍ନର ମିଶାମିଶି ।

ଏଇ ଜଟିଳ, ଜଙ୍ଗମ, ଅସମ୍ପୂର୍ଣ୍ଣ ଅଥଚ ସମଗ୍ର ବ୍ୟକ୍ତି ମନୁଷ୍ୟକୁ ସମାଜ ପରିକଳ୍ପନାର କଟାଗାରରେ ପକାଇ 'ଚରିତ୍ରବାନ' କରିବା ଖାଣ୍ଟି ସାହିତ୍ୟିକର ଦୃଷ୍ଟିରେ ମୂଢ଼ତା ଛଡ଼ା ଆଉ କିଛି ନୁହେଁ ।

ସାହିତ୍ୟିକ ମନୁଷ୍ୟର ସମଗ୍ର ଅଥଚ ଅସମ୍ପୂର୍ଣ୍ଣ ରୂପଟିକୁ ତାଙ୍କ ରଚନାରେ ଫିଟାଇ ଫୁଟାଇବାକୁ ଚେଷ୍ଟା କରନ୍ତି । ଆଗରୁ ଯଦି ଏହାଙ୍କ ମନ ଏକ ନିର୍ଦ୍ଦିଷ୍ଟ ଚରିତ୍ରର ଛାଞ୍ଚରେ ବନ୍ଧାପଡ଼େ, ତେବେ ତାଙ୍କର ସେ ଉନ୍ମୁକ୍ତ, ଉନ୍ମୁଖ, ସହାନୁଭୂତିଶୀଳତା, ଆସିବ କାହୁଁ ? ଯାହା ଗୁଣରେ, ସାହିତ୍ୟିକ ବିଚିତ୍ର ପ୍ରକୃତିର ସ୍ତ୍ରୀ-ପୁରୁଷଙ୍କ ସାଙ୍ଗେ ପ୍ରକୃତ ଆତ୍ମୀୟତା ଅର୍ଜନ କରିପାରିବ ? ସାହିତ୍ୟ 'ସହୃଦୟ-ସମ୍ବାଦୀ' ହେଲେ ସିନା..

.. ଆମ ଅନୁଭୂତିକୁ ସୂକ୍ଷ୍ମତର କରି, ବୋଧରେ ଗଭୀରତା ଆଣି... ବୁଦ୍ଧିର ପରିଶୀଳନ ଘଟାଇ, ଆମର ବିଚିତ୍ର ଏବଂ ଅନେକ ସମୟରେ, ପରସ୍ପର ବିରୋଧୀ ଚିତ୍ତବୃତ୍ତି ମଧ୍ୟରେ, ସଙ୍ଗତି ଆଣି ପାରିବ ? ଅଭ୍ୟାସର ଆଡ଼ଷ୍ଟ ସଂକୀର୍ଣ୍ଣତା ଦୂର କରି, ମନୁଷ୍ୟତ୍ୱର ଅମିତ ସମ୍ଭାବନା ପ୍ରତି, ଆମକୁ ଜାଗ୍ରତ କରିପାରିବ ? ସାହିତ୍ୟ ପାଠ, ଆମ ମନକୁ ସରଳ କରିବ ?

ଆମ ବିଚାରରେ ଔଦାର୍ଯ୍ୟର ସଂଚାର କରି ପାରିବ ? ସର୍ବକାଳର ସର୍ବ ମନୁଷ୍ୟ ସଙ୍ଗେ ଆତ୍ମୀୟତା, ଶାଶ୍ୱତବିଶ୍ୱ-ଚେତନା, ଏ ଭୂମିର କୃଷ୍ଟିକୁ ଦିନେ କରିଥିଲା ବିଶ୍ୱମ୍ଭର ଓ ସେଇ ସତ୍ୱରେ ବିଶ୍ୱମ୍ଭର ।

'ସବା ମାନୁଷା'ଙ୍କ ସାଙ୍ଗେ, ସାହିତ୍ୟିକର ସଂଯୋଗ ଯେତେ ସଙ୍କୀର୍ଣ୍ଣ ଓ ଦୁର୍ବଳତର ହେବ.. ମାନବୀୟ ଅସ୍ତିତ୍ୱର ବିଚିତ୍ରତା ସଙ୍ଗେ ତାଙ୍କ ଯୋଗାଯୋଗ, ସେତେ ଦୂରେଇ ଯିବ । ତାଙ୍କ ଉପଜୀବୀ, ଅଭିଜ୍ଞତାର ବ୍ୟାପ୍ତି ଓ ବହୁମୁଖୀନତା ସେତେ କମି କମି ଆସିବ । ଅଭିମାନୀ ଆଦର୍ଶର ଚାପରେ, ଉନ୍ମୁଖ ଜୀବନ-ଜିଜ୍ଞାସା, କ୍ରମେ ଶୀର୍ଣ୍ଣତର ହେବ ।

ଅବଶେଷରେ ଏ ଭଳି ସାହିତ୍ୟିକର, ଜୀବନଠାରୁ ପ୍ରତୀକକୁ ବଡ଼ ଠଉରାଇ, ଭାଷାର ପ୍ରୟୋଗ ନୈପୁଣ୍ୟରେ, ସାହତ୍ୟର ଚରିତାର୍ଥତା, ସନ୍ଧାନ କରିବେ ।

ଏକଥା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଶବ୍ଦ ପ୍ରୟୋଗର ନିପୁଣତା ଦ୍ୱାରା ହିଁ 'ଭାଷା' ସାହିତ୍ୟର ପର୍ଯ୍ୟାୟକୁ ଉନ୍ନୀତ ହୁଏ । କିନ୍ତୁ ଏଥି ସଙ୍ଗେ ସଙ୍ଗେ ଏ କଥାଟି ମଧ ମନେ ରଖିବାକୁ ହେବ ଯେ 'ଭାଷା' ମାଧମ ମାତ୍ର । ତାର ନିଜସ୍ୱ କୌଣସି ମୂଲ୍ୟ ନାହିଁ । ଭାଷା ଦ୍ୱାରା ମନୁଷ୍ୟ ଆପଣା ଅନୁଭୂତି ଓ ଅଭିଜ୍ଞତାକୁ ସାଧାରଣ ବୋଧ ରୂପ ଦିଏ ଏବଂ ଫଳରେ ପରସ୍ପର ଗୋଚର କରିପାରେ ବୋଲି 'ଭାଷା' ମୂଲ୍ୟବାନ । ଯେତେ ସୁଦକ୍ଷ ଦରଜି ହେଲେ ବି, ସୁଈ, କଇଞ୍ଚି, ମାଧମରେ ଗୋଟିଏ ଜୀବନ୍ତ ମନୁଷ୍ୟ, ତିଆରି କରି ପାରିବ ନାହିଁ ।

ସତ୍ ଲେଖକଙ୍କ ସଙ୍ଗେ ସଖ୍ୟା-ଗରିଷ୍ଠ ସାଧାରଣ ଜନ-ମାନସର ବ୍ୟବଧାନ, ଯେତେ ବୃଦ୍ଧି ପାଏ... ଲେଖକର ଭାବନା-କଳ୍ପନା.. ସମଗ୍ର-ମାନବସଂଯୋଗ; କଥା ଭୁଲି, ସେତେ.. ଆତ୍ମ-କେନ୍ଦ୍ରିକ ଓ ପ୍ରକରଣ-ପ୍ରଧାନ, ହୋଇ ଉଠେ ।

କଳ୍ପନାର ପ୍ରାଣ ଶକ୍ତି କ୍ଷୀଣ ହୋଇ ଆସିଲେ.. ରଚନାରେ.. ଶୂନ୍ୟଗର୍ଭତା, ପୁନରାବୃତ୍ତି, ଏବଂ ଆତ୍ମ-ପ୍ରବଞ୍ଚନା,.. ଗୋଟିକ ପରେ ଗୋଟିଏ.. ପ୍ରକଟ ହୋଇଉଠେ । ବକ୍ତବ୍ୟ ଯେତିକି କମେ.. ବକ୍ତୃତାର ଢ଼ଙ୍ଗ ସେତେ ପେଞ୍ଚୁଆ ହୁଏ । ବାକ୍ୟ ଗଠନ ସେତେ ଜଟିଳ, ଏବଂ ଶବ୍ଦ-ପ୍ରୟୋଗ ସେତେ ଅସ୍ୱଚ୍ଛ ହୋଇଯାଏ ।

ସାଧାରଣ ମନୁଷ୍ୟର ଆତ୍ମୀୟତା ଅର୍ଜନ ନ କରି ପାରିବା ଫଳରେ ଲେଖକ କ୍ରମେ,.. ମନୁଷ୍ୟର ସ୍ନେହ-ମମତାରେ, ସୁଖ ପାଇବାର କ୍ଷମତା,.. ହରାଇ ବସନ୍ତି । ଏକ ଦିଗରୁ, ହୋଇ ଯା'ନ୍ତି-ଉତ୍-କେନ୍ଦ୍ରିକ',.. ଅନ୍ୟ ଦିଗରୁ.. 'ଶୁଭ-ନାସ୍ତିକ ।'

ସେତେବେଳେ ସେ ସାହିତ୍ୟର ପ୍ରଧାନ ଉପାଦାନ ହୋଇଯାଏ,.. ରିରାଂସା.. ଇର୍ଷା,.. ଆତ୍ମଗ୍ଲାନି,.. ଅ-ପ୍ରତ୍ୟୟ,.. ଏବଂ ବୈନାଶିକ-ବୁଦ୍ଧି ।

ଫଳରେ ଆଧୁନିକ ସାହିତ୍ୟର ନାୟକ,.. ଏକ ଦିଗରୁ ପ୍ରଚଣ୍ଡ ଉନ୍ନାସିକତାରେ, ନିଜକୁ ଜନ-ଜୀବନରୁ ଯେମିତି ନିର୍ବାସିତ କରୁଛି,.. ଅନ୍ୟ ଦିଗରୁ,.. ସେ ନିଜର ବ୍ୟକ୍ତି-ସତ୍ତାରେ, ସେତିକି ଅବିଶ୍ୱାସୀ ହେଉଛି ।

ଆଧୁନିକ ସମାଜରେ,.. ଜନ ସାଧାରଣଙ୍କର ଅଧିକାର.. ସେତିକି ସ୍ୱୀକୃତି ଲାଭ କରୁଛି,.. ଅନ୍ୟ ଦିଗରେ.. ସେମିତି,.. ଜନସମର୍ଥନର ସୁଯୋଗ ନେଇ ମୁଷ୍ଟିମେୟ ଲୋକଙ୍କ ହାତରେ କ୍ଷମତାର କେନ୍ଦ୍ରୀକରଣ, ସେତିକି ବଢ଼ି ଚାଲିଛି । ସାହିତ୍ୟର ପାଠକ ବଢ଼ି ଚାଲିଛନ୍ତି, କିନ୍ତୁ ତାଙ୍କ 'ସାହିତ୍ୟ-ବୋଧ' ଗଢ଼ି ଉଠୁନି । *

— ଦୁଇ —

'ସତ୍ୟ'.. ଜ୍ଞାନର ଉପାଦାନ । ସବୁ ଜ୍ଞାନ.. ଇନ୍ଦ୍ରିୟ ନିର୍ଭର । ଇନ୍ଦ୍ରିୟ-ଲବ୍ଧ ଅଭିଜ୍ଞତା ଉପରେ, ବୁଦ୍ଧିର ପ୍ରୟୋଗ ଘଟିଲେ, ତେବେ ଯାଇ ଜ୍ଞାନର ଉଦ୍‌ଭବ ସମ୍ଭବପର ହୁଏ । ପକ୍ଷୀ ଓ ଘୋଡ଼ା, ଉଭୟ ଅଛନ୍ତି, ବୋଲି ସିନା,.. 'ପକ୍ଷୀରାଜ' ଘୋଡ଼ାର କଳ୍ପନା ?

ଅଭିଜ୍ଞତା-ନିର୍ଭର-ଧାରଣାର.. ଅସମ୍ପୂର୍ଣ୍ଣତା.. ଅବଶ୍ୟମ୍ଭାବୀ । କାରଣ,.. ଯେଉଁ ସବୁ ଧାରଣା ଆମେ ଉତ୍ତରାଧିକାର ସୂତ୍ରରେ ପାଇଛେ.. ସେଗୁଡ଼ିକ ମଧ ଆମ ପୂର୍ବପୁରୁଷଙ୍କ ଅଭିଜ୍ଞତାକୁ, ଅବଲମ୍ବନ କରି, ଏକଦା ଗଢ଼ି ଉଠିଥିଲା ।

ମନୁଷ୍ୟର ଜ୍ଞାନ.. ନିତ୍ୟ ନୁହେଁ । ତାହା 'ବିକାଶ ଧର୍ମୀ' ।

**'There is no 'fore-closure' to human intelligence.'**

ସମାଜ ଯେତେବେଳେ, ବ୍ୟକ୍ତିର ଆତ୍ମବିକାଶର ମାଧମ ନ ହୋଇ... ତାର ଆତ୍ମବିଲୋପର ଯନ୍ତ୍ର ହୁଏ, ବ୍ୟକ୍ତି ତାର ନିଜର ସ୍ୱଭାବକୁ ଅସ୍ୱୀକାର କରି-ସମାଜ-ନିର୍ଦ୍ଦିଷ୍ଟ-ଛାଞ୍ଚରେ, ନିଜକୁ ଢ଼ଳାଇ କରି ଦେଇ-ପରମାର୍ଥ ଖୋଜେ-ତା'ର ଆଚାର-ବ୍ୟବହାର, ଭାବନା-ଚିନ୍ତା, ପ୍ରତ୍ୟୟ-ପ୍ରଚେଷ୍ଟା, ଏମିତିକି ତା'ର ଆବେଗ-ଅନୁଭୂତି ପର୍ଯ୍ୟନ୍ତ-ସାମାଜିକ ବିଧି-ବିଶେଷ ଦ୍ୱାରା ନିରୂପିତ ହୋଇଯାଏ । ସେ ସେତେବେଳେ ଆଉ ବ୍ୟକ୍ତି ନୁହେଁ । ସିଏ ସମଷ୍ଟିର ଅଂଶ ମାତ୍ର । ଗଡ୍‌ଡାଳ ବୃତ୍ତି ହିଁ ସେତେବେଳେ ହୋଇଯାଏ, ତା'ର ବିବେକର ଅବଲମ୍ବନ । ତଥାପି ଯେଉଁ ଟିକକ, 'ଅନ୍ୟଥା ବୋଧ' ଏ ଅବସ୍ଥାରେ ମଧ ଠାକିଯାଏ ତା ହୁଏ-ଯେ 'କାକୁସ୍ଥ-କାତର-ମହାଲଜ୍ଜା ।' ସେ ମହାଲଜ୍ଜାର ମୂଢ଼ତାରୁ ସାହିତ୍ୟ, ବାରମ୍ବାର ମନୁଷ୍ୟକୁ ଉଦ୍ଧାର କରି ଆସିଛି । ସାମାଜିକ ଲଘୁକରଣର ଅନ୍ତରାଳରେ, ବ୍ୟକ୍ତିର ଯେଉଁ ଜଟିଳ, ରହସ୍ୟମୟ ଅମେୟ, ଅସ୍ତିତ୍ୱ ବର୍ତ୍ତମାନ, ସାହିତ୍ୟିକଙ୍କର ମାନବତା ବୋଧ ଓ ସତ୍ୟ ସନ୍ଧିତ୍ସା ତାକୁ ବୁଝି ଭାଷାରେ ଫୁଟାଇବାକୁ ଚାହେ ।

**'ଏଠାରେ ବିମୁକ୍ତ ଆମ ଉତ୍ତେଜନା...ଆମର ମୃତ ଅରଣ୍ୟ, ମୃତ ଜହ୍ନରାତି...'**

ସମାଜ... ମନୁଷ୍ୟ-ମନୁଷ୍ୟ ମଧରେ, ଖାଲି ବ୍ୟବହାରିକ ସମ୍ବନ୍ଧ ସ୍ଥାପନ କରିପାରେ । ମାତ୍ର, ସାହିତ୍ୟ ତା'ର ବ୍ୟକ୍ତି-କେନ୍ଦ୍ରିକ-ମାନବତା ବୋଧର ସାମର୍ଥ୍ୟରେ-ମନୁଷ୍ୟର ଅନ୍ତରଂଗ କରିଦିଏ । ବ୍ୟକ୍ତି ଯେ-କୌଣସି ଉଦ୍ଦେଶ୍ୟ, ସାଧନର ଉପାୟମାତ୍ର ନୁହେଁ— ସେ ଉଦ୍ଦେଶ୍ୟ ଯେତେ ମହତ୍ ହେଉନା କାହିଁକି, ବ୍ୟକ୍ତି ଯେ ସ୍ୱୟଂସିଦ୍ଧ ଏବଂ ସେଇ କାରଣରୁ ମୂଲ୍ୟବାନ ଏଇ ମାନବ-ତାଂତ୍ରିକତା,' ସବୁ ମହତ୍ ସାହିତ୍ୟ ସୃଷ୍ଟିର, କେନ୍ଦ୍ର-ବିନ୍ଦୁ ।

ମନୁଷ୍ୟର ଯେଉଁଟି, ପରିବେଶ-ନିରୂପିତ ବାହାରର ରୂପ; ସମାଜ ଆମକୁ କେବଳ ତା'ରି ସନ୍ଧାନ ଦେଇ ପାରେ । କିନ୍ତୁ ଯାହାକୁ ଆମେ 'ବ୍ୟକ୍ତିତ୍ୱ' ବୋଲି କହୁ..., ବ୍ୟକ୍ତିର ଚେତନ, ଅଚେତନ, ଅବଚେତନ... ଜଣା-ଅଜଣା, ପରିବର୍ତ୍ତନ-ଶୀଳ ଅସ୍ତିତ୍ୱର-ବିଚିତ୍ର ସେଇ ପ୍ରାତ୍ୟୁଷିକ-ସମଗ୍ରତା,... ସେ ବିଷୟ ଜାଣିବାକୁ ହେଲେ ସାହିତ୍ୟିକର ଦ୍ୱାରସ୍ଥ ହେବା ଛଡ଼ା, ଉପାୟ ନାହିଁ । ଆଉ ଏଇ ଜାଣିବା ହେଲା-ଯଥାର୍ଥ ନୀତିବୋଧର ମୂଳଉତ୍ସ । ଯେଉଁ ନ୍ୟାୟ ମନୁଷ୍ୟକୁ ଖାଲି ଖଣ୍ଡିତଖର୍ବିତ କରି ଜାଣେ, ଯେଉଁ ବିବେକ ଖାଲି ନିଗ୍ରହରେ ପରତୃପ୍ତି ପାଏ, ଯେଉଁ ନୀତିତତ୍ତ୍ୱ ମନୁଷ୍ୟର ବାହ୍ୟିକ ବ୍ୟବହାରିକ ଜୀବନର ଅନ୍ତରାଳରୁ ବ୍ୟକ୍ତିର ଜଟିଳ ପରିବର୍ତ୍ତନଶୀଳ, ସମଗ୍ର-ଅସ୍ତିତ୍ୱକୁ ସ୍ୱୀକାର କରିବାକୁ ପରାଂମୁଖ.. ସେ ନ୍ୟାୟ, ବିବେକ ଓ ନୀତି-ମନୁଷ୍ୟର ବିକାଶ ପଥରେ-ମସ୍ତବଡ଼ ବାଧା । ଏ ବାଧା ଅପସାରଣରେ, ସାହିତ୍ୟର ଦାନ ଅବିସ୍ମରଣୀୟ ।

'ମୋ ଚାରୋଟି ହାତ ଚାରୋଟି ଗୋଡ଼ ଦେଖିନାହଁ –
ଆମର ଛନ୍ଦା ଛନ୍ଦି ବାହୁ ବନ୍ଧନରେ କ୍ୱଚିତ ପଡ଼ିବାର ଭୟ କ୍ୱଚିତ୍ ଆଶଙ୍କା...

ସାହିତ୍ୟିକଙ୍କ ପାଖରୁ ହିଁ, ଆମେ ଶିଖୁ-ଆପଣାକୁ ଓ ଅପରକୁ-ବ୍ୟକ୍ତି ହିସାବରେ ମୂଲ୍ୟ ଦେବାକୁ । ଶିଖୁ, ଯେ-ବ୍ୟକ୍ତିର ବିକାଶରେ ହିଁ, ସବୁ ନୈତିକ ମୂଲ୍ୟାୟନର ଉତ୍ସ ଏବଂ ତାହା ହିଁ ମାନଦଣ୍ଡ । ସାହିତ୍ୟ ସୃଷ୍ଟି ମୂଳରେ ଏମିତି ଏକ ଶକ୍ତି ସକ୍ରିୟ; ଯାହା ଉପରେ କୌଣସି ହୁକୁମ୍ ଖଟେନା/ ଏଇ ଶକ୍ତିର ନାମକରଣ କରାହୋଇଛି-'ପ୍ରେରଣା' ।

ସାହିତ୍ୟ, ପ୍ରେରଣା ସଂଜାତ ବୋଲି-ସାହିତ୍ୟ ମଧ୍ୟରେ, ମୁକ୍ତିର ଏକ ଅତି ଗୂଢ଼ ଦୁର୍ଲଭ ସ୍ୱାଦ ମିଳେ । ଏକଥା ଠିକ୍ ଯେ' ମୁକ୍ତି – ସ୍ପୃହାର, ପ୍ରବଣତା-ସମସ୍ତ ନିୟମ-ଶୃଙ୍ଖଳା-ଭାଙ୍ଗି ପକାଇବା ଆଡ଼କୁ ଧାଏଁ । ଅପର ପକ୍ଷରେ-, 'ଯୌକ୍ତିକତା' ଯେ ଖାଲି ନିୟମାନୁଗ, ତା ନୁହେଁ । ଆପାତ ଦୃଷ୍ଟିରେ, ଯାହା ଶୃଙ୍ଖଳାହୀନ, ତା ମଧ୍ୟରେ, ନିୟମର ସନ୍ଧାନ କରିବା ହିଁ ମୁକ୍ତିର କାମ ।

ବିକାଶର ଏଇ 'ଡାଇଲେକ୍ଟିକ୍' ଯିଏ ହୃଦୟଙ୍ଗମ କରି ପାରନ୍ତି ନାହିଁ, ତାଙ୍କରି ଦୃଷ୍ଟିରେ ଯୁକ୍ତି-ବୁଦ୍ଧି ଓ ମୁକ୍ତି-ସ୍ପୃହା ଅବହେଳିତ ହୁଏ । ବ୍ୟକ୍ତି ମୁକ୍ତି-ସ୍ପୃହାକୁ ଅବଦମିତ କରିବାକୁ ଚାହେ ଯେଉଁ ରାଷ୍ଟ୍ର, ତାକୁ କୌଣସି ଅର୍ଥରେ ଆଦର୍ଶ ରାଷ୍ଟ୍ର ବୋଲି କୁହାଯାଇ ପାରେନା । ସେ ସ୍ପୃହା ଓ ପ୍ରେରଣାକୁ, ଆତ୍ମ ପ୍ରସ୍ତୁତି ଦ୍ୱାରା ମାର୍ଜିତ ଓ ଶୀଳିତ କରିବା ଅବଶ୍ୟ ପ୍ରୟୋଜନ । କିନ୍ତୁ ତାକୁ ସମୂଳେ ଉତ୍‌ପାଟନ କରିବା, ଆତ୍ମଘାତୀ । କାହିଁକି ନା... ପ୍ରେରଣା ଖାଲି ସାହିତ୍ୟ- ସ୍ରଷ୍ଟାକୁ ହିଁ ମୁକ୍ତିର-ସ୍ୱାଦ ଦିଏନା... ସାହିତ୍ୟ... ଭୋକ୍ତା ମଧ୍ୟ ସେ ସ୍ୱାଦରେ ସମୃଦ୍ଧ ହୁଅନ୍ତି । ମନୁଷ୍ୟ ଜୀବନରେ ଏ ସ୍ୱାଦର ତୁଳନା ନାହିଁ ।

'ଯେଉଁ ସମ୍ପର୍କ ଆମେ ଶିଖୁ
ଲୁଚାଇ ରଖବୁ ବୋଲି
× × ଆଜି ତା ଉପରେ
ଚଲାବୁଲା କରିବାର
ସମୟ ଆସିଛି ।'

ଆମ ଶିଳ୍ପ ଶାସ୍ତ୍ରର ଭାଷାରେ... ଆକାଶରୁ ଦୈବୀ ରୂପକୁ, ଧ୍ୟାନ ଯୋଗରେ ଆକର୍ଷଣ କରି, ନିଜର ଚିତ୍ତ ଲୋକରେ ପ୍ରତ୍ୟକ୍ଷ୍ୟ କରିବା, ହେଲା 'ଐତିହ୍ୟ ମାର୍ଜିତ-ମାନସ,-ସ୍ୱକୀୟତାର'... ସିଦ୍ଧ-କାମୀ, ସ୍ୱାକ୍ଷର । ଏହା ଦ୍ୱାରା ଚିତ୍ତ, ସଂସ୍କୃତ ହୁଏ । ଅହଂର ସଙ୍କୀର୍ଣ୍ଣତାରୁ ସତ୍ତାର ମୁକ୍ତି ଘଟେ । ଏ ରୂପ, ଅଜର, ଅବ୍ରଣ ଏବଂ ଆତ୍ମ-ସମ୍ପୂର୍ଣ୍ଣ । ଇନ୍ଦ୍ରିୟ-ଗ୍ରାହ୍ୟ ମାଧମରେ, ଧ୍ୟାନ ଧୃତ ରୂପକୁ ଆକାର ଦେବା (ଦୁଇ; ୧ ରୁ ୭ ଧାଡ଼ି)

ଯୁକ୍ତି ଓ ମୁକ୍ତି, ବିକାଶ ଓ ଜ୍ଞାନ, ନିତାନ୍ତ ଅଚ୍ଛେଦ୍ୟ ଭାବରେ ପରସ୍ପର ନିର୍ଭର । ସାମୟିକ ରୂପ ପ୍ରତି ମୋହ,ବ୍ୟକ୍ତିର ବିକାଶ ପଥରେ, ଅନ୍ୟତମ ପ୍ରଧାନ ଅନ୍ତରାୟ । ମୁକ୍ତି ବା ସତ୍ୟାନୁସନ୍ଧିତ୍ସା, ମନକୁ ଏଇ ମୋହରୁ ମୁକ୍ତ କରି, ତାର ସ୍ୱକୀୟତା ଓ ନିତ୍ୟସତ୍ତା ସମ୍ପର୍କରେ ସଚେତନ କରିଦିଏ । ଏ ଚେତନା ଆଚ୍ଛନ୍ନ ହୋଇ ପଡ଼ିଲେ, ବ୍ୟକ୍ତି ଭିତରେ ମୁକ୍ତିର ସ୍ପନ୍ଦନ ସ୍ତିମିତ ହୋଇ ଆସେ । ବ୍ୟକ୍ତି ସେତେବେଳେ ଯାହା ଅଛି, ସେଥିରେ ତୃପ୍ତି ବୋଧ କରେ । ତାର ରଚି, ଖାଲି ପୁନରାବୃତ୍ତିରେ ସନ୍ତୋଷ ପାଏ । ମନୁଷ୍ୟ ତାର୍ 'ନାଚିକେତ-ସ୍ୱଧର୍ମ' ଛାଡ଼ି ଜିଜ୍ଞାସା ବିନା ମାନସିକ ଜାଡ଼୍ୟରେ ଆଶ୍ରୟ ଖୋଜେ । ବନ୍ଧ୍ୟା ଆତ୍ମତୃପ୍ତିର ମେଦ ଭାରରେ, ସତ୍ତା ହୁଏ ସ୍ତବ୍ଧ । ପ୍ରାଣ ଆଉ ପ୍ରକାଶର ଆକ୍ଷେପରେ..., ନବ ନବ ରୂପରେ ସ୍ଫୁରିତ ହୁଏ ନାହିଁ । ମୁକ୍ତିର ନିର୍ଦିଗନ୍ତ-ସ୍ୱପ୍ନ, ଅବଶିତ ହୁଏ; ଅୟେସୀ ଅଭ୍ୟାସର ବିଜୃଭଂଶରେ ।

ମନୁଷ୍ୟର ଏ ଆତ୍ମହତ୍ୟାରୁ ତାକୁ ବଞ୍ଚେଇ ପାରେ ଏକମାତ୍ର ସତ୍ୟନିଷ୍ଠା । ସତ୍ୟ ସନ୍ଧିତ୍ସା ଯେମିତି ସ୍ୱାର୍ଥର ସଙ୍କୀର୍ଣ୍ଣତାରୁ ବିଶ୍ୱ ମାନବତ୍ୱକୁ,... ବ୍ୟକ୍ତିର ଉତ୍ତରଣ ଘଟାଇ ପାରେ ସେମିତି ତାର ଅଭ୍ୟନ୍ତରୀଣ ବହୁମୁଖୀନତାରେ, ଐକ୍ୟର ସଂଚାର କରି ପାରେ ।

ମନୁଷ୍ୟତ୍ୱ ଯଦି ମନୁଷ୍ୟର ହିଁ ଅନ୍ତର୍ନିହିତ ସମ୍ଭାବନା ସମଷ୍ଟିର ଅପର ନାମ,ତେବେ ମନୁଷ୍ୟର ବିକାଶ ପାଇଁ କୌଣସି ଅତି ମାନବିକ ଶକ୍ତିର କଳ୍ପନା ସ୍ପଷ୍ଟତଃ ଅବାନ୍ତର । ମନୁଷ୍ୟ ନିଜେ ନିଜର ଭାଗ୍ୟ ବିଧାତା । ଏଥିଲାଗି ବୁଦ୍ଧି ଓ ମୁକ୍ତି ତାର ଦୁଇଟି ଅସ୍ତିତ୍ୱର ବୃତ୍ତି ।

ବୁଦ୍ଧି, ମନୁଷ୍ୟକୁ ସତ୍ୟାନ୍ୱେଷୀ କରେ । ତାର ବିକ୍ଷିପ୍ତ ଖଣ୍ଡିତ, ଜଂଗମ ଅଭିଜ୍ଞତାକୁ, ଚିନ୍ତା ଓ ଭାବର ମଧ୍ୟରେ, ସ୍ଥାୟୀ ରୂପ ଦେଇ, ତାର ସାରଣୀର ବ୍ୟାପକତା, ସ୍ପଷ୍ଟତା ଏବଂ ଯାଥାର୍ଥ୍ୟ ଆଣେ । ଦ୍ୱନ୍ଦ୍ୱ ମଧ୍ୟରେ, ସୌଷମ୍ୟ ଘଟାଏ । ପରିବର୍ତ୍ତନକୁ ସ୍ଥିତି ସ୍ଥାପକ କରେ । ମନୁଷ୍ୟ ଅତ୍ୟନ୍ତ ଅନୁଭୁତିଶୀଳ ବୋଲି ତା'ର ଜୀବନରେ ବହୁମୁଖୀନତା ଓ ଦ୍ୱନ୍ଦ୍ୱ ଅନ୍ୟ ପ୍ରାଣୀଙ୍କ ତୁଳନାରେ ବେଶୀ ପ୍ରବଳ । ପଦେ କଥାରେ କହିଲେ– ବୁଦ୍ଧି... ବ୍ୟକ୍ତି ଅସ୍ତିତ୍ୱର ସମଗ୍ରତା ସମ୍ପାଦନ କରେ । ଏଇ ବୁଦ୍ଧିର ଭିତ୍ତିରେ ମନୁଷ୍ୟ... ମନୁଷ୍ୟ ମଧ୍ୟରେ ଭାବନାର ଲେନ୍ ଦେନ୍ ।

ସେମିତି ମୁକ୍ତିର ଅର୍ଥ– ବ୍ୟକ୍ତିର ସ୍ୱଚେଷ୍ଟା ପ୍ରସୂତ, ବିଚିତ୍ର ବିକାଶ । ନିଜକୁ ଅନୁଶୀଳିତ କରି ଏବଂ ପରିବେଶକୁ ବଶ କରି, ମନୁଷ୍ୟ ତାର ବିକାଶର ଦିଗନ୍ତକୁ ପ୍ରସାରିତ କରେ ।

ଭୋଗ୍ୟ ବସ୍ତୁ ମଧ୍ୟରେ, ଯେତେ ସମ୍ପଦଶ୍ରୀ ଅଛି, ତାକୁ ପରିପୂର୍ଣ୍ଣ ଭାବେ ନିଜର ଅଭିଜ୍ଞତାରେ ଆତ୍ମସାତ୍ କରିବାହେଲା 'ବୈଦଗ୍ଧ୍ୟ ସଂଭୋଗରେ ସୁସ୍ଥ ମନର ପରିପୁଷ୍ଟି ।'

ରୂପ ସଙ୍ଗେ ରୂପର.. ସୁର ସଙ୍ଗେ ସୁରର, ସୁରା ସଙ୍ଗେ ସୁରାର, ଚୁମ୍ବନ ସଙ୍ଗେ ଚୁମ୍ବନର, ସେ ସତ୍ୟ, ମହର୍ଷି ବାତ୍ସାୟନଙ୍କ କାମ ସୁତ୍ରରେ ପ୍ରତିପାଦିତ । 'ସମ୍ଭୋଗ' ମନର ସୁଷମିତ ସମଗ୍ରତା । 'ସୁଷମିତ' କାରଣ କୌଣସି ବୃତ୍ତି ଅତି ପ୍ରବଳ ହୋଇ ଅନ୍ୟକୁ ଆଚ୍ଛନ୍ନ କରେନା । 'ସମଗ୍ର'... କାରଣ ବହୁତ୍ୱର ବିରୋଧକୁ ଅତିକ୍ରମ କରି, ପ୍ରାଣମୟ ଐକ୍ୟର ସନ୍ଧାନ କରେ/ ପ୍ରକାଶ... ବିକାଶର ବର୍ହିରଙ୍ଗ ।

ଯାନ୍ତ୍ରିକତାର ଫଳରେ ମନୁଷ୍ୟର ପ୍ରାତିମ୍ବିକ ସତ୍ତା, ଭାଙ୍ଗି ପଡୁଛି । ତାର ବୁଦ୍ଧି, ମୁକ୍ତିସ୍ପୃହା ଏବଂ ସୃଷ୍ଟି କ୍ଷୀଣ ହୋଇ ଆସୁଛି ।

ଅନ୍ୟ ଦିଗରୁ ରାଜନୈତିକ ଜୀବନରେ, ଜନତାର ଅଂଶ କ୍ରମେ ସ୍ୱୀକୃତ ହେବା ଫଳରେ, ରାଷ୍ଟ୍ର ହାତରେ ସମାଜ-ଜୀବନର ଅଧିକାଂଶ ଶକ୍ତି ଏବଂ ଦାୟିତ୍ୱ କେନ୍ଦ୍ରିଭୂତ ହେଉଛି । ଫଳରେ ଏକ ଦିଗରେ ବ୍ୟକ୍ତିର ସାମର୍ଥ୍ୟ ଯେତେ କମି ଆସୁଛି.. ଯୂଥବୃତ୍ତି... ସେତେ ପ୍ରବଳତର ହୋଇ ଉଠୁଛି... ଏଇ ଦୁଇ ଧାରାର ମିଳନରୁ, ଜନ୍ମ ନେଇଛି, ଏ ଶତାବ୍ଦୀର ସାର୍ବିକ ରାଷ୍ଟ୍ର-ବ୍ୟବସ୍ଥା ।

'ଅଭିଧା', 'ତାତ୍ପର୍ଯ୍ୟ' ଏବଂ 'ଲକ୍ଷଣାରୁ' ପାଉ 'ବାଚ୍ୟାର୍ଥ ।' ସାହିତ୍ୟିକ ଏଇ ବାଚ୍ୟାର୍ଥର ସାହାଯ୍ୟ ନେଇ ଅଥଚ ତାକୁ ଅତିକ୍ରମ କରି, ବାକ୍ୟରେ ଆଉ ଯେଉଁ ଗୋଟିଏ ପ୍ରତୀୟମାନ ଅର୍ଥ ସଞ୍ଚାର କରନ୍ତି, ତାହାର ନାମ 'ବ୍ୟଞ୍ଜନା' । ଭାଷାର ଏ ବ୍ୟଞ୍ଜନା ଶକ୍ତି ନଥିଲେ ଭାବ, ଆବେଗ ଏବଂ ଅଭିଜ୍ଞତା, ରସରେ ରୂପାନ୍ତରିତ ହୋଇ ପାରନ୍ତା ନାହିଁ । ତେଣୁ

କବିଙ୍କ କାମ ହେଲା, ସଙ୍ଗୀତ ଧର୍ମୀ ସ୍ୱଚ୍ଛ ଶବ୍ଦରେ, ଆନନ୍ଦମୟ ଗୂଢ଼ ବ୍ୟଞ୍ଜନାର ଉଦ୍‌ବୋଧନ । ଇନ୍ଦ୍ରିୟ ଜାତ ଆବେଗକୁ ଭାତଧୃତ ଆବେଗରେ ରୂପାନ୍ତରିତ କରିବା । ପ୍ରତୀକର ପ୍ରୟୋଗରେ, ଭାଷାରେ ଯେଉଁ ବ୍ୟଞ୍ଜନାର ସଞ୍ଚାର ହୁଏ, ତାହାହିଁ କବିଙ୍କ ସ୍ୱ ଉପାର୍ଜିତ ବୈଦଗ୍ଧ୍ୟ ଦ୍ୱାରା ପରିପୁଷ୍ଟ ଓ ପରିମାର୍ଜିତ ଭାଷା । କାରଣ କବିର କଳ୍ପନାରେ କେଉଁ ଏକ ଦୁର୍ଲ୍ଲଭ ମୁହୂର୍ତ୍ତରେ ସେଇ ପ୍ରତୀକଟି ଉଦ୍‌ଭାସିତ ।



ଏ ଯାଏଁ, ଏତକ ସାହିତ୍ୟର ସଜ୍ଞା, ସତ୍ତା ଓ ସୀମା ନିର୍ଣ୍ଣୟନ, ଅବାନ୍ତର ନୁହେଁ । ମାପ କାଠି ଠିକଣା ନ କଲେ ହରିହରଙ୍କ କବିତା ମାପିବ କିପରି ?

ପୁଣି ଆଜିକାଲି, ବ୍ୟବହାରିକ ଦକ୍ଷତା ଓ ବ୍ୟବସାୟିକ ସଫଳତା ଉପରେ, ସମାଜ ଓ ଶିକ୍ଷାର ଯେଉଁ ଝୁଙ୍କ, ସେଥିରେ ମନର ବିକାଶ ଓ ଇନ୍ଦ୍ରିୟର ସୁକ୍ଷ୍ମତା ସାଧନ, ଯେପରି ଗୌଣ ହୋଇ ଯାଉଛି ।

ଅନ୍ଧ-ବାଧ୍ୟତା ଦ୍ୱାରା ଚାଳିତ ହେବାର, ଚିରାଭ୍ୟାସ ନେଇ ମୁକ୍ତିର ବିପୁଳ ଦାୟିତ୍ୱ, କେହି ଭଲ କରି ବୁଝି ପାରିବେ ନାହିଁ, ବହନ କରିବା ତ ଦୂରର କଥା । ଏ କ୍ଷେତ୍ରରେ ହରିହର ମିଶ୍ର ଯେ ହାରି ନାହାନ୍ତି ତାର ପ୍ରମାଣ ।

'ସ୍ପନ୍ଦନର ଯତିପାତରେ ଝର୍ଣ୍ଣା ଭଳି ପ୍ରପାତରେ
ଖସି ଯିବାକୁ ଇଚ୍ଛା ତ
ଇଚ୍ଛା ଉଲଗ୍ନ ହେବାକୁ...

× ×

ଆମର ସମସ୍ତ କର୍ମ ଆଜିଠାରୁ ଭୟହୀନ

× ×

ମୋ ଚାରୋଟି ହାତ, ଚାରୋଟି ଗୋଡ଼
ଦେଖି ନାହିଁ
ଆମର ଛନ୍ଦା ଛନ୍ଦି ବାହୁ ବନ୍ଧନରେ
କ୍ୱଚିତ୍ ପଡ଼ିବାର ଭୟ... କ୍ୱଚିତ୍ ଆଶଙ୍କା

× ×

ଯେଉଁ ସମ୍ପର୍କ ଆମେ ଶିଖୁ
'ଲୁଚେଇ ରଖବୁ' ବୋଲି
ଆଜି ତା ଉପରେ ଚଲାବୁଲା କରିବାର
ସମୟ ଫେରି ଆସିଛି...
ଅବଶ୍ୟ –
ନିଜ ନିଜ ସ୍ପନ୍ଦନର ଯତିପାତ ନେଇ...''

କବିତାଟିରେ ପ୍ରତିଟି ପ୍ରତୀକ, ବାଚ୍ୟାର୍ଥକୁ ଅତିକ୍ରମ କରି, ଗୋଟିଏ ଗୋଟିଏ ସ୍ୱତଃସିଦ୍ଧ ଏବଂ ନିଗୂଢ଼ ପ୍ରାତିମ୍ବିକ ଏବଂ ଅସାମଞ୍ଜସ୍ୟ ଅନୁବ୍ୟବସାୟ ଦ୍ୱାରା ବ୍ୟଂଜିତ ।

ପୁରାଣ ଠାରୁ ବିଜ୍ଞାନ ଯାଏ ସବୁର ପ୍ରତୀକ ବକ୍ତବ୍ୟର ବ୍ୟକ୍ତିତ୍ୱରେ ବିରାଜମାନ ।

ନିର୍ଭୟ ତେଣୁ... ଉନ୍ମୁକ୍ତ ।

(ଅଗଷ୍ଟ ୧୯୭୩ 'ନବରବି'ରେ ପ୍ରକାଶିତ)



# ଶଂଖନାଭି

ଏଇ ବର୍ଷା ଲୁହ ଥିଲା ଯେତେବେଳେ ଝୁରୁଥିଲା
ଚାରିଆଡ଼େ ଚାପି ହୋଇ ପଡୁଥିଲା ବର୍ଷାର କ୍ରନ୍ଦନ ଉଚ୍ଛ୍ୱାସ
ଏଇ ଲାଗେ ସବୁ ପୁଣି ଚୁପ୍‌ଚାପ୍
କେତେ କା'ର ବ୍ୟତିବ୍ୟସ୍ତ କାଚ ରୁଣୁଝୁଣୁ
ପରଦା ପଛରୁ ସତେ ଏ ରାତିର ଅବାଞ୍ଛିତ ପରଦା ପଛରୁ

ଏ ପାଣିର କଅଁଳିଆ କଥା- ସବୁ
ପାରେ ନାହିଁ ଉଠି ଆଉ ରାସ୍ତାର ଉଠାଣି
ସବୁ ଖାଲି ଭାସିଯାଏ ନିଃଶବ୍ଦରେ
ଏ ରାତିର ଗହନରୁ ଗହନ ତଳକୁ

ଯେତେବେଳ ଯେ ଯୁଆଡ଼େ ବାନ୍ଧିନେଲେ ରାତିଟିକୁ
ଟାଟି ଓ କବାଟ କିଳି
ଭାରି ମତେ ଭୟ ହେଲା ରେଜେଇ ଭିତରେ
ତେଣୁ ମୁଁ ବାହିରିଡ଼େ ଯୁ' ରାସ୍ତାରେ
ସହରର ପ୍ରସିଦ୍ଧ ଗହଳି
ସିନେମା ମାଇକ୍ ଶୁଣି ମଫସଲି ଲୋକ ପରି
ହାଉସରେ ପାହୁଣ୍ଡ ପକେଇ

ମୁଁ ଏକ ମରୁଓଟ ବେକ ଟେକି ଦେଖୁଅଛି ଦୃଶ୍ୟ
ଆଦର୍ଶର କୁଜ ରଖି ପିଠି ପରେ
ସେମିତିକା ବୁଲୁଅଛି ଖାଲି
ତା' ଉପରେ ମଖମଲି ସୌଦାଗରୀ ଖଣ୍ଡେ ଖାଲି ଆକାଶର ବସ୍ତ୍ର

ତୁମରି ଚାହାଁଣୀ ସବୁ ବେଶ ହୋଇ ନାନା ମତେ
ମୋ ପିଠିରେ ଘୋଡ଼ା ହୋଇ ମନଇଛା ବେକ ମୋର ଟାଣି
ମୋ ବେକ ଯେ ରକା ହେଲେ ଆଜି ପୁଣି
ଖୋଜି ଖୋଜି ଦେଖେ, ମାଲିସ୍ ହୁଅନ୍ତି ଅବା ଅନ୍ୟ ଏକ ଚାହାଁଣୀରେ
ଅଧରାତି ହୋଟେଲ୍‌ରେ ଶୀତାର୍ତ ସେ ବଏଟିର କ୍ଳାନ୍ତ ଚାହାଁଣିରେ
ମାଲିସ୍ କରନ୍ତି ସେଇ ତୁମରି ବିଭିନ୍ନ ଆଡ଼େ
ଦେଖି ଦେଖି ପକ୍ଷାଘାତ ହଂସବେକ ମୋର

ଆଜି ତେଣୁ ରାତିରେ ମୁଁ ଠିଆ ହେଲି
ପାଦ ଚାପି ମୋ ନିଜ ଛାଇର ମୁଣ୍ଡରେ
ଯାହା ଅବା ଇଚ୍ଛା ଥିଲା ଜୋତାରେ ମୁଁ ଠେଲି ଦେଲି
ସିଗାରେଟ୍ ଖୋଳ ଭଳି କେଉଁ ଏକ ଅନ୍ଧାର କୋଣରେ

ଏତିକି କଳ୍ପନା ସବୁ ଏଣେତେଣେ ପକେଇଲି କେଉଁଆଡ଼େ
ଯେମିତିକା ସିନେମାର ଅଧା ଅଧା ଟିକେଟ୍ ଗୁଡ଼ାକ
ମୋ କ୍ଷୁଧାର ପରିତ୍ୟକ୍ତ ଚୁଲ୍ଲୀମାନଙ୍କରେ
ଯେତେ ସବୁ ଖଣ୍ଡ ଖଣ୍ଡ ଲୋହିତ ଆକାଶ

ମୋ କବିତା ଲଟେଇଛି ତୁମପରି ମୋ' ଉପରେ
ମୋ ଉପରେ ଥିବା ଏଇ ମହା ମହା ଦ୍ରୁମ ପରେ କଳପବର୍ଷର
ମୁଁ କୁଆଡ଼େ ମଦଗ୍ଲାସ୍ ଛୁଇଁ ଖାଲି ଚାଲିଆସିବାରୁ
ହସ ଦୃଷ୍ଟି ବନ୍ଧୁମାନେ କରିଥିଲେ
ମୁଁ କହିଲି ମଦଗ୍ଲାସ୍ ମୁଣ୍ଡରେ ଛୁଆଁଇ
ମୋ ମନର ନିଶା ମତେ ପାରିବ କି ଦେଇ
ମୋ' ମୁହଁର ଲାଜ ଆଉ ତ୍ରାସର ନିଆଁ ଧୂଆଁ ଉହ୍ଲେଇରେ
କିଏ ତା'ର ଗୋଡ଼ ଜାଳେ କେଉଁ ଶକ୍ତି ଆଦିମ ନାୟିକା
ବିଚିତ୍ର ସ୍ପର୍ଶରେ ମତେ ସ୍ତବ୍ଧ କରି
ମୋ ସାଙ୍ଗରେ ମୁଣ୍ଡପୋତି ଆସୁଥିଲା ସମୁଦ୍ରର କୂଳେ କୂଳେ
ସ୍ତୂପ ସ୍ତୂପ ବାଲିରୁ ବାଲିକୁ

କୋଣାର୍କର ଭଗ୍ନସ୍ୱାସ୍ଥ୍ୟ ମୂର୍ତି ପରି
ମୃଣ୍ମୟୀ ମୋ ଚେତନାକୁ ଛାଡ଼ିଦିଏ ଅପେକ୍ଷାରେ ପୁଣି
ଅଧାଥିବା ଦେଉଳର ଚୂଳ ମାରିବାକୁ
କେଉଁଠୁ ଆସନ୍ତା ସେଇ ବିଦ୍ୟୁଦ୍ୱର ଶିଶୁ
କିଏ ସେ ସହନ୍ତା ମୋର ସମ୍ଭାବନା ଗର୍ଭ ବେଦନାରେ
କହ କେତେଗୋଟୀ ପଥରର ଚକ ଆଉ ଦରକାର ହୋଇଥାନ୍ତା
ଉଡ଼ିବାକୁ ଆମରି କୋଣାର୍କ

କହ ଆଗୋ ଗୋଟିପୁଅ
କି ଭଳି ବିଛିନ୍ନ ହେଲି ଶ୍ରାବଣରୁ କହ
ବର୍ଷାର ଡ଼ୋର ସବୁ ବାନ୍ଧି ମତେ ପାରିଲାନି
ସେ ସବୁ ଅତୁଆ ସୂତା ଯଦିଓ ମୁଁ ଆଜି ବି ଫିଟାଏ
କେମିତି ଅଲଗା ହେଲି ସମୁଦ୍ରରୁ ପୃଥିବୀ ଓ
ଜଳସ୍ଥଳୁ ଆକାଶ ପରାଏ

ଆସ ମୋର ଗୋଟିପୁଅ ଆସ
ବୋଲି ହୋଇ ମୋ ମନର ମାଂସ
ମୋ ରକ୍ତର ତାଡି ତକ ଚମ୍ପୂକରି
ମୋ ସ୍ନାୟୁରେ ଛନ୍ଦା ହୋଇ ବନ୍ଧ ଭାଙ୍ଗି
ମଠ ଅଗଣାରେ ସବୁ ଲେଖିଯାଅ ଚିତ୍ରକାବ୍ୟ
ସୋଲର ସେ ବଗବଣି କପୋତ ଓ ଶୁଆ
ତୁଳାର ମୟୂର ଅବା କାକତୁଆ
କାଗଜ କଦମ୍ବ ଆଉ କାଠସଖୀ ବାର୍ଣ୍ଣିସ୍‌ର ହସ
ସବୁ ସତେ ନିର୍ବାକ ତନ୍ମୟ
ସୋଲର ସିପେଇଟିଏ ସ୍ୱପ୍ନଦେଖେ
ସୁନା କିମ୍ବା ରୂପାର ଝୁଲଣ

ଗୀତ ଯାଏ ଘୋରି ହୋଇ ତା' ଆଖିର ପାତଳ ଘୁମରେ
ସମୁଦ୍ର ଅଲଗା ସିନା ଚାନ୍ଦିନୀର ଡ଼ୋର ସବୁ କା ହାତରେ

ମୁଁ ମଠର ଛଞ୍ଚାଖିଆ ଲଣ୍ଠିତ ବ୍ରାହ୍ମଣ
ଆଗେ ନାରୀ ଗୋଟିପୁଅ ଗୋଇଠିରେ ଦଳ ନାହିଁ
ଛାତି ପରି ମଠର ଚଟାଣ

ଗାଅ ତମେ ଲାରେଲାପା
ଶୁଆଶାରି ବଣି ସବୁ ରବଇ ବା ପ୍ଲାଷ୍ଟିକ୍‌ର
ମୁଣ୍ଡ ଟୁଙ୍ଗାରିବେ ବେଶ୍
ବେଶ୍ ଖୁବ୍ ଆନମନା ହୋଇ

ସମୁଦ୍ର ଦୋହଲେ ଅବା ଫର୍ଦ ଫର୍ଦ ଜରି ଓ ଜଂବୁରା
ସେ ସବୁ କଣ୍ଢେଇ ମାନେ ମୁଣ୍ଡ କାଢ଼ି ଦେଖୁଥାନ୍ତି
କୁଢ଼ କୁଢ଼ ବାଲୁକା ସ୍ତୂପରୁ
ଗୁଡ଼ାଏ ଅଡୁଆ ସୂତା ମଧ ଦେଇ ଯେମିତିକା ବୁଢ଼ିଆଣି ଜହ୍ନ
ମୁଁ ତାକୁ ଛିଣ୍ଡାଏ ଆଜି ହେ ମୋର ଗୋଟିପୁଅ ମାନେ
ତମେ କାହା ଦର୍ପଣର ଛାଇ କୁହ ତମେ ନିଶ୍ଚେ
କା ବେଶର ଜଡ଼ଭୂତ ଅନୁଭବ
କା ରଚିର ଅରୂପ ରୂପକ
ହେ ପ୍ରଭୁ ବିଛିନ୍ନ ହେଲି କେମିତି ମୁଁ
ଧର୍ମ ଆଉ ତୁମଠାରୁ କହ
କହ ମତେ ଏଠାରେ ମୁଁ ଏକା ଏକା ବଞ୍ଚିବା ବୃତ୍ତାନ୍ତ
ମୁଁ ଯାଉଛି ମାଳାକାର ଫୁଲ ବିକି ସମୁଦ୍ର କୂଳରେ
ଫୁଲ ମୋର କଟେ ନାହିଁ ଗଣିକା ସାହିରେ
ମୁଁ ପାପ ଛଡ଼ାଏ ମୋର ପୁନରପି ବୃକ୍ଷରୋପି
ନାନାବିଧ ଯୁବତୀଙ୍କ
ଯେତେ ସବୁ ମଲାଫୁଲ ଫୁଟି ଉଠେ ଚନ୍ଦ୍ରାଲୋକେ
ଶହ ଶହ ଗହଳ ଖୋସାରେ

ହେ ମୋ' ନେତ ଓଷେଇତି କୁମାରୀଏ
ବୋଇତ ଫିଟାଅ ଆଜି ସେ କୂଳକୁ

ତମରି ଅଳତାଗାର ଲିଭିନାହିଁ ବନ୍ୟା ସତ୍ତ୍ୱେ
ଏ ପୋଖରୀ ଏ ନଦୀର ତୁଠ ପଥରରୁ

ମରୁରେ ବୋଇତ ଚାଲେ
ତୁମ ପାଦ ମଲ ଝୁମ୍ପା ପାଉଁଜିର ସ୍ୱର ସବୁ ପୋତିହୁଏ
ହେ ମୋର ଗୁରୁବାର ଝୋଟି ଆଉ ମାଣବସା ଚିତ୍ରର ପ୍ରତିମା
କେଉଁ ଭାଷା କେଉଁ ରୂପକଥାର ଇଙ୍ଗିତା
ଦେହେ ତୁମ ଶିବରାତ୍ରି ନେଥି ନେଥି ଅନ୍ଧାର ପ୍ରତିକ୍ଷା
ପକ୍ଷୀର ସ୍ୱର ସବୁ ଜନ୍ମ ନେବା ଅନେକ ପୂର୍ବରୁ
ତମରି ବାସି ଆଡ଼ତି ରୁଣୁଝୁଣୁ ଅସ୍ପଷ୍ଟ ଗୁଞ୍ଜନ
ଆଜି ଏକ ପାହାନ୍ତାରେ ଏ କି ଗୀତ ଗାଇ ଗାଇ ଯା'ଅ

ମୁଁ ଆସୁଛି ଖୋଜି ଖୋଜି
ଏଣୁ ତେଣୁ ଅନେକ ଗୋଟାଇ
ନୁଡୁକ ଚୁପୁଲି ମୁଦି ରୁମାଲ ଓ କରାଟ ତମର
ମୁଁ ଆସୁଛି ଚାଟି ଚାଟି ମହୁଟିକ,
ଏ ବାଲିର ସରୁ ଚକୁଳିରୁ
ସ୍ମୃତିର ଗଞ୍ଜପା ଧରି ଖେଳାଉଛି ଗଣି ଗଣି ମୁଁ ମୋର

ହାରିଯିବା ସତ୍ତ୍ୱେ ବାରମ୍ବାର
ପୁଣି ମୁଁ ଗର୍ଜନ କରେ
ପୁଣି ମୁଁ ଗଡ଼ାଏ ମୋର ପଶାକାଠି
ସମୁଦ୍ର କୁହୁଡ଼ି ଯେବେ ମୂକ କରେ ଆଲୋକର ଭାଷା
ଦୂର ବଣ ତୋଟା ମାଳେ ପୋଡ଼ା ଆମ୍ବ ବଉଳର ବାସ୍ନା

କୋଣାର୍କ ଉଲଗ୍ନ ମୂର୍ତ୍ତି ଥରିଉଠେ ଏ ଶୀତରେ
ଏ ସମୁଦ୍ର ଢ଼ାଂକି ଦିଏ ସରୁ ସରୁ ବାଲିର ଚାଦର
ସେମାନେ ଫୁଟିଲେ ଯେବେ ସେ ସନ୍ଧ୍ୟାରେ
ଯେ ଯାହାର ମନ୍ଦା ମନ୍ଦା ହୋଇ

ମୁଁ ମଣିଲି ମୋ ପୁରୁଣା ପିରାମିଡ୍ ସବୁ
ପାଇଲେଣି ଯେତେ ସବୁ ଆତ୍ମା ତାର ଫେରି
ସେମାନେ ସେ ଆତ୍ମା ମାନେ
ବହୁଦିନ ବହୁଦିନ ପରେ ପଚାରିଲେ

ତମେ କି ଶିଥିଳ ହେଲ
ଏଭଳି ତଟସ୍ଥ ହୋଇ ଦେଖ କଣ
ଆରେ ତମେ ଗୀତ ଗାଅ
ସେ ସବୁର ସଞ୍ଜ ଅନୁରଣ
ଆମେ ସବୁ ସେ ଶବ୍ଦର ମହୁମାଛିଙ୍କର
ମୁଁ କାନ୍ଦିଲି ମୋ ଗୀତରେ
ଛନ୍ଦ ସବୁ ଓଠରେ କାମୁଡ଼ି
ମୋ କଙ୍କାଳ ଛଣ ଆଉ ମାଟି ବୋଳା
ବିସର୍ଜିତ ଦେହରେ ଦେହରେ
ସେମାନେ ଖୋଜିଲେ ବହୁ ଆଶ୍ୱିନର ସମାରୋହ
ମୋ କାନ୍ଧର ଖୋଲରେ ଖୋଲରେ
ପୋଷ ପୋଷ ହସ ଦେଲେ ଢ଼ାଳି

ସେମାନେ ଆସିଲେ ଠିକ୍ ମୋ ଉପରେ
ଟିପ ଦେଇ ମୋ ଛାତିର ସୁନା ବୋତାମରେ
ମୋ ଓଠରୁ ସିଗାରେଟ୍ ଫିଙ୍ଗି ଦେଇ
ସେମାନେ ଜଳେଇ ଗଲେ ନୀଳ ନୀଳ ଚଷମାର ଆଲୁଅରେ
ଛାତିରେ ମୋ ଛୋଟ ଛୋଟ ଲଣ୍ଠନ କୋଡୋଟି

ସେମାନେ ଚାଲିଲେ ସବୁ ଭୁଷୁଡ଼େଇ ବାଲିକୁଦ
ମୋ ଉପରେ ଧୀରେ ଧୀରେ କ୍ରମଶଃ କ୍ରମଶଃ

ମୁଁ କହିଲି ମୁଁ ଦେଖିଛି ହଠାତ୍ ମୋର ଯୌବନର ମୁହଁ
ଗୋଟିପୁଅ ମାଂସିଳ ଦେହରୁ କିବା ଅପୁଷିତା ଓଷେଇଡ଼ି
ନେଡପିଲା ଅଜ୍ଞାନଭଙ୍ଗୀରୁ

ସେ ସବୁ ଔଦ୍ଧତ୍ୟ ଦେଖି ଯୁବତୀଙ୍କ ଗଣ୍ଡଦେଶ
ଫିକା ଗଲା ପଡ଼ି ଯଦିଚ ମୁଁ ବୃଦ୍ଧ ହେଲି
ମୁଁ କହିଲି ରହ ରହ ଥୟ ଧର
ଦିନେ ମୋର ଆଉ ଦିନେ ମଧପର୍ବ ଆସିବ ଏମିତି
ହେ ଭାଙ୍ଗୁଆ ପଣ୍ଡା ଆଉ ଶାସନ ବ୍ରାହ୍ମଣ
ମୋ ଦେହକୁ କର ତୁମ ପଖାଉଜ ଓଡ଼ିଶୀ ମୃଦଙ୍ଗ
ମୋ ଚମଡ଼ା ଖଞ୍ଜଣି କି ହୋଇ ପାରେ
 ତୁମର ସେ ଚିପ ମାନଙ୍କରେ
ହେ ତନ୍ୱୀ ମାହାରୀ ମତେ ସତ କହ
 କହ କହ
ବରଂ କୃଷକ ଭୋଇ ତୁମେ ଆସି ବିଲ ବଣ ମାଳ ମାନଙ୍କରୁ
ମତେ ତମ ବାଦ୍ୟ କର ଘୁମୁରା ତୁଂପା ଓ ଢ଼ୋଲ
ହାତ ଗୋଡ଼ କାଟି ନେଇ କର ମତେ ଛିଅନ୍ତା ମାଦଳ
ଚେତନା ଗୁମରି ଉଠୁ ମୋ ଦେହର ପାରାଭାଡ଼ି ପରେ
ବାଲି ସବୁ କୁଢ଼ା ହେଉ ସ୍ତୁପ ସ୍ତୂପ ମୋରି ଉପରେ
 ତା' ତଳେ ସମୁଦ୍ର କାନ୍ଦୁ
ମତେ ଯାଉ ଘେରି ଯେତେ ଅବସାଦ
ଶୂନ୍ୟତାର ଯେତେ କ୍ଳାନ୍ତି ବିସ୍ମୃତିର
ତା ତଳେ ରହୁ ମୋର ଶୂନ୍ୟତାର ଆନନ୍ଦର ନିରବ ନିଥର

କେମିତି ଖସିଲି ତେବେ ଅନ୍ଧାରରେ
ମଥାରେ ଚକର ନେଇ ମସ୍ତବଡ଼ ଗୋଲ ପାହାଚରୁ
ଗଞ୍ଜେଇ ଧୂଆଁରେ ପଶି
ଶୁଣି ଶୁଣି ହରିଦାସ ମାଳିକା ଓ ସାଲବେଗ ଭକ୍ତର ଭଜନ

ମନ୍ଦାର ଦଳିଲି କେତେ ଲାଲ୍ ଲାଲ୍ ସଫେଦ୍ ମନ୍ଦାର
ସିନ୍ଦୂର ବୋଳିଲି କେତେ ମଙ୍ଗଳା କି ବିମଳା ମାନଙ୍କ
ଚେମେଣି ଅନ୍ଧାର ଘେରା ମୁଖଶାଳା
କିଚିରି ମିଚିରି ସବୁ ବର ଓସ୍ତ ପତ୍ରଘନ ବୃକ୍ଷ କୋଳେ
ସୁନା ମୁହାଁ ଚଂଣ୍ଡୀ ଓ ଚାମୁଣ୍ଡା ଆଦି ଦେବୀ ମାନଙ୍କର
ନିଛକ ଅନ୍ଧାରେ ଖାଲି ଗନ୍ଧ ବାରି ଘିଅଦୀପ ଚୁଆ ଓ ଝୁଣାର
କିଭଳି ବିଚ୍ଛିନ୍ନ ହେଲି ତେବେ କହ
କହ ମତେ କେମିତିକା ଗଲା ସେଇ ଦଳି ଦେଇ
ନନ୍ଦିଘୋଷ ତାଳଧ୍ୱଜ ଓ ଦର୍ପଦଳନ
ମୋ ଡ଼ୋର କ୍ଷେଉଁଠି ଗଲା ଛନ୍ଦି ହୋଇ
କେଉଁ ଘଞ୍ଚ ଅରଣ୍ୟ ଭିତରେ
ଅଧବାଟେ ହଠାତ୍ କିଆଁ ରହିଗଲା
କିଏ ଆଉ ଆସି ପାରିନାହିଁ
କେଉଁ ଭକ୍ତ କେଉଁ ନେତା
କୋଠାବାଡ଼ି ମଠ ଆଉ ଧର୍ମଶାଳା
କି ରଙ୍ଗେ ଚିତ୍ରିତ ଏଇ ଟୋପି ଟୋପି ମଣିଷର ଚିତା
ଚକ୍ର ଓ ପତାକା
ମୁଁ ହାତ ବଢ଼ାଏ ତେଣେ
ଦୁଇପଟେ ଲାଲ ନୀଳ ସନ୍ଧ୍ୟାର ଆକାଶ
ମୁଁ ସେଠାକୁ ଉଠେ

ଆକାଶରେ ହଠାତ୍ ଏ କି ମେଘ ଆସେ
ଚୂଳହୀନ କୋଣାର୍କ ଧାଉଁଛି
ମୋ ସାଥୀରେ ସମୁଦ୍ରର ଅକାତ-କାତରୁ
ମୁଁ ତାକୁ ଦେଖୁଛି ଆଉ ମୁଁ ସେଠୁ ଧାଉଁଛି

ବତାସ ଯାଉଛି ଭାଙ୍ଗି ଜାହାଜ ପଞ୍ଜରା ହାଡ଼
ଏ କିଂଭୂତ କିମାକାର ଝଡ଼ର ସମ୍ପାତି
ସୁଦର୍ଶନ ଚକ୍ର ଓ ପତାକା
ଓପାଡ଼ି ଆଣିବ ଆଉ ଫିଙ୍ଗିଦେବ
ବିସ୍ତାରିତ ସମୁଦ୍ର ଭିତରେ ସବୁ ସମ୍ପାଦି ରଖିବ
ତୁମ ଆଉ ମୋ ଭିତରେ ଆଜି ତା'ର ଚାଲିଛି ସନ୍ଧାନ
କୋଣାର୍କର ଭଗ୍ନଚୂଳ ପାଲ ହାଡ଼ ମହାଦୀପ
ଚୁମ୍ବକ ଓ ହାହା'କାର
ଆର୍ତ୍ତନାଦ ଖନ୍ନଭିନ୍ନ ଢେଉର ଚିତ୍କାର

ଏ କି ସ୍ୱର ଏ କି ନାଦ
ଭାଙ୍ଗିଯାଏ ମେଘନାଦ
ଖୋଲିଯାଏ ସର୍ପବନ୍ଧ ଜୟ ବିଜୟର ଦ୍ୱାର
ଯେ ଦେଖୁଛି ତ୍ରସ୍ତ ଓ ବିଲୀନ

ତମ ଦୁଇ ଚକା ଛାତି
ଚକା ଚକା ଆଖି ତା'ର
ତୁମେ ଓ ମୁଁ କଣ ସେହିଦିନୁ
ଅଦ୍ୟାପି ବିଛିନ୍ନ
ତୁମ ଆଉ ମୋ ଭିତରେ ଆଜି ତେଣୁ ଖୋଜାଚାଲେ
ଯୋଗସୂତ୍ର ସ୍ତୋତ୍ର ଅବା ମାଳଶ୍ରୀ ଛାନ୍ଦର
ଏ ସମୁଦ୍ର ଅଭିଧାନ ଶୀତ ଝଡ଼ କୁହୁଡ଼ିର
ଖୋଜାଯାଇପାରେ ଏଠି ଅନ୍ଧାରର ଅର୍ଥ କଣ

ଏ ସମୁଦ୍ର ଯଦି ଆସେ ଝର୍କା ଦେଇ
ଛାତ ଆଉ ଚଟାଣରୁ
ଏ ସମୁଦ୍ର ପାର ହେବା ଇଛା ମୋର
ବହୁଦିନୁ ଭିକ୍ଷାବୃତ୍ତି
ଦାନ ଦିଆଇବ ଓ ନ ଦିଆ ନ କରିବ

କେଉଁଠି ସେ ସାଧବାଣି ଘର
ବାଟୋଇ ମୁଁ ସିଧା ସେ ରାସ୍ତାର
ଯେତେ ସବୁ ପ୍ରହେଳିକା ଜନ୍ମ ଓ ମୃତ୍ୟୁର
ଯଷ୍ଟୀ ଏକ ଭରା ଦେଇ ଅନ୍ଧାରେ ମୁଁ
ଯୋଗୀର କୁମର
ପାହାଡ଼ ତଳକୁ ଦେଖେ ସୂର୍ଯ୍ୟ
ପେଟ ଆଉ ଜଙ୍ଘର ଖୋଲରେ
ତାଳପତ୍ର ଛତାଟି ମୋ ଫୋପାଡ଼ିଲି
ଢାଙ୍କି ଦେବାକୁ ସେ ସୂର୍ଯ୍ୟ
ସମୁଦାୟ ବନ୍ଦ କରି ଦେବାଲାଗି କ୍ଷରିତ ରଶ୍ମିର ମାୟା
କେଉଁଯୁଗ ଆଗ୍ନେୟ ବୀର୍ଯର
ମୁଁ ଏକ ଉତ୍ତପ୍ତ ଅନ୍ଧାର
ମୁଁ ଝରିଛି ଟୋପା ଟୋପା ସ୍ତନରୁ ତାରାର । ୨୩୫ ।

[୧୯୬୩ ମସିହାରେ ଲିଖିତ ଓ ୧୯୬୪ ମସିହା ପୁରୀରେ ପ୍ରଥମ ଯୁବଲେଖକ ସମ୍ମିଳନୀରେ ପଠିତ ।]



# ଦୀର୍ଘ କବିତା 'ଶଙ୍ଖନାଭି' ଏକ ପ୍ରାୟୋଗିକ ଆଲୋଚନା

*ନିତ୍ୟାନନ୍ଦ ଶତପଥୀ*

କବି ହରିହର ମିଶ୍ରଙ୍କ ଦୀର୍ଘ କବିତା 'ଶଙ୍ଖନାଭି' ପ୍ରଥମେ 'ଭର୍ଣ୍ଣନାଭର ଗୀତ' ଶୀର୍ଷକରେ ୧୯୬୩ ମସିହାରେ ଲିଖିତ ହୋଇ ୧୯୬୪ ପୁରୀ ଠାରେ ପ୍ରଥମ ଯୁବଲେଖକ ସମ୍ମେଳନରେ ଆବୃତ୍ତି ହୋଇଥିଲା । ପରେ ଲାର୍କ୍‌ବୁକ୍ସ ଦ୍ୱାରା ଏହା ୧୯୭୩ ମସିହାରେ ପ୍ରକାଶିତ ହୋଇ କବିଙ୍କ ଶୀର୍ଷକ କବିତା ଭାବରେ ଆତ୍ମପ୍ରକାଶ କରିଛି । ନାମ ପରିବର୍ତ୍ତନରେ ଅସ୍ୱାଭାବିକତା ରହିଛି ନିଶ୍ଚୟ । କାରଣ ଭର୍ଣ୍ଣନାଭି (ବୁଢ଼ିଆଣି) ଠୁ ଶଙ୍ଖନାଭିରେ(ଶବ୍ଦ ବ୍ରହ୍ମ)ପରିବର୍ତ୍ତିତ ହେବାର କାରଣ କବିତାରେ ସୁସ୍ପଷ୍ଟ ହୋଇନାହିଁ । ତେବେ ଗୋଟିଏ ଧାଡ଼ିରେ କବି ଲେଖିଛନ୍ତି– 'ଗୁଡ଼ାଏ ଅଡୁଆ ସୂତା ମଧ ଦେଇ ଯେମିତିକା ବୁଢ଼ିଆଣି ଜହ୍ନ/ ମୁଁ ତାକୁ ଛିଣ୍ଡାଏ ଆଜି ହେ ମୋର ଗୋଟିପୁଅ ମାନେ ।' ଅର୍ଥାତ୍ ବୁଢ଼ିଆଣି ସୂତା ଜାଲରୁ ସେ ମୁକ୍ତି- ଲୋଡ଼ିଛନ୍ତି, ପ୍ରେମ, କାମନା, ଧର୍ମ, ଜଡ଼ ସଭ୍ୟତା ଓ ସଂସ୍କୃତି, ରାଷ୍ଟ୍ର ଓ ବିଶ୍ୱର ସକଳ ଚାପରୁ ମୁକ୍ତି ପାଇବାର ବ୍ୟାକୁଳତା ତାଙ୍କ ବକ୍ତବ୍ୟର ମୂଳ ଚେତନା । ଏହି ମୁକ୍ତି ବୋଧ ଧୀରେ ରହସ୍ୟବୋଧର ସ୍ତରଦେଇ ଆଧାତ୍ମିକ ବୋଧରେ ପରିଣତ ତାଙ୍କ କାବ୍ୟିକ କ୍ରମ ବିବର୍ତ୍ତନରେ । ତେଣୁ ଭର୍ଣ୍ଣନାଭର ପ୍ରାସଙ୍ଗିକତା ଠାରୁ 'ଶଙ୍ଖନାଭି' ନାମକରଣ କରିବାର ଯଥାର୍ଥତା ସେ ଅନୁଭବ କରିଛନ୍ତି । କବି ନିଜେ ଶ୍ରୀକ୍ଷେତ୍ରବାସୀ । ତେଣୁ ଏପରି ନାମକରଣରେ ଶ୍ରୀଜଗନ୍ନାଥଙ୍କ ଶଙ୍ଖନାଭି ମଣ୍ଡଳ କଥା ଚିନ୍ତା କରିବା ତାଙ୍କ ପାଇଁ ବେଶ୍ ଯୁକ୍ତିଯୁକ୍ତ ମନେହୁଏ । କବିତାର ଭାବଧର୍ମରୁ ବା ବାରମ୍ବାର କବିତାରେ ଜଗନ୍ନାଥଙ୍କ ପ୍ରସଙ୍ଗ ପ୍ରତ୍ୟକ୍ଷ ବା ପରୋକ୍ଷରେ ଆରୋପିତ ହୋଇଥିବାରୁ ଶଙ୍ଖନାଭି ମଣ୍ଡଳସ୍ଥ ରତ୍ନସିଂହାସନ କଥା ଚେତନାକୁ ଆଚ୍ଛନ୍ନ କରେ ।

ଉତ୍ତର ଷାଠିଏ ଓଡ଼ିଆ କବିତାରେ ଦୀର୍ଘ କବିତା ଲେଖିବା ଗୋଟିଏ କସରତ୍‌ରେ ପରିଣତ ହୋଇଯାଇଥିଲା । ଅଧିକନ୍ତୁ ପ୍ରୟୋଗବାଦୀ ଧାରାର ଏକ ଆଭିମୁଖ୍ୟ ଭାବେ ଏପରି ପ୍ରୟାସକୁ ମାନ୍ୟତା ଦିଆଯିବା କଥା । ଗୁରୁ ପ୍ରସାଦଙ୍କ 'କାଳପୁରୁଷ' ଠାରୁ ରମାକାନ୍ତଙ୍କ 'ବାଘ ଶିକାର' ଯାଏଁ ଏପରି ପ୍ରୟାସ ସୁପ୍ରେକ୍ଷ । ବିଶେଷତଃ ଭାବ ଓ ଇଡ଼ିୟମ୍‌ରେ କବି

ହରିହର ଗୁରୁପ୍ରସାଦଙ୍କୁ ସଚେତନ ଭାବେ ଅନୁସରଣ କରିଥିବାରୁ ଏପରି ଅନୁମାନ ଲକ୍ଷ୍ୟହୀନ ନୁହେଁ । କିନ୍ତୁ ଦୀର୍ଘ କବିତାରେ ଭାବ ସଂହତି ରକ୍ଷା କରିବା ଗୋଟାଏ ଦୁରୂହ ସମସ୍ୟା ନିଶ୍ଚୟ । ବିଶେଷତଃ ଯେତେବେଳେ କୌଣସି କାହାଣୀକୁ ବା ଚରିତ୍ରକୁ ଅବଲମ୍ବନ କରି କବିତା ଲେଖାଯାଉ ନଥିବ ସେଠାରେ ଏ ସମସ୍ୟା ଆହୁରି ଜଟିଳ । ତେବେ କବି ଗୁରୁ ପ୍ରସାଦଙ୍କ 'ଶଙ୍ଖନାଭି' ଦୀର୍ଘ କବିତାଟି ପାଠ କଲାବେଳେ ସ୍ମରଣ କରାଯାଇ ପାରେ । ସେତେବେଳେ କାଳପୁରୁଷର (ପରୋକ୍ଷରେ T.S. Eliot ଙ୍କ The Waste Landର) ପ୍ରଭାବ କେତେ ଅପ୍ରତିହତ ଥିଲା ହରିହରଙ୍କ ରଚିତ ଏହି ଦୀର୍ଘ କବିତାଟିର ପ୍ରାରମ୍ଭ ପଙ୍‌କ୍ତିରୁ ତାହା ସ୍ପଷ୍ଟ ହୁଏ ।

'ଏଇ ବର୍ଷା ଲୁହ ଥିଲା ଏଇ ଲାଗେ ଯେତେବେଳେ ଝୁରୁଥିଲା
ଚାରିଆଡ଼େ ଚାପି ହୋଇ ପଡୁଥିଲା ବର୍ଷାର କ୍ରନ୍ଦନ ଉଚ୍ଛ୍ୱାସ ।
ଏଇଲାଗେ ସବୁଥିଲା ଏଇଲାଗେ ସବୁ ପୁଣି ଚୁପ୍‌ଚାପ୍
କେତେକାର ବ୍ୟତିବ୍ୟସ୍ତ କାଚ ରୁଣୁଝୁଣୁ
ପରଦା ପଛରୁ ସତେ ଏ ରାତିର ଅବାଞ୍ଛିତ ପରଦା ପଛରୁ
ଏ ପାଣିର କଅଁଳିଆ କଥା ସବୁ
ପାରେ ନାହିଁ ଉଠି ଆଉ ରାସ୍ତାର ଉଠାଣି
ସବୁ ଖାଲି ଭାସିଥାଏ ନିଶବ୍ଦରେ
ଏ ରାତିର ଗହନରୁ ଗହନ ତଳକୁ'

ଏହା ସହିତ 'କାଳପୁରୁଷ'ର ପ୍ରଥମ କେତୋଟି ପଙ୍‌କ୍ତିକୁ ତୁଳନା କରାଯାଇପାରେ ।

'ବର୍ଷାଋତୁ ନିଷ୍ଠୁର ନିର୍ମମ ଫୁଟାଇ ରଙ୍ଗଣୀଫୁଲ ଖତ କୁଢ଼
କାନ୍ଥ ବାଡ଼ ମୂଳେ ହାଡ଼ରେ ଥରାଇ ହସ ମାଟି ତଳେ ଚେର ମୂଳ ଟାଣି
ବର୍ଷାପଡ଼େ ବର୍ଷାପଡ଼େ ଝରି''

ମୋଟ ଉପରେ ବର୍ଷାର ଆଗମନରେ ଦେହ ଓ ମନ ଉପରେ ତାର ପ୍ରଭାବରୁ ଉଭୟ କବିତାର ଆରମ୍ଭ ହୁଏ । ଗୁରୁପ୍ରସାଦ ଆଷାଢ଼ ଆଗମନରେ ବର୍ଷାର ରୁଣୁଝୁଣୁକୁ ଅଙ୍ଗେ ଭୋଗିଲାବେଳେ ଦେଢ଼ବର୍ଷ ତଳେ ପ୍ରେମରେ ପଡ଼ିଥିବା କୌଣସି ତରୁଣୀର ସ୍ମୃତିକୁ ଉଜ୍ଜୀବିତ କରନ୍ତି । କ୍ରମେ ପ୍ରେମ ପ୍ରକାଣ୍ଡ ହତାଶା ଓ ନିରର୍ଥକତାରେ ଦେହ ସର୍ବସ୍ୱ ହୋଇ ଉଠେ, ମନର

ଉତ୍ତେଜନା ଓ ସମର୍ପଣଶୀଳତା ହରାଇ ବସେ । କିନ୍ତୁ ପ୍ରାୟ ତିନିବର୍ଷ ବ୍ୟବଧାନରେ ରଚିତ ତତ୍କାଳୀନ ଯୁବକବି ହରିହର ମିଶ୍ରଙ୍କ କବିତାରେ ଦେହ ଓ ମନ ପାଇଁ ପ୍ରେମ ଉଜାଣି ଉଠିପାରେ ନାହିଁ । ସମସ୍ତ ନରମ କଥା ଓ ନିଶବ୍ଦ ବ୍ୟଥା ରାତିର ବୃଦ୍ଧି ସହିତ ମିଳାଇଥାଏ । ପରଦା ପଛର ସକଳ କାଚ ରୁଣୁଝୁଣୁ ଅବାଞ୍ଛିତ ମନେ ହୁଏ । ମୋଟ ଉପରେ ଗୁରୁପ୍ରସାଦଙ୍କ ପରି ସେ ପ୍ରେମରେ ସତରାଚ଼ର ଶରୀର କ୍ଷୁଧାକୁ ଉପଲବ୍ଧି କରନ୍ତି । କଅଁଳ କଥାଗୁଡ଼ିକ ବର୍ଷାପାଣି ସୁଅ ପରି ବୋହିଯାଏ । ମନ ତାକୁ ବଂଧ ବାଂଧି ଅଟକାଇ ପାରେ ନାହିଁ । ଅତୀତର ଉଠାଣି ଉପରକୁ ମଧ୍ୟ ପାଣି କେବେ ଉଠିବା ସମ୍ଭବ ନୁହେଁ । ସ୍ୱାର୍ଥପର ଦେହ ସର୍ବସ୍ୱ ଲୋକମାନେ ରାତିଟିକୁ ବାଣ୍ଟିକୁଣ୍ଟି ନିଜ ଘର ଓ କୁଖ୍ୟାତ ଗଳିରେ ଉପଭୋଗ କରୁଥିଲାବେଳେ କାବ୍ୟନାୟକ ରେଳେଇ ତଳେ ଭୟରେ ଜଡସଡ଼ ହୁଏ । ମରୁଓଟର ପ୍ରତୀକ ମଧ୍ୟରେ ସେ ମଣିଷର ଅସହାୟତା ଓ ନିଃସଙ୍ଗତାକୁ ପ୍ରତୀକିତ କରନ୍ତି । ବେକଟେକି ଦୃଶ୍ୟ ଦେଖୁଥିବା ଓଟଟିର ପିଠିରେ ଆଦର୍ଶର କୁଜଟିଏ । ପିଠିରେ ଯଦିଓ ସେ ସୌଦାଗରର ଆର୍ଥିକ ସ୍ୱାର୍ଥକୁ ବୋହିଚାଲେ, ତା'ରି ପିଠି କିନ୍ତୁ ଫୁଙ୍ଗୁଳା, ତା' ଉପରେ ଆକାଶର ମଖମଲି ବସ୍ତ୍ର । ସେଠି ହାତୀ ବା ଘୋଡ଼ାର ପିଠି ଉପରର ମଖମଲି ହାଉଦା ନାହିଁ । ନାୟିକାର ଚାହାଣୀରେ ଆସକ୍ତ ହୋଇ ଟାଣିହେବା ପରି ଅବସ୍ଥା କାବ୍ୟ ନାୟକର । ତା ପିଠିରେ ପ୍ରେମ ହୁଏତ ସବାର ଥାଏ । ସେ ଟାଣି ହୋଇଯାଏ, କିନ୍ତୁ ଶେଷରେ ଦେଖେ ସେଠି ପ୍ରେମାସ୍ପଦା ପ୍ରେମକୁ ପଣ୍ୟ କରେ । ତା' ଚାହାଣୀରେ ଆଉ ବି କେହି ଟାଣି ହୋଇ ଆସିଥାଏ । ଏହା ଏକ ପ୍ରାତ୍ୟହିକ ବ୍ୟାପାର । ସେଠାରେ ପ୍ରେମ ପକ୍ଷାଘାତ ଗ୍ରସ୍ତ ବ୍ୟାଧିମାତ୍ର । ପାଠକେ ଏଠାରେ ସ୍ମରଣ କରି ପାରନ୍ତି 'କାଳପୁରୁଷ'ର କାବ୍ୟ ନାୟିକା- ଇରା, ମୀରା, ମିନତି ମାନଙ୍କ କଥା କିମ୍ବା ରମୁର ପତ୍ନୀ ଓ ତା ବାନ୍ଧବୀର କଥୋପକଥନ ପ୍ରସଙ୍ଗ । ଏହି ନାୟିକା ମାନଙ୍କଠାରୁ କାବାରେ ନାଚୁଥିବା ତରୁଣୀମାନେ ଭିନ୍ନ ନୁହଁନ୍ତି । ଏଠାରେ ମନରୁ ରୋମାଣ୍ଟିକ୍ ଭାବନାକୁ ଫିଙ୍ଗିଦେବାକୁ ହେବ ।

'ଯାହା ଅବା ଇଚ୍ଛା ଥିଲା ଜୋତାରେ ମୁଁ ଠେଲି ଦେଲି
ସିଗାରେଟ୍ ଖୋଳ ଭଳି କେଉଁ ଏକ ଅନ୍ଧାର କୋଣରେ'

ସିନେମା ହଲ୍‌ରେ ଅଧାଚିରା ନାଲିନେଳି ଟିକେଟ୍ ଗୁଡ଼ାକ ଯେପରି ଫିଙ୍ଗି ଦେବାକୁ ହୁଏ । ଏ ଗଳିରେ ପ୍ରେମ ପରି ରୋମାଣ୍ଟିକ୍ ସ୍ୱପ୍ନକୁ ସେହିପରି ଉଙ୍ଗେଇଁ ଦେବାକୁ ହୁଏ । ତେଣୁ କାବ୍ୟନାୟକ ତାର ସ୍ୱପ୍ନ ଓ କଳ୍ପନାର ଆକାଶକୁ ଅକସ୍ମାତ୍ ଚୁଲ୍ଲିର ରଡ଼ନିଆଁ ପରି ବାସ୍ତବତା ମଧ୍ୟରେ ସନ୍ଧାନ କରୁଛି । ତା ମନରେ ପ୍ରେମ ନୁହେଁ, କ୍ଷୁଧାହିଁ ଅଧିକତର ସତ୍ୟଭାବେ ଏଠି ଆତ୍ମପ୍ରକାଶ କରୁଛି । ତେଣୁ ଶୀତାର୍ତ୍ତ କ୍ଳାନ୍ତ ଅଧରାତିର ହୋଟେଲ୍ ବୟର୍ ଅବସ୍ଥାକୁ ଉପଲବ୍ଧି କରି କାବ୍ୟନାୟକ ହୁଏତ କାବାରୁ ଉଠି ଆସିଛି ଓ ଘରର ଚୁଲ୍ଲି ପ୍ରତି ଆସକ୍ତ ହୋଇ ଉଠୁଛି ।

ପ୍ରେମକୁ ନେଇ ତାର କଳ୍ପନା ଓ ସ୍ୱପ୍ନ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଯାଉଛି । ଏହାହିଁ ବାସ୍ତବତା । ମଦଗ୍ଲାସକୁ ମାତ୍ର ଛୁଇଁ ଚାଲି ଆସିଥିବାରୁ ହୁଏତ ଦିନେ ବଂଧୁମାନେ ଉପହାସ କରିଥିଲେ । କିନ୍ତୁ ସେଦିନ କବିଙ୍କ ସ୍ୱଗତୋକ୍ତି ମୂଳକ ଉତ୍ତର ଥିଲା- ମଦର ନିଶାରେ ପ୍ରେମକୁ ଚିହ୍ନାଯାଇ ପାରେ ନାହିଁ । ପ୍ରେମ ଠାରୁ କବିତାର ନିଶା ଆହୁରି ଅଧିକ ଆସକ୍ତ କରିପାରେ । ପରମ୍ପରା ଓ ସଂସ୍କୃତିର ବଳୟ ମଧରେ ମହାନ କବିମାନେ ପ୍ରେମକୁ ନେଇ ଚମତ୍କାର ଉପଲବ୍ଧିର କବିତା ଲେଖି ଯାଇଛନ୍ତି । ସେମାନଙ୍କୁ କୌଣସି ଅଖ୍ୟାତ ଗଳିର ନାରୀ ଦେହାଚ୍ଛନ୍ନ କରିପାରି ନାହିଁ । ସେମାନଙ୍କ ମନର ନିଶା ଥିଲା ଭିନ୍ନ ଧରଣର । କେଉଁ ଆଦିମ କାଳରୁ ସେହିପରି ନାୟିକା ମାନେ କବି ଅନ୍ତରର କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରନ୍ତି । କେହି ନାୟିକା ନିତେଇ ଧୋବଣୀ ପରି ନିଆଁରେ ଗୋଡ଼କୁ ଜାଳି ଦେହ ଉପଭୋଗ ପାଇଁ ପ୍ରତୀକ୍ଷା କରୁଥାଏ ତ କେହି ପିତେଇ ସଉରୁଣୀ ଭଳି ତା ମନ୍ତ୍ର ଶକ୍ତି ବଳରେ ଭେଣ୍ଡା ଯୁବକକୁ ଆସକ୍ତ କରି ଟାଣି ନେଇପାରେ । ସେମାନଙ୍କ ପ୍ରତି କାବ୍ୟ ନାୟକ ଏକାନ୍ତ ସଂତ୍ରସ୍ତ ଓ ସଚେତନ । କାବ୍ୟ ପରମ୍ପରାର ଏହି ପ୍ରସଙ୍ଗ ପ୍ରତି ସେ ଲଜ୍ଜାନ୍ୱିତ ମଧ । କାରଣ ପ୍ରେମର ସୂକ୍ଷ୍ମ ମାନସିକ ସମର୍ପଣ ଭାବ ଏପରି ଦେହଭୋଗରେ ଯେ ପାଏ ନାହିଁ । ବରଂ କୋଣାର୍କର ଲାସ୍ୟମୟୀ ରକ୍ତମାଂସହୀନା ମୃଣ୍ମୟୀ ତନ୍ୱୀମାନେ ତାର ଚେତନାକୁ ଆଚ୍ଛନ୍ନ କରି ପାରନ୍ତି । ସମୁଦ୍ର କୂଳରେ ବୁଲୁଥିଲା ବେଳେ ସେମାନେ ହିଁ ସ୍ମୃତି ପଥାରୁଢ଼ ହୁଅନ୍ତି ଓ କ୍ରମେ କୋଣାର୍କର ଅଧାଥିବା ଦେଉଳର ଚୂଳ ମାରିବାକୁ ଅପେକ୍ଷା କରିଥିବା କବି ବିଦ୍ୟୁତ୍‌ର କ୍ଷଣପ୍ରଭ ଶିଶୁଟିର ଆଗମନ କାମନା କରେ । ତା' ଦ୍ୱାରା ବନ୍ଧ୍ୟା ମେଘର ସମ୍ଭାବନା ପରିପୂର୍ଣ୍ଣ ହେବ ଓ କାବ୍ୟ ନାୟକ ତା'ର ପ୍ରେମାସ୍ପଦା ସହିତ ମିଳିତ ହୋଇପାରିବ । ଶିଶୁ ହେବ ତା'ର ଯୋଗସୂତ୍ର । କିନ୍ତୁ ସେ ସମ୍ଭାବନା ରୂପକ ପଥରର ଚକ ନେଇ କୋଣାର୍କ ରଥଟି ଉଡ଼ି ପାରିବା ବିଡ଼ମ୍ବନାମୟ ଓ ଅସମ୍ଭବ । ତେଣୁ ଧର୍ମପଦଟିଏ ସେ ଖୋଜି, ଅପେକ୍ଷା କରି ମଧ ପାଆନ୍ତି ନାହିଁ । ବିଚ୍ଛିନ୍ନ ହୋଇ ଅପୂର୍ଣ୍ଣତାର ଯନ୍ତ୍ରଣାରେ ବ୍ୟାକୁଳ ହୁଏ ପ୍ରେମିକ ହୃଦୟ ।

ଆଜି କଳ୍ପନା ମଧ ବନ୍ଧ୍ୟା ହୋଇ ଯାଉଛି । ପକ୍ଷ ମେଲି ଉଡ଼ିଯିବାର ଶକ୍ତି ହରାଇ ବସୁଛି । କୋଣାର୍କ ଗାତ୍ରର ମଦାଳସୀ ନର୍ତ୍ତକୀମାନେ ଗୋଟିପୁଅର ସ୍ଥାନ ଅଧିକାର କରିଛନ୍ତି । ଶ୍ରାବଣ ବାରିପାତର ରୁଣୁଝୁଣୁ ସ୍ୱର ଆଜି କବି ମନରେ ଆକର୍ଷଣ ସୃଷ୍ଟି କରିପାରୁନାହିଁ । ମେଘ ମେଦୁର ଆକାଶ ପ୍ରେମ ମଦିରାରେ ତା ମନକୁ ଆଚ୍ଛନ୍ନ କରି ପାରୁନାହିଁ । ସମୁଦ୍ର ଠାରୁ ସ୍ଥଳ ଭାଗ କିମ୍ବା ଜଳସ୍ଥଳ ଠାରୁ ଆକାଶ କେବେ ବିଚ୍ଛିନ୍ନ ହୋଇ ପାରିବ କି ? କିନ୍ତୁ ମଣିଷ ତେବେ କିପରି ଅତୀତ ଓ ପରମ୍ପରା ଠାରୁ ବିଚ୍ଛିନ୍ନ ହୋଇଗଲା ?

ପରବର୍ତ୍ତୀ ପ୍ରସଙ୍ଗରେ ପୁରୀର କେତୋଟି ସାଂସ୍କୃତିକ ପରମ୍ପରା କବିଙ୍କ ଚିନ୍ତା ଓ ଚେତନାର ପ୍ରକାଶ ମାଧ୍ୟମ ହୋଇଯାଇଛି । ଏପରି ଭାବନା ସଂସ୍କାରଗତ ନିଶ୍ଚୟ । ତାଙ୍କ ଅବଚେତନକୁ ମଧ୍ୟ ଏପରି ଚିନ୍ତା ଓ ଦୃଶ୍ୟ ଖୁବ୍ ଦ୍ରବୀଭୂତ କରି ରଖିଥିବା ସ୍ପଷ୍ଟ ବାରି ହୁଏ । ପ୍ରଥମେ 'ଗୋଟିପୁଅ' ପ୍ରସଙ୍ଗକୁ ଆସନ୍ତୁ । ସତେ ଯେପରି ଏହି ଚେତନାରେ କବି ମନର ଓ ରକ୍ତର ସମସ୍ତ ଉଷ୍ଣତା ପ୍ରେମର କବିତାରେ ରୂପାନ୍ତରିତ ହୋଇ ଯାଉଛି । ନାରୀକୁ ଛାଡ଼ି ନାରୀ ଭ୍ରମରେ ଗୋଟିପୁଅ ମାନଙ୍କ ଗୀତରେ ପାଗଳ ରସିକମାନଙ୍କୁ ସେ ଉପେକ୍ଷା କରି ପାରିନାହାନ୍ତି । ମହନ୍ତ ଓ ବାବାଜୀମାନଙ୍କ ମଠ ଅଗଣାରେ ଝୁଲଣ ପୂର୍ଣ୍ଣିମାରେ ରାଧାକୃଷ୍ଣ ମିଳନ ଉଚ୍ଛ୍ୱାସ ସହିତ ଗୋଟିପୁଅ ନାଚ ସେପରି ପରିବେଶ ପାଇଁ ଏକ ବିରୋଧାଭାସ ହେଲେ ବି ପୁରୀର ସାଂସ୍କୃତିକ ଜୀବନଧାରାକୁ ଏପରି ଏକ ସଂସ୍କାର ପରିପୁଷ୍ଟ କରି ଆସିଛି । ପ୍ରେମ ପ୍ରମତ୍ତ ପରିବେଶ ପାଇଁ ଶ୍ରାବଣର ଯକ୍ଷବିଧୂର ଆକାଶ ମଧ୍ୟ ବାଧା ଦେଇ ପାରେ ନାହିଁ । କୋଣାର୍କର ନର୍ତ୍ତକୀମାନଙ୍କ ପରି ପୁରୀର ଗୋଟିପୁଅ ନାଚ ଆମ ସାଂସ୍କୃତିକ ପରମ୍ପରାକୁ ରସୋଚ୍ଛଳ କରି ରଖେ । ବଂଧ୍ୟା ସନ୍ୟାସକୁ ମଧ୍ୟ ରସସ୍ରାବୀ ପ୍ରେମୋନ୍ମତ୍ତ ଯାମିନୀରେ ପରିଣତ କରିଦିଏ । ପୁଣି ଝୁଲଣ ଝୁଲାରେ ସୋଲର ବଗ, ବଣି, କପୋତ ମୟୂର, ଶୁଆ ଖଞ୍ଜା ଯାଇଥାନ୍ତି । କାଠ ତିଆରି ସଖୀମାନେ ସ୍ଥାନିତ ହୋଇଥାନ୍ତି । କାଗଜ କଦମ୍ବ ବୃକ୍ଷ ତଳେ ଏ କାଠ ସଖୀମାନେ ନିର୍ଜୀବ ପିତୁଳା ହେଲେ ବି ଆକର୍ଷଣ କରନ୍ତି । ସୋଲର ସିପେଇ ସବୁ ଜଗି ବସି ଦେଖୁଥାଏ । ହେଲେ ନିଦ୍ରାଭିଭୂତ ଆଖିରେ ତା'ର ସ୍ୱପ୍ନ  ନଥାଏ । ପ୍ରତୀକ ଗୁଡ଼ିକରେ ସମସ୍ତ ପରିବେଶ ପ୍ରେମୋଚ୍ଛଳ କଳକଳ ନାଦିନୀ ଝରଣାର ତାନରେ ମୂର୍ଚ୍ଛିତ ହୋଇଥାଏ । ଏହି ରାଧାକୃଷ୍ଣମିଳନ ଗୀତ ଶୁଣିବାକୁ ନିର୍ଜୀବ ଚଢ଼େଇ ମାନେ ଯେପରି ଉତ୍କର୍ଣ୍ଣ । ତେଣୁ ନିରସ ସିପାହୀର ପ୍ରାଣ ଓ ମନ ମଧ୍ୟ ଉନ୍ମୁଖ । ସତେ ଯେପରି ଏଇ ସାଂସ୍କୃତିକ ଐତିହ୍ୟ ମଧ୍ୟରେ ଆମ ଉଚ୍ଛଳ ପ୍ରେମ ପ୍ରାଣରେ ହୃଦୟର ଅପୂର୍ବ ସଙ୍ଗୀତ ବାରମ୍ବାର ଅନୁରଣିତ ହୋଇଉଠେ । ସିପେଇଟାଏ କ'ଣ ବା ପ୍ରେମ ଗୀତରୁ ପାଏ ? ତଥାପି ମଧ୍ୟ ତା ମନରେ ସ୍ୱପ୍ନ ଉଙ୍କିମାରେ । ପ୍ରେମହୀନ କର୍କଶ ପ୍ରାଣରେ ପ୍ରେମର ଉତ୍ତାଳ ବନ୍ୟା ଛୁଟେ । ବୋଧହୁଏ ଏପରି ପ୍ରତୀକ ପରିକଳ୍ପନାର ରହସ୍ୟ ହରିହରଙ୍କ ମୌଳିକତା । ପ୍ରେମର ଏକ ବିଶିଷ୍ଟ ବିଭବ-ବନ୍ତ ଦିଗ ଏଠାରେ ଉନ୍ମୋଚନ କରିବା ପାଇଁ କବି ପ୍ରୟାସୀ ନୁହନ୍ତି କି ? ମୁଣ୍ଡିତ ବ୍ରହ୍ମଚାରୀ ବ୍ରାହ୍ମଣର ଛାତି ମଧ୍ୟ ପ୍ରେମର ଏହି ଉଦ୍ଦୀପନ ବିଭାବରେ ଜଳି ଉଠିବ । ଚନ୍ଦ୍ର କିରଣ ସମୁଦ୍ରରେ ଜୁଆର ସୃଷ୍ଟି କଲାପରି ମଠର ଛଞ୍ଚାଖିଆ ମୁଣ୍ଡିତ ବ୍ରାହ୍ମଣ ମନରେ ମଧ୍ୟ ପ୍ରେମର ଅଦୃଶ୍ୟ ଡୋର ଲାଗି ତାକୁ ଟାଣି ନେଇପାରେ । ମଠର ଚଟାଣରେ ଗୋଟିପୁଅର ପ୍ରତ୍ୟେକ ପଦପାତ, ନୃତ୍ୟ ଭଙ୍ଗୀ ତା' ମନରେ ଅନୁରୂପ ଆବେଗ ସୃଷ୍ଟି କରେ । କିନ୍ତୁ କ୍ଷୋଭର ସହିତ କବି କହନ୍ତି ଯେ, ସେପରି ରସମୟ ସମୟ କ୍ରମେ ଅନ୍ତର୍ହିତ ହୋଇ ଯାଇ ପପ୍ ସଙ୍ଗୀତ ଓ ପ୍ଲାଷ୍ଟିକ୍ ବା ରବରର ଶୁଆ,

ଶାରୀ, ବଣି ସେ ସବୁର ସ୍ଥାନ ଅଧିକାର କରି ବସିଛନ୍ତି । ସମୁଦ୍ରର ଭ୍ରାନ୍ତି ସୃଷ୍ଟି ପାଇଁ ଜରି ଓ ଜମ୍ବୁରାରେ ଆଜି ତାର ପ୍ରଚ୍ଛଦକୁ ସଜାଇ ଦିଆଯାଉଛି । ମୋଟ ଉପରେ ମଠ ମନ୍ଦିରର ଝୁଲଣରୁ ଆଜି ପୂର୍ବର ସାଂସ୍କୃତିକ ସ୍ପନ୍ଦନ ଲୋପ ପାଇ ଏକ ଆଟୋପର ଔଦ୍ଧତ୍ୟ ମୁଣ୍ଡ ଟେକିଛି । ଏପରିକି ସମୁଦ୍ର କୂଳରେ ବସିଥିବା ନାରୀମାନଙ୍କୁ କବି ଏହି କାଠ ଓ ରବରର କଣ୍ଢେଇ ମାନଙ୍କଠାରୁ ଭିନ୍ନ ବୋଲି ଭାବୁନାହାନ୍ତି । ଏମାନଙ୍କ ମନରେ ପ୍ରେମର ସରଳ ସ୍ୱଚ୍ଛତା ନାହିଁ । ଅଛି ଗୁଡ଼ାଏ ଅଡୁଆ ସୂତା, କୁଢ଼ ମୁଢ଼ ବାଲୁକାର ସ୍ତୂପ, ଜୀବନ୍ତ ବଂଧ୍ୟାତ୍ୱର ଅନୁଭବ ମାତ୍ର । କବି ଗୁରୁପ୍ରସାଦଙ୍କ 'କାଳ ପୁରୁଷ'ର କେତୋଟି ଧାଡ଼ି ଏଠି ସାମଞ୍ଜସ୍ୟ ରକ୍ଷା କରିଛି । ତାଙ୍କ ମତରେ ବନ୍ଧ୍ୟାତ୍ୱର ଅନୁଭବ ଖୁବ୍ ତୀବ୍ର ଓ କରୁଣ । ବାରମ୍ବାର ତେଣୁ ସେ 'ବାଲିବନ୍ତ' ଚିତ୍ରକଳ୍ପଟିକୁ ଉଚ୍ଚାରଣ କରିଛନ୍ତି ଓ ତା' ସହିତ ଅନ୍ଧାର ଓ ସମୟର ଅବକ୍ଷୟକୁ ସାମିଲ୍ କରି ଦେଇଛନ୍ତି–

'ଏ କିରେ ଅନ୍ଧାର ଉଠେ ଗିଳି ରେଖା ଆକାର ପ୍ରକାର
ସୀମିତ ମୋ ପୃଥିବୀର ଦିଗ ହଜେ, ହଜିଯାଏ ଉପର ଓ ତଳ
କ୍ଳାନ୍ତ ମୋର ଦେହ ଚାପି ମାଡ଼ିଆସେ ବାଲିଚ଼ର
ମାଡ଼ିଆସେ ବାଲି ଓ ଅନ୍ଧାର ।' (କାଳ ପୁରୁଷ)

ଅବଶ୍ୟ 'କାଳପୁରୁଷ'ର ନିଃସଙ୍ଗତା ବୋଧ ଶ୍ରୀ ମିଶ୍ରଙ୍କର 'ଶଙ୍ଖନାଭି'ରେ ସମ ଉତ୍ତାପ ରକ୍ଷା କରି ପାରିନାହିଁ । ତଥାପି କାବ୍ୟ ନାୟକର ଉପଲବ୍ଧିରେ ସାଦୃଶ୍ୟ ଯେ ରହିଛି ଏହା ସ୍ୱୀକାର୍ଯ୍ୟ ।

ଦର୍ପଣରେ ଛାଇ ପରି କେଉଁ ବିସ୍ମୃତ ବିଗତ କାଳରୁ ଗଡ଼ି ଆସୁଥିବା ରୂପକ ମଧ୍ୟରେ କବିଙ୍କର ସ୍ମୃତିରେ ଜଡ଼ଭୂତ ଦେବୀଙ୍କ ଚିତ୍ର ଉତ୍କୀର୍ଣ୍ଣ ହୋଇ ଉଠେ । କବିଙ୍କ ସାଂସ୍କୃତିକ ମାନସିକତାକୁ ଗୋଟିପୁଅ ପରି ଜର୍ଜ୍ଜରିଭୂତ ଦେବୀଙ୍କ ଚିତ୍ର ମଧ୍ୟ ଉଦ୍‌ବେଳିତ କରେ । ଜରି ଓ ଜମ୍ବୁରାରେ ସଜ୍ଜିତା ଦେବୀଙ୍କ ଏହି ଭୌତିକ ରୂପ କେଉଁ ପୂର୍ବ ପୁରୁଷଙ୍କ ରୁଚି ମଧ୍ୟରେ ଏକ ରୂପଚିତ୍ର ଗ୍ରହଣ କରିଥିଲା । ସେ କଥା ଭାବି କବି ବିସ୍ମିତ ହେଲେ ବି ସେପରି ଏକ ମୂଲ୍ୟବାନ ପରମ୍ପରାରୁ ବିଚ୍ଛିନ୍ନ ହୋଇ ପଡ଼ିଥିବାରୁ କ୍ଷୋଭ ପ୍ରକାଶ କରନ୍ତି ।

'ହେ ପ୍ରଭୁ, ବିଚ୍ଛିନ୍ନ ହେଲି କେମିତି ମୁଁ
ଧର୍ମ ଆଉ ତୁମ ଠାରୁ କହ
କହ ମତେ ଏଠାରେ ମୁଁ ଏକା ଏକା ବଞ୍ଚିବା ବୃତ୍ତାନ୍ତ ।'

ବର୍ତ୍ତମାନ ଗଣିକାମାନେ ଅତୀତ ପରି ଆଉ ଚମ୍ପୂଗାନ କରୁନାହାନ୍ତି, ନାଚ କରୁନାହାନ୍ତି କିମ୍ବା ଗଣିକା ସାହିରେ ରସିକ ମାନଙ୍କ ଉଦ୍ଦେଶ୍ୟରେ ଫୁଲର ପସରାମେଲି ମାଳୁଣୀମାନେ ବସୁନାହାନ୍ତି । ଆଜି ହୁଏତ ସମୁଦ୍ରକୂଳରି ମାଳାକାରମାନେ ଫୁଲ ବିକୁଛନ୍ତି । ପ୍ରେମର ଅବକ୍ଷୟ ଏହା ଦ୍ୱାରା ସ୍ପଷ୍ଟ ସୂଚିତ । କାବ୍ୟନାୟକ ରସିକତା କରି କହେ- ସେ ବରଂ ପ୍ରେମର ଫୁଲଗଛଟିଏ ଲଗେଇଦେବ- ସେଠାରେ ନାନାବିଧ ଫୁଲ ଫୁଟିବ ଓ ଯୁବତୀମାନେ ପ୍ରେମଫୁଲ ତୋଳି ଖୋସାରେ ଆସୁଥିବେ । ଖୁବ୍ ଦୂରଗାମୀ ପରିକଳ୍ପନା ନିଶ୍ଚୟ-ତେଣୁ ଏକାନ୍ତ ରୋମାଣ୍ଟିକ୍ । କଳ୍ପନା ଏଠାରେ ମୁକ୍ତ ନିରାଲମ୍ବ ଏବଂ ବେଗଗାମୀ । 'ଚନ୍ଦ୍ରାଲୋକରେ ଯେତେ ସବୁ ମଲ୍ଲୀଫୁଲ ଫୁଟି ଉଠିବା' କଣ ସୂଚନା ଦିଏ ? ପ୍ରେମ ଏପରି ଏକ କିମିୟା ଯାହାର ମନ୍ତ୍ରରେ ମୃତ ଜୀବନ୍ତ ହୋଇ ଉଠିଲା ପରି ପ୍ରାଣହୀନ, ବେଗହୀନ, ସ୍ଥାଣୁ ଓ ବନ୍ଧ୍ୟା ଜୀବନକୁ ପ୍ରେମ ଚଳ ଚଞ୍ଚଳ ଓ ଉନ୍ମୁଖ କରି ଦେଇପାରେ । ଗତିହୀନକୁ, ନିଷ୍ପନ୍ଦକୁ ବେଗଗାମୀ କରିପାରେ ।

କବିତାର ପରବର୍ତ୍ତୀ ପର୍ଯ୍ୟାୟରେ ସାଂସ୍କୃତିକ ଚେତନାକୁ 'ନେତ ଓଷେଇତୀ' କୁମାରୀର ସ୍ମୃତି ସଞ୍ଜଳ କରେ । ପୁରୀ ଜନ ଜୀବନର ଓ ଲୋକକଥାର ସ୍ମୃତିକୁ ବହନ କରୁଥିବା ଏହି ଚିତ୍ରଟି ଏକାନ୍ତ ସ୍ୱାଦ୍ୟ ଓ ସୁନ୍ଦର । ଆଶ୍ୱିନମାସ କୃଷ୍ଣ ପକ୍ଷରେ ଗୋଟିଏ ଅପୁଷ୍ପିତା କୁମାରୀକୁ ଓଡ଼ିଶୀ ନର୍ତ୍ତକୀ ଭଳି ସଜେଇ ପୁରୀବାସୀଏ ମାର୍କଣ୍ଡ କୂଳକୁ ଆଣି ପୂଜା କରାନ୍ତି ଓ ଶେଷକୁ ପ୍ରସ୍ତୁତ କଦଳୀ ପାଟୁଆର ବୋଇତରେ ଦୀପ ଜାଳି ଭସାଇ ଦିଅନ୍ତି । କେଉଁ ବିସ୍ମୃତ ଅତୀତରୁ ସତେ ଯେପରି ଲାସ୍ୟମୟୀ ଅଲକ୍ତକ ଚରଣା କୁମାରୀ ମାନଙ୍କ ପାଦର ରକ୍ତ ଚିହ୍ନ ତଥାପି ପୋଖରୀ ଓ ନଦୀର ତୁଠପଥରରେ ଏବେ ବି ଲାଗି ରହିଛି । ସେଦିନର ପାଦ ମଲ୍ଲ-ଝୁମ୍ପା, ପାଉଁଜିର ସ୍ୱର ଆଉ ରୁଣୁଝୁଣୁ ହେଉନାହିଁ । ସତେ ଯେପରି ମରୁବାଲିରେ ସେସବୁ ପୋତି ହୋଇଯାଇଛି । ମରୁବାଲି ବନ୍ଧ୍ୟାତ୍ୱ (Barrenness)ର ପ୍ରତୀକତା କରୁଥିଲା ବେଳେ ପୋତି ହୋଇ ପଡ଼ିବା ସାଂସ୍କୃତିକ ଅବକ୍ଷୟର ସୂଚନା ବହନ କରେ । ଗୁରୁବାର ଝୋଟିଚିତା, ମାଣବସା, ବ୍ରାହ୍ମ ମୁହୂର୍ତ୍ତରେ ଗ୍ରାମ କୁମାରୀମାନଙ୍କ ରୁଣୁଝୁଣୁ ପଦପାତରେ ସମବେତ ଗ୍ରାମ ସଫେଇ (ବାସି ଆଳ୍ପତି), ସମବେତ ଗୀତଗାନ (କୁଆଁର ପୁନେଇ,' ରଜଦୋଳି, ପୁଚିଖେଳ) ଏ ସବୁ କ୍ରମେ ତିରୋହିତ ହୋଇ ଯାଉଛି । ସେ ଦିନର ଅଙ୍ଗସଜ୍ଜା ପାଇଁ ପ୍ରଯୁକ୍ତ ନୁତୁକ, ଚୁପୁଲି, ମୁଦି କିମ୍ବା ବହୁ ବ୍ୟବହୃତ କରାଟ ଓ ରୁମାଲ (ନେତ ପିଲାର ଆହାର୍ଯ୍ୟ ସାମଗ୍ରୀ) ଆଉ ହୁଏତ ଦେଖିବାକୁ ମିଳିବ ନାହିଁ । ସମୁଦ୍ର ଜୁଆରର ଫେଣରାଶିକୁ ଓଦା ବାଲି ଚାଟି ଦେଲାପରି ସମୟ ସବୁକୁ ଚାଟି ଦେଇଛି । ସମୁଦ୍ର ସେପାରିକୁ ବଣିଜ ବେପାର କରିଯିବାର ସ୍ମୃତିକୁ ବହନ କରୁଥିବା 'ନେତ ଓଗେଇତି' ପୂଜା ଆଜି କେବଳ ଏକ ଔପଚାରିକ ସ୍ମୃତି ମାତ୍ର । ତେଣୁ 'ମରୁରେ ବୋଇତ ଚାଲେ' ବୋଲି ଉଚାରଣ କର କବି ଇତିହାସକୁ ସ୍ମରଣ

କରିବା ସଙ୍ଗେ ବର୍ତ୍ତମାନକୁ ବିଦ୍ରୂପ ହିଁ କରିଛନ୍ତି । ଅର୍ଥାତ୍ ଆଉ ବୋଇତ ପାଲ ମେଲି ସମୁଦ୍ରରେ ଯାଉନାହିଁ ।

'ମୁଁ ଆସିଛି ଚାଟି ଚାଟି ମହୁଟିକେ ଏ ବାଲିର ସରୁଚକୁଳିରୁ'

ଲୋକ ପହଳିର ଗୋଟିଏ ଉକ୍ତି ଏଠାରେ 'ମହୁ ଓ ସରୁ ଚକୁଳି' ଚିତ୍ରକଳ୍ପ ମଧ୍ୟରେ ପ୍ରତି ଫଳିତ ହୋଇଛି । ରାଜାଙ୍କ ବୋହୂ ବେଠି ଖଟିବା ଅଜବ କଥା ହେଲେ ବି ଲୋକଗୀତରେ ତାହା ସତ୍ୟ ହୋଇପାରେ–

'ସରୁଚକୁଳିର ଉପରେ ମହୁ
ବେଠି ଖଟିଗଲେ ରାଜାଙ୍କ ବୋହୂ'

ହୁଏତ କେଉଁ ରାଜାଙ୍କ ଅସୂୟ ରାଣୀମାନେ ସାନବୋହୂଙ୍କୁ ବେଠି ଖଟେଇ ଥାଇ ପାରନ୍ତି, ପୋଇଲି ପରି ଖଟେଇ ଥାଇ ପାରନ୍ତି । ଶ୍ରୀ ମିଶ୍ରଙ୍କ ପ୍ରୟୋଗ କିନ୍ତୁ ଭିନ୍ନ ପ୍ରକାରର । 'ମୁଁ ଆସୁଛି ଚାଟି ଚାଟି ମହୁଟିକ ଏ ବାଲିର ସରୁ ଚକୁଳିରୁ/ ସ୍ମୃତିର ଗଂଜପା ଧରି ଖେଳାଉଛି ଗଣି ଗଣି ସବୁ ମୁଁ ମୋର ।' ଅତୀତର ମାଧୁର୍ଯ୍ୟକୁ ବେଳାଭୂମିରୁ ସାଉଁଟି ନେଇ କବି ମରୁଭୂମିର ଉତ୍ସ ସନ୍ଧାନ କରିଛନ୍ତି । ଗୋଟାଏ ଯୁଗଠାରୁ ଆଉ ଗୋଟାଏ ଯୁଗ ହାରି ଯାଇଛି ଓ ବାରମ୍ବାର ପ୍ରମାଦର ପୁନରାବୃତ୍ତି ଘଟିଛି । ବାରମ୍ବାର ହାରିବି ଯୁଧିଷ୍ଠିର ମାନେ ପଶାକାଠି ଗଡ଼େଇ ଚାଲିଛନ୍ତି । ସମୁଦ୍ରର କୁହୁଡ଼ି ଆଲୋକକୁ ଆଚ୍ଛାଦିତ କଲା ପରି ମଣିଷର ମୋହ ଭ୍ରାଂତି ତା'ର ଶୁଦ୍ଧବିବେକକୁ ବାରମ୍ବାର ଆଚ୍ଛନ୍ନ କରିଦେଇଛି । ସେ ବିଚାର ବିମୂଢ଼ ହୋଇ ସର୍ବସ୍ୱ ହରାଇଛି । ଫଳ ଫଳିବାର ସମସ୍ତ ସଂଭାବନା ସତ୍ତ୍ୱେ କୁହୁଡ଼ିରେ ଆମ୍ବବଉଳ ଗୁଡ଼ାକ ପୋଡ଼ି ଅଙ୍ଗାର ହୋଇଯିବା ପରି ବିବେକର ଏହି ହତ ଚୈତନ୍ୟ ଅବସ୍ଥା । ବାରମ୍ବାର ଏହି ଅବକ୍ଷୟରୁ ସଂସ୍କୃତି ବା କିପରି ରକ୍ଷା ପାଇ ପାରନ୍ତା ? ତାହା ହିଁ କବି ମନର ଶୋଚନା ଓ କାରୁଣ୍ୟ । 'ଗଂଜପା' । ଏକ ସାରଖେଳ । ଚିତ୍ରିତ ତା'ର ପୃଷ୍ଠପଟ । ପଟଚିତ୍ର ପରି । ସ୍ମୃତିର ଚିତ୍ର ଏଥିରେ ଉଜ୍ଜୀବିତ । ବ୍ୟକ୍ତି ସ୍ୱାର୍ଥର ପ୍ରାଧାନ୍ୟ ମେଳ ବା ଏକତ୍ର ଆନନ୍ଦ ବାଣ୍ଟି ଦେବାର ଅବକାଶକୁ ଭାଙ୍ଗି ଦେଉଛି ଓ ତାହା ମଧ୍ୟ ଅର୍ଥକରୀ 'ଜୁଆ'ରେ ପରିଣତ ହୋଇଗଲାଣି । କ୍ଷେତ୍ରବାସୀ ମାନେ 'ଗଂଜପା' ଖେଳ ପ୍ରତି ଯେତେ ଆସକ୍ତ ସେତେ ପରିମାଣରେ ସଂସ୍କୃତି ବା ଐତିହ୍ୟର ଋଚି ପ୍ରତି ସଚେତନ ନୁହନ୍ତି । ସମୁଦ୍ର କୁହୁଡ଼ି ସୂର୍ଯ୍ୟାଲୋକକୁ ଲୁଚେଇ ଦେଲା ପରି ସମୟ କ୍ରମେ ଅତୀତକୁ ଲୁଚେଇ ଚାଲିଛି । ଆମ୍ବ ବଉଳର ମଧୁର ବାସ୍ନା ପରିବର୍ତ୍ତେ ସେଠାରେ କେବଳ ପୋଡ଼ା ଆମ୍ବ ବଉଳର ଉତ୍କଟ ଦୁର୍ଗନ୍ଧ ।

ପୁଣି ଥରେ କବିଙ୍କ ଚେତନାକୁ କୋଣାର୍କ ଆକୃଷ୍ଟ କରିଛି ଓ ଏ ପର୍ଯ୍ୟାୟରେ କୋଣାର୍କ ଗାତ୍ରରେ ପଥରର ଭାସ୍କର୍ଯ୍ୟରେ ଫୁଟି ଉଠିଥିବା କାମାତୁରା ନାରୀମାନେ ତାଙ୍କ ଦୃଷ୍ଟି ପଥାରୁଢ଼ ହୋଇଛନ୍ତି । ତାଙ୍କ ଦୂରଗାମୀ ପରିକଳ୍ପନାରେ ସତେ ଯେପରି ବାଲିର ପାଛୁଡ଼ା ବା ଚାଦର ସେହି ନାରୀମାନଙ୍କ ନଗ୍ନତାକୁ ଢ଼ାଙ୍କି ଦେଉଛି । ଏଣେ ପୁରୀର ସମୁଦ୍ରକୂଳରେ ସଂଧ୍ୟାବେଳେ କାମାତୁରା ନାରୀମାନଙ୍କ ଗହଳି । କବିଙ୍କ ରୋମାଣ୍ଟିକ୍ କଳ୍ପନା ଏଠାରେ ଏଇ ଦୁଇ ଜଡ଼ ଓ ଜୀବନ୍ତଙ୍କୁ ଏକାଠି କରି ଦେଇଛି । ପୀରାମିଡ୍‌ରୁ ମୃତ ଦେହ ପୁଣି ଆତ୍ମାକୁ ଫେରି ପାଇ ଉଠି ଆସିବାର ବିଶ୍ୱାସ ମିଶରବାସୀଙ୍କର ଏକାନ୍ତ ନିଜସ୍ୱ । ଏଠି ସତେ ଯେପରି କୋଣାର୍କର ସେହି ପାଷାଣ ପ୍ରତିମାମାନେ ସନ୍ଧ୍ୟା ଆଗମନରେ ପୁରୀ ସମୁଦ୍ର ବେଳାରେ ଜୀବନ୍ୟାସ ନେଇଛନ୍ତି । କଳ୍ପନାର ପକ୍ଷ କେତେ ବିସ୍ତୃତ ଓ ବାୟବୀୟ ଅନୁମାନ କରାଯାଇପାରେ । ସତେ ଯେପରି ସେଇ ପ୍ରସ୍ତର ମୂର୍ତ୍ତିମାନେ ଏଠି ସଶରୀର ହୋଇ ପ୍ରେମ ରାଗିଣୀ ଶୁଣିବାକୁ ଅନୁରୋଧ କରୁଛନ୍ତି । ଆଧୁନିକ ମଣିଷ କଣ୍ଠରୁ ସଙ୍ଗୀତର ବିଭୋର ସ୍ୱର ମରିମରି ଯାଇଥିଲା ବେଳେ ସେହି ମଦାଳସୀ ମାନେ ବେଳାଭୂମିରେ ପହଁଚି ପ୍ରେମ ଉଚ୍ଛ୍ୱସିତ ଅତୀତକୁ ଫେରିଯିବାକୁ ଅନୁରୋଧ କରୁଛନ୍ତି– ଯେଉଁ ଗୀତ ମହୁମାଛି ଫୁଲରୁ ଫୁଲକୁ ଉଡ଼ି ଗୁଣୁଗୁଣୁ ଗାଇଥାଏ– ପ୍ରାଣଭରା ଯୌନ ଉଦ୍ଦୀପକ ପ୍ରେମ ସଙ୍ଗୀତ ।

କିନ୍ତୁ ମଦାଳସୀ ମାନଙ୍କ ଆଗ୍ରହ ଓ ଆହ୍ୱାନକୁ କାବ୍ୟନାୟକ ପୂରଣ କରିପାରୁ ନଥାଏ କ୍ଷୋଭରେ ସଢ଼ିଯାଏ । ନିଜକୁ ସେ 'The wasteland' ର ନାୟକ ପରି stuffed man ବା ପାଳଭୂତ ଭାବେ ଅନୁଭବ କରେ । ('ମୋ କଙ୍କାଳ ଛଣ ଆଉ ମାଟି ବୋଳା ବିସର୍ଜିତ ଦେହର ଭିତରେ') ତା' କଣ୍ଠରୁ ପ୍ରେମ ପରିବର୍ତ୍ତେ ବରଂ କାରୁଣ୍ୟର ସଂଗୀତ ଉଚ୍ଚାରିତ ହୁଏ । ପାଠକେ ଏଠାରେ ଗୁରୁପ୍ରସାଦଙ୍କ 'ଗୋବର ଗଣେଶ' କଥା ସ୍ମରଣକୁ ଆଣି ପାରନ୍ତି । ନାୟକ ଏଠି ଅନାସକ୍ତ ଥିଲେ ବି ନାୟିକାମାନେ ତାକୁ ତଥାପି ଉତ୍ପୀଡ଼ିତ କରନ୍ତି । ନାୟକ ଛାତିର ସୁନାବୋତାମ ଟିପି ଦେବା ଓ ଓଠରୁ ସିଗାରେଟ୍ ଫିଙ୍ଗିଦେବା ମଧ୍ୟରେ ଏହା ପ୍ରତିପାଦିତ । ପୁନଶ୍ଚ ସେମାନେ ହସି ହସି ଗଡ଼ି ଯାଉଥିବାର ଓ ନାୟକର କାନ୍ଧ ଖୋଲରେ ପୋଷ ପୋଷ ବାଲି ଭଳି ହସ ଭର୍ତ୍ତି କରିବାରେ ସେମାନଙ୍କ କାମୋନ୍ମତ୍ତ ମନୋବୃତ୍ତି ପ୍ରତିପାଦିତ ହୁଏ । କିନ୍ତୁ ଏ ସବୁ ସତ୍ତ୍ୱେ ନାୟକ ବୋଧହୁଏ ଗୁରୁବାବୁଙ୍କ 'ଗୋବର ଗଣେଶ' ପରି ସ୍ପୃହାହୀନ ଓ ଅସମର୍ଥ । କିନ୍ତୁ ତାର ପୋଷାକରେ ସୁନାବୋତାମର ଆଭିଜାତ୍ୟ ଫୁଟି ଉଠି ଥାଇପାରେ ଏବଂ ତାହା ନାୟିକା ମାନଙ୍କୁ ଆକର୍ଷଣ କରିବାର ଇଚ୍ଛା ଓ ପ୍ରଚେଷ୍ଟା ମଧ୍ୟ ହୋଇପାରେ । ନାୟିକାମାନଙ୍କ ନୀଳ ନୀଳ ଚଷମାରେ ନାୟକ ଛାତିର ସୁନା ବୋତାମ ପ୍ରତିଫଳିତ ହେବାରେ ମଧ୍ୟ ଅସ୍ୱାଭାବିକତା କିଛି ନାହିଁ । କିନ୍ତୁ ଏଠାରେ ଆଉ କିଛି ଅଧିକ ଗଭୀର ସତ୍ୟ ଉତ୍ଥାପିତ ହୋଇଥିବା ମନେହୁଏ । ବୋଧହୁଏ କାମାତୁରା ସେହି ନାରୀମାନଙ୍କ

ଆଖିର ନିଆଁରେ ନାୟକର ଛାତି ଜଳି ଯାଉଥିବାର ଏହା ହିଁ ସୂଚନା ଦିଏ । ପୁଣି ସେହି ନାୟିକାମାନେ ବାଲିକୁଦକୁ ଉଛୁଳେଇ ସତେ ଯେପରି ନାୟକକୁ ଅବଜ୍ଞା କରି ତା' ପିଠି ଉପରେ ଚଢ଼ି ଯାଉଥିବାର ବ୍ୟଞ୍ଜନା ନାୟକର ଅସାମର୍ଥ୍ୟକୁ ବାରମ୍ବାର ସୂଚେଇ ଦିଏ । ଏହା ହୋଇପାରେ ଅସାମର୍ଥ୍ୟ, ପୁଣି ବି ହୋଇପାରେ ସଂସ୍କୃତି ମନସ୍କ ନାୟକର ଏହି କାମାତୁରା ଆଧୁନିକା ରମଣୀମାନଙ୍କ ପ୍ରତି ଅବଜ୍ଞା ମନୋଭାବ । କାରଣ ନାୟକ ସେମାନଙ୍କୁ ଗୋଟିପୁଅର ମାଂସଳ ଦେହ ଓ ଅପୁଷିତା ଓଷେଇତୀ କଥା ସ୍ମରଣ କରେଇ ଦିଏ । ସ୍ୱାଭାବିକ ଭାବେ କାମାତୁରା ନାରୀମାନେ ଆହତ ହେବା କଥା । ନାୟକର ଏପରି ଔଦ୍ଧତ୍ୟ ପୂର୍ଣ୍ଣ ଉଚ୍ଚାରଣରେ ଯୁବତୀମାନଙ୍କ ମନ ଫିକା ପଡ଼ିଯିବା କଥା ଓ ସେମାନେ ନାୟକଙ୍କୁ ବୁଢ଼ା ଓ ଅପାରଗ ଭାବି ଅବଜ୍ଞା କରି ଚାଲିଯିବା କଥା । କିନ୍ତୁ ସଚେତନ ନାୟକ ସେମାନଙ୍କୁ ତାଗିଦ୍ କରି ସୂଚେଇ ଦିଏ– 'ମୁଁ କହିଲି ରହ ରହ ଥୟ ଧର / ଦିନେ ମୋର ଆଉ ଦିନେ/ମଧ୍ୟପର୍ବ ଆସିବ ଏମିତି' । (ମଧ୍ୟ ପର୍ବରେ ଓଡ଼ିଆ ସାହିତ୍ୟର ପାରମ୍ପରିକ ରୀତିଯୁଗ କଥା ମନକୁ ଆସିବାରେ ଏହା ଯେ ପ୍ରେମ ପ୍ରତି ଏକ ବ୍ୟଙ୍ଗାତ୍ମକ ସୂଚନା, ଏଥିରେ ସନ୍ଦେହ ନାହିଁ) ।

ପରବର୍ତ୍ତୀ ପର୍ଯ୍ୟାୟରେ ପୁରୀର ଶାସନୀ ବ୍ରାହ୍ମଣ ଓ ଭାଙ୍ଗୁଆ ପଣ୍ଡାଙ୍କୁ କବି ସ୍ମରଣ କରନ୍ତି । ଏକଦା ସେମାନେ ମାହାରୀ ନୃତ୍ୟକୁ ପ୍ରୋତ୍ସାହନ ଦେଇଥିଲେ । ତାହା ହିଁ ହୋଇପାରେ ଆମ ସାଂସ୍କୃତିକ ଓ ଶାସ୍ତ୍ରୀୟ ଓଡ଼ିଶୀ ନୃତ୍ୟର ଆଦି କଥା । କବି ନିଜକୁ ଏହି ସାଂସ୍କୃତିକ ଚେତନା ସହିତ ଏତେ ସମୀକୃତ କରି ଦେଇଛନ୍ତି ଯେ ନିଜ ଦେହର ସମସ୍ତ ଅବୟବକୁ ବାଦ୍ୟଯନ୍ତ୍ରରେ ପରିଣତ କରିଛନ୍ତି ଠିକ୍ କବି ଶେଲିଙ୍କ ଭଳି (Make me thy lyre oh, wind !) । ଏପରି କି ନିଜ ଦେହର ଚମଡ଼ାରେ ମୃଦଙ୍ଗ, ଖଜଣି, ତୁଂପା ଓ ପଖାଉଜ କରି ବଜେଇବାକୁ ସେ ଶାସନୀ ବ୍ରାହ୍ମଣ ଓ ପଣ୍ଡା ମାନଙ୍କୁ ଅନୁରୋଧ କରୁଛନ୍ତି, ତାହାରି ତାଳେ ତାଳେ ତନ୍ୱୀ ମାହାରୀମାନେ ନୃତ୍ୟର ଛନ୍ଦ ଖୋଜି ପାଇବେ । ଏପରିକି ହାତଗୋଡ଼ କଟା ଜୀଅନ୍ତା ମାଦଳ ଭଳି ସେ ପଡ଼ି ରହିବେ ଯାହା ତଳେ ଚେତନାର ପାରାମାନେ ଘୁମରୁଥିବେ । (ମାଦଳ ଜଗନ୍ନାଥଙ୍କ ମନ୍ଦିର ଉପରେ ଶତ ଶତ ପାରାଙ୍କ ଅବସ୍ଥାନ ଓ ଘୁମୁରା ଯେ ଏପରି ଏକ ଚିତ୍ରକଳ୍ପ ସୃଷ୍ଟି କରିଛି– ଏକଥା ଅନୁମାନ କରାଯାଇପାରେ ।)

ଏହି ଚେତନାରେ ତେଣୁ ପୁରୀର ବେଳାଭୂମିର ବିସ୍ତୃତ ବାଲୁକାରାଶି ଓ ପରିବ୍ୟାପ୍ତ ସମୁଦ୍ର ଭାବନା କବି ମନକୁ ଆଚ୍ଛନ୍ନ କରିବା ବିଚିତ୍ର ନୁହେଁ । ବରଂ ଏହି ବିଶାଳ ନୀଳ ସମୁଦ୍ର କବି ମନର ସମସ୍ତ ଅସମାପ୍ତ କଳ୍ପନା, କ୍ଳାନ୍ତି, ଅବସାଦ ଓ ଶୂନ୍ୟତା ବୋଧକୁ ନୀରବତା ଓ ନିଥରତାରେ ଛନ୍ଦମୟ କରିଦିଏ । କବି ବିସ୍ତୃତିର ବ୍ୟାପ୍ତି ପାଖରେ ତାର ଆକୁଳତାକୁ ହଜାଇ ବସେ ଓ ଗାନ କରେ– 'ପ୍ରାଣ ମୋର ଶୂନ୍ୟତାର ଆନନ୍ଦରେ ନିରବ ନିଥର ।' ଏ ଶୂନ୍ୟତା

ଆଧୁନିକ ମଣିଷର ନିଃସଙ୍ଗତା ବୋଧ ନୁହେଁ ବରଂ ଏକ ପ୍ରକାର ଚୈତନିକ ଅବସ୍ଥା, ଯେଉଁ ଅବସ୍ଥାରେ କି ମନର ସମସ୍ତ ଅସ୍ଥିରତା ଓ ଉଦ୍‌ବେଗ ଲୋପ ପାଇଯାଏ ଓ ଚିତ୍ତ ସ୍ଥିର ହୋଇ ଅସୀମ ନୀଳ ସମୁଦ୍ରର ବ୍ୟାପ୍ତିରେ ହଜିଯାଏ । ଏ ସବୁ ଯୁଗେ ଯୁଗେ ପୁରୀର ସଂସ୍କୃତିକୁ ପରିପୁଷ୍ଟ କରି ଆସିଥିବା କବି ବିଶ୍ୱାସ କରନ୍ତି ।

ତେବେ ଏତେବଡ଼ ବିଶ୍ୱାସ ଓ ପରମ୍ପରାର ଉପରୁ ଆଧୁନିକ ମଣିଷର ଅଧୋପତନ କାହିଁକି ହେଲା ? ସେ ତାର ସାଂସ୍କୃତିକ ବିଶ୍ୱାସ ହରାଇ ଗଞ୍ଜେଇ ଧୂଆଁ, ମାଳିକା ଓ ଭଜନରେ ମାତି ରହିଲା । ମଙ୍ଗଳା ଓ ବିମଳାଙ୍କ ମୁଣ୍ଡରେ ସିନ୍ଦୂର ବୋଲି ମନ୍ଦାର ଚଢ଼ାଇ ତାହାକୁ ହିଁ ପରମାର୍ଥ ମଣିଲା । ମନ୍ଦିର ଚେମେଣି ଗୃହ ଘେରା ଅପରିଷ୍କାର ମୁଖଶାଳାକୁ ଦେଖି ଦେଖି ସେ ଓସ୍ତଗଛ ଗଣ୍ଡିରେ କଳା ସିନ୍ଦୂର ବୋଳି ସୁନାମୁହିଁଚଣ୍ଡୀ ଓ ଚାମୁଣ୍ଡାଙ୍କ ପାଖରେ ଘିଅଦୀପ ଜାଳିଲା, ଝୁଣାଧୂଆଁ ଦେଲା । ଆଧୁନିକ ମଣିଷ ଏହିସବୁ ଅନ୍ଧାର ଓ ଅନ୍ଧାରୀ ବିଶ୍ୱାସ ମଧ୍ୟରେ ଛଟପଟ ହେଉଛି; ବାଧ୍ୟ ହୋଇ ମାଳିକା, ଭଜନ, ମଙ୍ଗଳା ଆଦିଙ୍କୁ ସ୍ୱୀକାର କରୁଛି; କିନ୍ତୁ ତା ଅନ୍ତର ପୂର୍ଣ୍ଣମାତ୍ରାରେ ଏସବୁକୁ ଗ୍ରହଣ କରିପାରୁନାହିଁ । ଧର୍ମ ଓ ସଂସ୍କୃତିର ଗଭୀର ମୂଲ୍ୟବୋଧକୁ ହରାଇ ଆଧୁନିକ ମଣିଷ ବାହ୍ୟାଚାରରେ ମାତିଛି ମାତ୍ର । ତେଣୁ କବିଙ୍କର କ୍ଷୋଭ ଯେ କିପରି ଓ କାହିଁକି ମଣିଷ ସେହି ମହାନ୍ ପରମ୍ପରାର ଖିଅକୁ ହରାଇ ବସିଲା ଓ ସ୍ରୋତରୁ ବିଚ୍ଛିନ୍ନ ହୋଇଗଲା । ଯେଉଁ ଜାତିର ସଂସ୍କୃତି ଚେତନାକୁ ନନ୍ଦିଘୋଷ, ତାଳଧ୍ୱଜ ଓ ଦର୍ପଦଳନ (ଜଗନ୍ନାଥଙ୍କ ଘୋଷଯାତ୍ରା) ଏତେ ମାତ୍ରାରେ ଉଦ୍‌ବୁଦ୍ଧ କରିଥିଲା, ସେ ରଥ ତ୍ରୟ କଣ ଆଜି ଅଧାବାଟରେ ଅଟକି ଯାଇଛନ୍ତି ? କେଉଁ ଭକ୍ତ (ଦାସିଆ, ମତ୍ତବଳରାମ, ସାଲବେଗ ପରି) ନା ନେତା ପାଇଁ ଆଜି ସେ ଘୋଷଯାତ୍ରା ଅଟକିଗଲା ? ନା କେଉଁ ଧନପତି ମଠର କୋଠାବାଡ଼ି ଓ ଧର୍ମଶାଳା ତିଆରି କରିଦେଇ ଧର୍ମ ସଂସ୍କୃତିର ଧ୍ୱଜା ଉଡ଼ାଉଥିବାରୁ ରଥର ଠାକୁର ମାନେ ତା ପାଇଁ ଅଟକି ରହିଲେ ? ଏ ସବୁ ଧର୍ମ ଓ ସଂସ୍କୃତିର ଗ୍ଲାନି ନୁହେଁ କି ? ସେଇଥିପାଇଁ କଣ କୋଣାର୍କ ମନ୍ଦିର ଭୁଷୁଡ଼ି ପଡ଼ିଛି ? କାବ୍ୟ ନାୟକ ସମୁଦ୍ରର ଅକାତକାତ ଜଳରାଶି ମଧ୍ୟରେ ବୁଡ଼ି ଯାଉଥିବା ଅସହାୟ ଲୋକ ପରି ନିଜକୁ ଅନୁଭବ କରନ୍ତି । ପ୍ରଚଣ୍ଡ ବତାସ ମାଡ଼ରେ ସତେ ଯେପରି ନୀଳଚକ୍ର ଓ ପତାକା ଉପାଡ଼ି ହୋଇ ପଡୁଛି । ଏକ ଅଶୁଭ ସଂକେତ ଚାରିଆଡ଼େ ଦେଖିପାରୁଛି କାବ୍ୟ ନାୟକ । ଜାହାଜମାନଙ୍କ ଅବସ୍ଥା ବିପର୍ଯ୍ୟସ୍ତ । ଦୂର ଦ୍ୱୀପର ବୋଇତ ଆଜି ବାଣିଜ୍ୟ କରି ଓଡ଼ିଶାକୁ ଗୌରବାନ୍ୱିତ କରୁନାହିଁ । ସବୁ କଣ ଜଳମଗ୍ନ ହୋଇଗଲେ ? ପ୍ରତାପରୁଦ୍ର ଦେବଙ୍କ ଠାରୁ ଓଡ଼ିଶାର ଯେଉଁ ଦୁର୍ଯୋଗ ଆରମ୍ଭ ହୋଇଥିଲା ପ୍ରାୟ ତିନିଶହ ପଚାଶ ବର୍ଷ ଧରି ସେହି ଦୁର୍ଯୋଗ ଭିତରେ ଓଡ଼ିଶା ଛିନ୍ନ ଭିନ୍ନ ହୋଇ ଯାଇଛି । ଢେଉମାଡ଼ରେ ଓଡ଼ିଶାର ସମସ୍ତ ବିଭବ ଅବଲୁପ୍ତ ହୋଇଯାଇଛି । ଏହାକୁ ହିଁ କବି 'ଅନ୍ଧକାର' ଭାବେ ପରିକଳ୍ପନା କରିଛନ୍ତି । ସେହି ସମୟ ସମୁଦ୍ର ଭିତରେ ବିଶ୍ୱର ବିପୁଳ ବିସ୍ମୟ କୋଣାର୍କର

ସ୍ଥାପତ୍ୟ ଭାଙ୍ଗି ପଡ଼ିଛି । ଜାହାଜ ସବୁ ଜଳମଗ୍ନ ହୋଇଛି। ଆଜି ହୁଏତ ଐତିହାସିକ ଓ କବି ମାନେ ସେହି ଦୁଃସମୟର ଅନ୍ଧାର ଭିତରେ ଉଜ୍ଜଳ ସମୟକୁ ସନ୍ଧାନ କରି ଲାଗିଛନ୍ତି । କୋଣାର୍କ ଚୂଳ. ଚୁମ୍ବକ, ମହାଦୀପ ସେହି ଐଶ୍ୱର୍ଯ୍ୟ ବିମଣ୍ଡିତ ସମୟର ପ୍ରତୀକ । ଭଙ୍ଗାନାହା, ଛିଣ୍ଡା ପାଲ, ହାହାକାର, ଆର୍ତନାଦ ଭିତରେ ଯୋଗସୂତ୍ରର ସନ୍ଧାନ ଚାଲିଛି । ସେହି ପ୍ରଳୟ ଘେରା ଅନ୍ଧାର ଭିତରେ ଉତ୍କଳର ଅବକ୍ଷୟ ବାରି ହୋଇ ପଡୁଛି । କବି ଦୁଃସ୍ୱପ୍ନ ଓ ଆଶଂକାରେ ମ୍ରିୟମାଣ ହୋଇ ଭାବୁଛନ୍ତି ଓ ଦେଖୁଛନ୍ତି ଏକ ଭାଙ୍ଗିଯାଉଥିବା ଶ୍ରୀ ମନ୍ଦିରର ଦୃଶ୍ୟ । ତା ଭିତରେ ଜଗନ୍ନାଥ ଙ୍କି ଅସହାୟ, ଅକ୍ଷମ ଓ ମ୍ରିୟମାଣ । କବିର ଅବଚେତନରେ ଏପରି ଆଶଙ୍କା ସ୍ୱାଭାବିକ୍ ମଧ୍ୟ ।

‘ଏ କି ସ୍ୱର ଏ କି ନାଦ
ଭାଙ୍ଗିଯାଏ ମେଘନାଦ/ଖୋଲିଯାଏ ସର୍ପବନ୍ଧ
ଜୟ ବିଜୟର ଦ୍ୱାର
ଯେ ଦେଖୁଛି ତ୍ରସ୍ତ ଓ ବିଲୀନ
ତୁମ ଦୁଇ ଚକା ଛାତି/ ଚକା ଚକା ଆଖି. ତାର
ତୁମେ ଓ ମୁଁ କଣ ସେହିଦିନୁ ଅଦ୍ୟାପି ବିଚ୍ଛିନ୍ନ ?’

ପ୍ରେମଠାରୁ ବିଚ୍ଛିନ୍ନ ହୋଇ ପରମାତ୍ମାଠାରୁ ବିଚ୍ଛିନ୍ନ ହେବାର ଚିରନ୍ତନ ଦୁଃଖ ଏଠି କବି ମନରେ ଯେଉଁ ଝଡ଼ ତୋଳିଛି, ତାହା ବି ଏକାକାର ବହିର୍ଜଗତରେ । ଏଠାରେ କବିତାର ମୂଳ ଚେତନା ବ୍ୟକ୍ତିଗତ ବିରହ ବ୍ୟଥା ସହିତ ଇତିହାସର ଦାରୁଣ ବାସ୍ତବତା ସମନ୍ୱିତ ହୋଇ ଏକ ଅନ୍ତହୀନ ଅନ୍ଧାର ଭିତରକୁ ଠେଲି ଦେଇଛି କବିଙ୍କୁ । ଅନ୍ତର୍ଜଗତ ସହିତ ବହିର୍ଜଗତର ସଙ୍ଘାତ ଓ ସମନ୍ୱୟରୁ କବିତା ଏକ ନିରାମୟ ଆଧ୍ୟାତ୍ମିକ ସ୍ଥିତି ପ୍ରତି କ୍ରମଶଃ ଉନ୍ମୁଖ ହେଉଛି ଚରମ ବ୍ୟାକୁଳତାରେ ନିଷ୍ପାପର ସ୍ୱରସଞ୍ଚାର କରି । ତେବେ ବ୍ୟକ୍ତିଗତ ପ୍ରେମଚେତନା ଓ ଆଧିଭୌତିକ ଚେତନା ଅପେକ୍ଷା ଏପରି ଆଶଂକା ଓ ଦୁର୍ଭାବନା ସଂସ୍କୃତିର ବିପର୍ଯ୍ୟୟକୁ ହିଁ ଅଧିକ ସାକାର କରିଛି । କିନ୍ତୁ ଏହା ପରଠୁ ଏକ ରହସ୍ୟମୟ ଆଧିଭୌତିକ ସ୍ତରକୁ କବିତାର ଉତ୍ତରଣ ଘଟିଚାଲିଛି ଐତିହ୍ୟର ବିପର୍ଯ୍ୟସ୍ତ ଭୂମିକା ଉପରେ ।

ଏହି ଦୀର୍ଘ କବିତାର ଶେଷ କେତୋଟି ପଙ୍‌କ୍ତିରେ କବି ଚକୁଳିଆ ପଣ୍ଡା ବୋଲୁଥିବା ଗୀତକୁ ଉଦ୍ଧାର କରି ନିଜକୁ ଭିକ୍ଷୁ ବା ଯୋଗୀର ବ୍ୟକ୍ତିତ୍ୱରେ ରୂପାନ୍ତରିତ କରିଛନ୍ତି । କାବ୍ୟ ନାୟକ ସମୟ ରୂପକ ସମୁଦ୍ର ପାର ହୋଇ ମୃତ୍ୟୁ ସିନ୍ଧୁଙ୍କୁ ଭେଟିବା ପୂର୍ବରୁ ଭଗବାନଙ୍କ ପାଖରେ ନିଜସ୍ୱ ଯାଚ୍ଞା ପ୍ରକାଶ କରିଛନ୍ତି ।

'ଏ ସମୁଦ୍ର ପାର ହେବା ଇଚ୍ଛା ମୋର
ବହୁଦିନୁ ଭିକ୍ଷାବୃତ୍ତି
ଦାନ ଦିଆଯିବ ଓ ନଦିଆ ନକରିବ
କେଉଁଠି ସେ ସାଧବାଣୀ ଘର
ବାଟୋଇ ମୁଁ ସିଧା ସେ ରାସ୍ତାର
ଯେତେ, ସବୁ ପ୍ରହେଳିକା ଜନ୍ମ ଓ ମୃତ୍ୟୁର'

ଏହି ସାଧବାଣୀ ହିଁ ଗହନ ଅର୍ଥରେ ମୃତ୍ୟୁର ପ୍ରତୀକ । ଜନ୍ମମୃତ୍ୟୁର ସମସ୍ତ ପ୍ରହେଳିକାକୁ ଭେଦ କରି ବାଟୋଇଟିଏ ପରି ସେ ସଳଖ ରାସ୍ତାରେ ଯାଇ ଅନନ୍ତ ମୃତ୍ୟୁକୁ ଭେଟିବ । ଭଗବାନଙ୍କ ପାଖରେ ଏଇ ଦୁସ୍ତର ସମୁଦ୍ର ପାର ହେବାର ଯାଚ୍ଞା ହିଁ ଆଜି ତାଙ୍କର ଏକମାତ୍ର ଭିକ୍ଷା । ସମୟ ହିଁ ସେ ଅନ୍ଧାରକୁ ଭେଦି ଆଲୋକ ଆଡ଼କୁ ନେଇଯିବ । ସମସ୍ତ ଅଜ୍ଞାନତାର କୌତୁହଳ ଓ ରହସ୍ୟକୁ ଧ୍ୱଂସ କରିଦେବ ଏହି ଆଲୋକର ରଶ୍ମି । କିନ୍ତୁ ପ୍ରଜ୍ଞା ପ୍ରାପ୍ତି ପରେ ଅଜ୍ଞାନତାର ସେ ନିରୀହ ଅନ୍ଧକାରର ବ୍ୟାପ୍ତି ବୋଧ ଆଉ ତାଙ୍କୁ ମିଳିବ କି ? କେଉଁ ଯୁଗ ଆଗ୍ନେୟ ବୀର୍ଯ୍ୟର କ୍ଷରିତ ରଶ୍ମିର ମାୟାରେ ସେ ପୁଣି ଆବିର୍ଭୂତ ହେବେ ଜନ୍ମ ମୃତ୍ୟୁର ପ୍ରହେଳିକାମୟ ପଥରେ । ମାୟା ଚକ୍ରରେ ଘୂରି ବୁଲିବେ । ମୁକ୍ତି ପାଇବେ ନାହିଁ । ସେଥିପାଇଁ ଯୋଗୀର ବ୍ୟକ୍ତିତ୍ୱ ନେଇ ସେ ତାଳପତ୍ର ଛତାଟିକୁ ପାହାଡ଼ର ଜନନେନ୍ଦ୍ରିୟକୁ ଘୋପାଡ଼ି ରଶ୍ମିର ମାୟା ଦ୍ୱାରକୁ ବନ୍ଦ କରିଦେବାକୁ ଚାହାନ୍ତି । ପାହାଡ଼ର ଶିଖରକୁ ଉଠି ସମଗ୍ର ପାର୍ବତ୍ୟ ଉପତ୍ୟକାକୁ ସେ ଏକ ସୃଜନ ସଂଭବା ନାରୀ ରୂପେ ଚିତ୍ରଣ କରିଛନ୍ତି । ତାର ନଗ୍ନ ଶରୀରର ଅବତାରଣା କରି ସଦ୍ୟ ପ୍ରସୂତ ଏକ ନବଜାତ ଶିଶୁ ଭଳି କାବ୍ୟନାୟକ ଦେଖୁଛନ୍ତି ଏକ ଅସ୍ତାୟମାନ ସୂର୍ଯ୍ୟକୁ । ଏହି ବୈପରୀତ୍ୟବୋଧ (Paradox)କୁ ନେଇ କବି ଜୀବନର ଜଟିଳ ଚିତ୍ରକୁ ଉପସ୍ଥାପନା କରିଛନ୍ତି । ସେ ଏକ ସାୟଂକାଳ । ଆଲୁଅ ଚାଲି ଗଲାଣି । ଅନ୍ଧାର ଆସିବାକୁ ବାକି ଅଛି । ଅସ୍ତ ଭିତରେ ଅଭ୍ୟୁଦୟ ଓ ଉଦୟର ପରିକଳ୍ପନାରେ ଅସ୍ତାୟମାନ ଅବକ୍ଷୟକୁ ସୂଚାଇଦେବା ମାତ୍ରେ ସେ ଏକ ମହାଅନ୍ଧକାରକୁ ସ୍ୱାଗତ କରିଛନ୍ତି । ଏ ଅନ୍ଧକାରର ଅର୍ଥ ସେ ଖୋଜିଥିଲେ– ସମୁଦ୍ର ଭିତରେ ମହାକାଳର ପୃଷ୍ଠା ଖୋଲି, ଏଇଥି ପାଇଁ ଯେ, କାଳେ ଜୀବ ପରମ ଭିତରେ ନଷ୍ଟ ଯୋଗସୂତ୍ରଟି ତାଙ୍କୁ ମିଳି ଯାଇପାରେ ଅନ୍ଧାର ଭିତରେ :–

ତୁମର ଆଉ ମୋ ଭିତରେ ଆଜି ତେଣୁ
ଖୋଜା ଚାଲେ ଯୋଗସୂତ୍ର
ସ୍ତୋତ୍ର ଆଉ ମାଳଶ୍ରୀ ଛାନ୍ଦର

ଏ ସମୁଦ୍ର ଅଭିଧାନ ଶୀତ ଝଡ଼ କୁହୁଡ଼ିର
ଖୋଜା ଯାଇପାରେ ଏଠି ଅନ୍ଧାରର ଅର୍ଥ କଣ

ସେହି ଅନ୍ଧାର ତାଙ୍କ ପାଇଁ ଅର୍ଥମୟ ଏଇଥିପାଇଁ ଯେ ତାରି ଭିତରେ ଯୁଗଯୁଗର ସମସ୍ତ ସତ୍ୟ ଓ ଆଲୋକ ସଂରକ୍ଷିତ ରହିଛି । ତା ଭିତରେ ନିମଜ୍ଜିତ ହୋଇ ସେ ଆଉ ଏକ ଆଲୋକିତ ସାମ୍ରାଜ୍ୟର ସନ୍ଧାନ କରିବା ସମ୍ଭବ ହେବ । ସେ ଏକ ନୂତନ ସାମ୍ରାଜ୍ୟ । ମୁକ୍ତିର ସାମ୍ରାଜ୍ୟ । ସେ ଅନ୍ଧାର ମୃତ୍ୟୁ ଶୀତଳତାରେ ଅଚଳ ନୁହେଁ, ଜୀବନର ଉଷ୍ମତାରେ ଉଚ୍ଛଳ । ତାରାର ସ୍ତନରୁ ଝରୁଥିବା ଅମୃତ ଏ ମାଟିରେ ଅଙ୍ଗାର ପାଲଟିଛି । ମାତ୍ର ଅମୃତ ସନ୍ତାନର ସେହି ଅସ୍ତିତ୍ୱ ଭିତରେ ଅଛି ଜ୍ୱଳନ । ସେ ଅନ୍ଧାର ସୁଦୂର ନକ୍ଷତ୍ରର ଦୀପ୍ତିରେ ସଂଦୀପିତ ଏହିପରି–"ମୁଁ ଏକ ଉତପ୍ତ ଅନ୍ଧାର/ ମୁଁ ଝରିଛି ଟୋପା ଟୋପା ସ୍ତନରୁ ତାରାର / ଅନ୍ଧାର ହୋଇଛି ହୃତ ସମ୍ପର୍କର ମଧୁକୋଷ / ତେଣୁ ଅର୍ଥମୟ ଯାହା ଅଚେତନର/ଅନ୍ଧାରକୁ କରିଛି ପ୍ରକାଶମୟ ।"

ଦୀର୍ଘ କବିତାରେ ଭାବ ସଂହତି ରକ୍ଷା କରିବା ଏକ ଆୟାସସାଧ୍ୟ ବ୍ୟାପାର । ଚେତନାର ସଂଯୋଗୀକରଣ ପାଇଁ ରୂପକ ଓ ଚିତ୍ରକଳ୍ପର ଆଶ୍ରୟ ନେବାକୁ କବି ବାଧ୍ୟ ହୁଏ । ବିଭିନ୍ନ ବିଭକ୍ତ ଭାବକୁ ଯୋଡ଼ିବା ପାଇଁ ମିଥ୍ ଓ ଲୋକ ଉପାଦାନ ପ୍ରୟୋଗ ମଧ୍ୟ କରାଯାଏ ।

ଶ୍ରୀ ମିଶ୍ର 'କାଳପୁରୁଷ' ପରି ସମୟର ଅବକ୍ଷୟକୁ ସୂଚେଇ ଦେବାକୁ ବିଭିନ୍ନ ଚରିତ୍ରମାନଙ୍କୁ ସଂଯୋଜିତ ନ କରି ନିଜସ୍ୱ ଭଙ୍ଗୀରେ କେତୋଟି ରୂପକ ମଧ୍ୟରେ ସମୟର ବିପର୍ଯ୍ୟୟ ଓ ଅବକ୍ଷୟକୁ ହିଁ ସନ୍ଧାନ କରିଛନ୍ତି । କବି କିନ୍ତୁ ଅମର ପଥର ଯାତ୍ରୀ ଓ ଅଖଣ୍ଡ ଦୀପ ଶିଖାରେ ଜଳିବାକୁ ନିଜକୁ ଆହୁତି ଦେବାରେ ବିଶ୍ୱାସୀ । ଏହା ହି ତାଙ୍କ ଐତିହ୍ୟବୋଧ । ଏହି ଭୂୟୋଦର୍ଶନ ଚିରନ୍ତନ ସତ୍ୟର ରହସ୍ୟମୟ ପ୍ରକାଶ ତାଙ୍କ କବିତାରେ ସଦା ତତ୍ପର । ମାତ୍ର ୨୩ ବର୍ଷ ବୟସରେ ରଚିତ ଏହି ଦୀର୍ଘ କବିତା 'ଶଙ୍ଖନାଭି'ରେ ତାଙ୍କ କାବ୍ୟଦୃଷ୍ଟିର ଭାବବୀଜଟି ପ୍ରୋଦ୍‌ଥିତ ହୋଇ ତା'ର ଶାଖା ପ୍ରଶାଖା ପଲ୍ଲବ ପୁଷ୍ପ କିପରି କ୍ରମଶଃ ବିକଶିତ ହୋଇଛି ତାହା ଅନୁଧ୍ୟାନର ବିଷୟ ।

* ଶୈଳଶ୍ରୀ ବିହାର
ଭୁବନେଶ୍ୱର



# ମହାନାରୀ

ଶୁଣିଲି ମାଣିକ ଓ ମୁକ୍ତା ବୁଢ଼ୀ ହେଲାପରେ
ବାସନ ମାଜୁଛନ୍ତି ସର୍ବୋଦୟ ନଗରରେ
          ଅଣ ଓଡ଼ିଆଙ୍କ ଘରେ
ଚାଂଦ ଓ କୋଇଲି ଖସିଗଲେଣି
କଳ୍ପବୃକ୍ଷର ଗହଳ ଡାଳରୁ
ବାଲିରେ ପୋତିହୋଇ ପଡ଼ିଥିବା ନୂପୁର
ବିଭ୍ରମତାର ନୀରବତାରୁ ଉଠି
          ପଥର ହେଲାଣି ପଣ ରକ୍ଷାରେ
ମୂରଲି ରଂଧ୍ରରେ ମରୁଭୂଇଁର
ସନ ସନ ପବନ ପଶି
ଡାକୁଛି ପଞ୍ଚମାକାରର ପଞ୍ଚକନ୍ୟାଙ୍କୁ
          ମଂଗଳ ବୋଲିବାକୁ
          ଜଳି ଉଠିବାକୁ ଉଜ୍ଜଳ ପ୍ରଦୀପ ଭଳି
          ସୁଦୂର ଦ୍ୱୀପରେ

ଏଠି ଅଂଧାର
ପେଡ଼ିରେ ବଉଳ ପାଟ
ନା ସାଲୁବାଲୁ ଅସରପା
କାହା ଆଂଗୁଠି ନ ଥିବା ଘଟିଦଂଧା କଟୋଟି କାଠରେ
          କେଂଚି ହେଉଥାଏ କାଖତଳ

କୁତୁ କୁତୁ ଲାଗେ ସ୍ୱପ୍ନରେ ତା ଗୀତ ବୋଲିବାକୁ
ଉଠ୍ ମତେ କୋଳେଇ ନେ
କାଖେଇ ନେ
ତୋର ନିଃସଂତାନ କୋଳରେ ମୁଁ ଖେଳିବି
ଏଇ ଦେଖ, ଗର୍ଭଗୃହର ଦେହଳି ଡେଇଁ ମୁଁ ଠିଆ ହେଲିଣି ଆଁ କରି
ପରଶମଣି ଖୁଆଇଦେ ମତେ
ସବୁ ସରାଗର ସରଳବଣୀ
ହୋଇପାର ତମେ ଅସୂର୍ଯ୍ୟପଶ୍ୟା
ଅକ୍ଷତ ଯୋନି
ତମେ ମୋର ପାଟବଂଶୀ ରାଣୀ
ଷଡ଼ରସ ରାଂଧୁଥିବା ଅଂଗଲଗା ଦାସୀ ଓ ଘରଣୀ

ତମେ ମୋ ମାନସୀ ରାଧା
ଶ୍ରାବଣର ଝୁଲଣରେ ଝୁଲୁଥିବା ମୋ ରାସ ରଂଗିଣୀ
ଚଂଦନ ଚାପରେ ମୋର ଚଂଦ୍ରାବଳୀ
ଗୋପୀ ଗୋପାଳୁଣୀ

ମା ମୋର ମୁହଁରେ ତୋ ନିଆଁଦେବି
ଅବଢ଼ା ତୋରାଣି ଦେବି
ଶୁଖିଲା ତୁଳସୀ ଦେଇ କୋକେଇରେ
ପୋଡ଼ାଦେହୁ ଦୁର୍ଗଂଧ ହରିବି ।

ଆଉ କି ସଂପର୍କ ଚାହଁ ମାହାରୀ ଲୋ
ଆଉ କି ସୁଖ ଚାହୁ
ମୋ ହାତ ଧରିଲା ପରେ

ଆଉ କେଉଁ ଅଧିକାର ଚାହୁଁ
ସବୁ ନାରୀ ପରି ତୁ ନୁହେଁ ଲୋ ମାହାରୀ
ତୁ ଯେ ମହାନାରୀ
ଖରକି ଖରକି ଯାଉ ଏ ମନର ପାଟ ଅଗଣାକୁ
କୁଢ଼ କୁଢ଼ ଝରାପତ୍ର କୋଇଲି ବୈକୁଣ୍ଠର
ଯାହା ପୋତି ଦେଇପାରେ ଏଠି
ଛୋଟ ବଡ଼ ଦେଉଳ ସବୁକୁ
ଅପୂର୍ବ ସାମ୍ରାଜ୍ଞୀ ମୋର
ବିଡ଼ିଆପାନଟି ଧରି ଠିଆ ହୋଇ
ରତ୍ନପଲଙ୍କ ଦାଢ଼ରେ
ଅନ୍ୟହାତେ ଦୀପ ତେଜିଦେଉ
ପହଡ଼ ସରିଲାପରେ ତୁ ତୋ ଘରକୁ ଫେରୁ
ପାଦ ଟଳମଳ ତୋର ଗୋଖରା କଂଟାରେ
ନରକ ଆବର୍ଜନା ଗଳିର ଅଂଧାରେ
ପାଳିତା କନ୍ୟାଟି ତୋର ହାତ ଧରି ଧରି ନିଏ
କାଠସଖୀ ଗଲାପରି ଯାଉଥାଉ
ଦୀପଟିଏ ଧରି

ଆଗୋ ମହାନାରୀ
ଅନ୍ୟଦିନେ ପଶୁର ବଳିରକ୍ତ
ପୋଛିଦେଉ ପଣତରେ
ଅଧରରୁ କାର
ଅନ୍ୟନାରୀ ନ ଥାଂତି ଯେଉଁଠି
ତୁ ଏକା ଦିବ୍ୟନାରୀ ସବୁ ଦେଖୁ
ନିର୍ବାକ୍ ଆଖିରେ

ଯେଉଁଠି ପୁରୁଷ ମାନେ ଧାଉଁ ଥାଂତି ଝାଳନାଳ
ବଟଫଳ ଭଳି ଆଖି
ଅଧରାତି ତିନିପୂଜା ବେଳେ
ଘଂଟି ଶୁଭେ ଗୋପନରୁ ଗୋପନରେ
ଗଂଭୀରରୁ ଗଂଭୀରା ଭିତରେ
ଉଚ୍ଚାରଣ ଥରିଥରି ଭାସିଯାଏ ନିଶାର୍ଦ୍ଧରେ
ଢେଉର ସହସ୍ର ଜିଭ ଭାଂଗଖିଆ ସମୁଦ୍ରର
ଶୁଖି ଶୁଖି ଭିତରକୁ ପଶିଗଲା ବେଳେ
ଏଇ ସଂଧି ମୁହୂର୍ତ୍ତରେ
ମାହାରୀ ତୁ ଅଷ୍ଟଧାତୁ ବେଂଟଲଗା
ଖଡ୍‌ଗ ହସ୍ତେ ଠିଆ ହେଉ
ଆଉ କେଉଁ ନୃତ୍ୟ ପାଇଁ
ଉଦ୍ୟତ ପାଦ ତୋର
ବାହୁମେଲି ବସିଥିବା ଲଂପଟ ଆଗରେ ।



# ବିଧାତାଠୁ ଅକୃପଣ

## ('ମହାନାରୀ' କବିତାର ପ୍ରାୟୋଗିକ ଆଲୋଚନା)

*ପ୍ରତିଭା ଶତପଥୀ*

ଅଗ୍ରଜ କବିଙ୍କ କୃତି ଉପରେ ଲେଖିବାର ଧୃଷ୍ଟତା ମୋର ଅନେକ ଦିନ ଠାରୁ ରହିଛି । ପ୍ରଥମ କବି ସୀତାକାନ୍ତ, ନୃସିଂହ ରଥ, ନିତ୍ୟାନନ୍ଦ ନାୟକ, ବିଜୟିନୀ ଦାସଙ୍କ କୃତିକୁ ସମୀକ୍ଷା କରିବା ଠାରୁ ଆରମ୍ଭ କରି କବି ରମାକାନ୍ତ, ଜୟନ୍ତ ଓ ଜଗନ୍ନାଥ ପ୍ରସାଦ ଦାସଙ୍କ ପର୍ଯ୍ୟନ୍ତ ସକଳ କବିକୃତିକୁ ବିଶ୍ଳେଷଣ କରି ମୋର ଆବେଗାତ୍ମକ ଓ ସମୀକ୍ଷାତ୍ମକ ଦୃଷ୍ଟିକୁ ଲିପିବଦ୍ଧ କରିଛି । ଆହୁରି ବି ଇଚ୍ଛା ଅଛି, କେତେକ ସମସାମୟିକ ତଥା ଅଗ୍ରଜ ପ୍ରିୟକବିଙ୍କ ରଚନାକୁ ସମୀକ୍ଷା କରିବି, ମୋତେ କ'ଣ ଭଲ ଲାଗିଛି, ନ ଲାଗିଛି, ତାହା ଉପସ୍ଥାପନ କରିବି । ତେବେ, ଖୁବ୍ ଓଜନଦାର୍, ଆଲଂକାରିକ ବିଶ୍ଳେଷଣ-ଦୃଷ୍ଟିକୁ ମୁଁ କବିମାନଙ୍କଠାରେ ଲଗାଇ ନାହିଁ । ମୁଁ ଏକଥା ବି ଜାଣେ ଯେ, କବିତା ନିଜେ ନିଜର ମୂଲ୍ୟ ପ୍ରତିଷ୍ଠା କରିବ । ମାତ୍ର ବିଭିନ୍ନ ଅନୁଷ୍ଠାନ, ପତ୍ର ପତ୍ରିକାଙ୍କ ଅନୁରୋଧ ଓ ଆଗ୍ରହକୁ ମାନିନେଇ ମୁଁ କବିତାବିଶ୍ଳେଷଣରେ ମନଦେଇଛି । ନଚେତ୍ ଖାଲି ଅଧ୍ୟାପିକା ସୁଲଭ ଭଙ୍ଗୀରେ କବିତା ବ୍ୟବଚ୍ଛେଦ କରିବାକୁ ମୁଁ ପସନ୍ଦ କରେ ନାହିଁ । ବର୍ଷ ବର୍ଷ ଧରି କବିତା ପଢ଼ିବା ଓ ଲେଖିବା ଭିତରେ ମୋ ଆଖିକୁ ଯାହା ଦିଶିଯାଏ, ମନକୁ ଯାହା ଘେନିନିଏ, ତା ଭିତରେ ଆବେଗାତ୍ମକ ଭଲ ପାଇବା ଓ ସମୀକ୍ଷାତ୍ମକ ପଦ୍ଧତି ମିଶି ରହିଛି ନିଶ୍ଚୟ । ତେବେ ପ୍ରଥମରୁ କବିକୃତିକୁ ସମ୍ମାନ କରି, ଶ୍ରଦ୍ଧାକରି ହିଁ ତାହାକୁ ବ୍ୟବଛେଦ କରିବା ନିମିତ୍ତ ମୁଁ, ପ୍ରୟାସ କରିଥାଏ ।

ସମ୍ବାଦ ପତ୍ର ବିଜ୍ଞାପିତ କରିଛି ଓ ନିଜେ ଭାରତର ମାନବ ସମ୍ବଳ ବିକାଶ ମନ୍ତ୍ରୀ ଜଣାଇଛନ୍ତି ୩/୨୦୦୧ ବର୍ଷ (ନାରୀ ସମର୍ଥୀକରଣ ସମ୍ବତ୍ସର Women empowerment year) । ସେଥିପାଇଁ ନାରୀଙ୍କୁ ନେଇ କିଛି ଲେଖାଯାଉ ବୋଲି ମୁଁ ସ୍ଥିର କଲି । ମୂଳତଃ 'ମହାନାରୀ' କବିତାଟି ମୋତେ ଭଲ ଲାଗିଥିଲା । 'ଶଙ୍ଖନାଭି' ସଙ୍କଳନ ପୂର୍ବରୁ ପଢ଼ିଥିଲି, ମାତ୍ର ଏଇ 'ମହାନାରୀ' କବିତାଟି ୨ୟ ମୁଦ୍ରଣରେ ସଂଯୋଜିତ ନୂଆ କବିତା । ଏହି ଶୀର୍ଷକରେ ଯୁଗପତ୍ ଉଚ୍ଚାରିତ ବ୍ୟଙ୍ଗ ଓ କାରୁଣ୍ୟ ମୋତେ ଆକୃଷ୍ଟ କଲା ।

କବି ହରିହରଙ୍କ ଏକ ଦୀର୍ଘ କବିତା 'ଶଙ୍ଖନାଭି'ର ଆବୃତ୍ତି ମୁଁ ପ୍ରଥମେ ଶୁଣେ ୧୯୬୪ ମସିହା ଯୁବଲେଖକ ସମ୍ମିଳନୀରେ । ପରେ ପରେ ତାଙ୍କ କବିତା ପଢ଼ିଛି । ସାହିତ୍ୟ-କବିତା-ସମୀକ୍ଷା କାଳରେ ମଧ୍ୟ ପଢ଼ିବାକୁ ହୋଇଛି । "ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ" ପୁସ୍ତକ ରଚନା କାଳରେ ଗରୀୟାନ ଓ ବଳିୟାନ୍ ପ୍ରାୟ ସମସ୍ତ କବିଙ୍କ କବିତା ମୁଁ ତନ୍ନ ତନ୍ନ ପଢ଼ିଛି । ଦାୟବି ପଢ଼ିଛି ସେଥିପାଇଁ । 'ମହାନାରୀ' ଏବେ ପ୍ରଥମ ଥର ପାଇଁ ପଢ଼ିଲି । କେତେକ ଫିଚର ପତ୍ରିକାରେ ମାହାରୀମାନଙ୍କ ନୃତ୍ୟ ଓ ଏହି ପରିବର୍ତ୍ତିତ ପରିସ୍ଥିତିରେ ସେମାନଙ୍କ ଜୀବନଯାତ୍ରାର ବୃତ୍ତାନ୍ତ ବି ପଢ଼ିଥିଲି । ଲାଭଖୋର ସମାଜ ବ୍ୟବସ୍ଥା, ଅବକ୍ଷୟୀ, ଧର୍ମଚେତନା ଓ ମାନବିକତାର, ସଙ୍କଟ ମଝିରେ ମାହାରୀ ଯେ 'ମହାନାରୀ' ପାଲଟି କବିଙ୍କ ଲେଖନୀକୁ ସ୍ପର୍ଶ କରିଛି । ଏହା ବାସ୍ତବିକ ତାତ୍ପର୍ଯ୍ୟପୂର୍ଣ୍ଣ । କବି ହରିହର ଓଡ଼ିଆ ଜାତିର ସଂସ୍କାର, ଧର୍ମ ଓ ଆଧ୍ୟାତ୍ମଚେତନା ପ୍ରତି ସଚେତନ । ପ୍ରାରମ୍ଭିକ କାବ୍ୟ ଜୀବନରୁ ପୁରୀ, ଜଗନ୍ନାଥ ମହାପ୍ରଭୁ ଓ ଓଡ଼ିଶାର ଐତିହ୍ୟ ତାଙ୍କର କାବ୍ୟର ପୃଷ୍ଠ ଭୂମି ରୂପେ ସ୍ୱୀକୃତ । ଜଗନ୍ନାଥ ଚେତନା, ପରଂପରା ଓ ପୁରୋଦୃଷ୍ଟିକୁ ନେଇ ତାଙ୍କ କାବ୍ୟ ଜଗତ ସୁସଙ୍ଗଠିତ । ବହୁ କବିତା ସଙ୍କଳନର ରଚୟିତା, 'ଅନାମ'ର ଅନ୍ୟତମ ସ୍ରଷ୍ଟା ରୂପେ ଚିହ୍ନିତ ଅଗ୍ରଜ କବି ହରିହରଙ୍କ ଗୋଟିଏ ମାତ୍ର କବିତା ପ୍ରତି ମୋର କାବ୍ୟିକ ପ୍ରତିକ୍ରିୟା ପ୍ରକାଶ କରିବାକୁ ମୁଁ ଏଠାରେ ପ୍ରସ୍ତୁତ ହୋଇଛି ।

ଶଶି, ପରଶମଣି, ମାଣିକ, ମୁକ୍ତା, ଚାନ୍ଦ ଓ କୋଇଲି – ଓଡ଼ିଆଣୀଙ୍କର ସୁନ୍ଦର ନାଆଁ ସବୁ (ଫିଚରରେ ପଢ଼ିଥିବା ଅନ୍ୟତମା ମାହାରୀ ହରିପ୍ରିୟାଙ୍କୁ ମୁଁ ଏକତ୍ର କରୁଛି) – ଗୀତ, ସୁର ଓ ଛନ୍ଦରେ ପଟୁତା ଲାଭ କରିଥିବା ଓଡ଼ିଆ ଝିଅସବୁ, ସେମାନେ ମାହାରୀ । ସେମାନେ ଅନୂଢ଼ା ରହିବେ, ଶ୍ରୀ ଜୀଉଙ୍କ ପହଡ଼ ପୂର୍ବରୁ ନାଚିବେ, ଗୀତଗାଇ ତାଙ୍କୁ ଶୁଆଇ ପକାଇବେ ଠାକୁରଙ୍କ ଅଙ୍ଗଲାଗି ବୋଲି ସେମାନେ ଭକ୍ତି ଓ ସମ୍ମାନର ହକ୍‌ଦାର । ହେଲେ ଯୁଗ ବଦଳିଛି, ଈଶ୍ୱରଙ୍କ ଠାରୁ ମଣିଷର ଆଖି ଫେରିଛି, ହାତ ଖସିଛି । ନିତ୍‌ସେଙ୍କ 'God is dead' ସମାଜରେ ଭାବାନ୍ତର ସୃଷ୍ଟି କରିଛି । ଏପରି କାଳରେ ମାହାରୀଙ୍କ ଖାତିର୍ କମିଛି, ହ୍ରାସ ପାଇଛି ସେମାନଙ୍କ ସାମାଜିକ ସମ୍ମାନ । ଦେବାର୍ପିତା ନାରୀମାନଙ୍କୁ କିଏ ଗୁରୁତ୍ୱ ଦେଉଛି ? ସେମାନଙ୍କର ଅଛି ସ୍ୱାମୀର ଜୋର୍‌ଦାର୍ ସାହାପକ୍ଷ, ନା ଅଛି ଅର୍ଥବଳ ? ଅଥଚ୍ ଯେଉଁ ସମାଜ ଦିନେ ଭକ୍ତି ସମ୍ମାନ କରୁଥିଲା, ତାହା ଆଜି ଅନୁପସ୍ଥିତ । ନିଃସହାୟା ନାରୀମାନଙ୍କ ମଧ୍ୟରେ ପରିଗଣିତା ମାହାରୀ, ଅବହେଳିତା, ଲାଂଛିତା । 'କୃଷ୍ଣ ଆଶ୍ରେ କରି, ସୁବିଦ୍ୟା ଆଚରି' ମଧ୍ୟ ତାର ଉତ୍ତମ ଗତି ନାହିଁ । ବୟସ ହେଲା, ମାହାରୀ ଭୂମିକା ତୁଲାଇବାର ସାମର୍ଥ୍ୟ ଗଲା, ସେ ଭୂମିକାର ଆବଶ୍ୟକତା ମଧ୍ୟ ଅନୁଭୂତ ହେଲା ନାହିଁ । ପୂଜାର୍ଚ୍ଚନା କାଳରେ । ମାହାରୀ ଗୋଷ୍ଠୀ ଦିଗହରା ହୋଇପଡ଼ିଲେ । କବି ତାଙ୍କୁ ହୁଏତ କରୁଣାବଶତଃ

ହେଉ ବା, ବ୍ୟଙ୍ଗ କରିବାକୁ ଯାଇ 'ମହାନାରୀ' ରୂପେ ଅଭିହିତ କରିଛନ୍ତି । 'ମହାନାରୀ' ଶବ୍ଦରୁ ଅପଭ୍ରଷ୍ଟ 'ମାହାରୀ' ହୋଇଥିବାରୁ କବି, ହୁଏତ ଏପରି ଏକ ବିଶିଷ୍ଟତା ପ୍ରଦାନ କରିଛନ୍ତି । 'ମହାନାରୀ'ର ମୂଳଅର୍ଥର ବିପରୀତ ଅର୍ଥକୁ ସୂଚିତ କରୁଛି । (ବର୍ତ୍ତମାନର 'ମାହାରୀ'ର ସ୍ଥିତି)

ନାରୀର ଦୈନନ୍ଦିନ କର୍ମ ଅଇଁଠା ବାସନ ମାଜିବା । ତାହା ଯଦି ନିଜ ଘରର ନ ହୁଏ, ତେବେ ନିଶ୍ଚୟ ଅସମ୍ମାନ ଜନକ । ଏହି ନିଉଛୁଣା କାମରେ ନିୟୋଜିତା ଆଜିର ମହାନାରୀ (ମାହାରୀ) । ତା' ଜୀବନର ବିଡ଼ମ୍ବନା ଦୟନୀୟ ଭାବରେ ସ୍ପଷ୍ଟ । ଶ୍ରୀମନ୍ଦିରରେ ନୃତ୍ୟ ଏବେ ଅପ୍ରାସଂଗିକ, ଭକ୍ତିମତ୍ତା, ଆଡ଼ମ୍ବରରେ, ବିଧିବିଧାନରେ ନିଷ୍ଠା ଅପେକ୍ଷା ଲୋକାଚାର ଅଧିକ । ନୃତ୍ୟ ଉପାସନାରେ କଳଙ୍କି ଲାଗିଗଲାଣି, ନୂପୁର ପୋତି ହୋଇ ପଡ଼ିଲାଣି ବାଲି ଭିତରେ । ମୁରଲୀ (ନୃତ୍ୟର ସଙ୍ଗତି ପାଇଁ ବାଦନ କରାଯାଉଥିବା) ରେ ଓଠର ସ୍ପର୍ଶ ନାହିଁ, ନାହିଁ ଝଙ୍କାର, ତାଳ । ମରୁଭୂମିର ସନସନ ପବନ ଡାକିଯାଉ ନାହିଁ ନର୍ତ୍ତକୀକୁ । ବରଂ ଇନ୍ଦ୍ରିୟ ବିକାରକୁ ପଞ୍ଚମାକାରକୁ (ମଦ୍ୟ, ମତ୍ସ୍ୟ, ମାଂସ, ମୈଥୁନ, ମୁଦ୍ରା) ପଞ୍ଚକନ୍ୟା ରୂପରେ ଆବାହନ କରୁଛି ବଂଶୀଧ୍ୱନି । ଶ୍ରୀ ଜୀଉଙ୍କ ବଧୂ ମାହାରୀର ବଉଳପାଟ ଅସରପା ସାଲୁବାଲୁ ପେଡ଼ି ଭିତରେ ହୁଏତ ପୋକକଟା ଅବସ୍ଥାରେ ଥିବ । କୈଶୋର କାଳରେ ଯେଉଁ ବିଶ୍ୱାସରେ ମାହାରୀ ନିଜର ଉତ୍ସର୍ଗିତ ଜୀବନକୁ ଅତିବାହିତ କରୁଥିଲା, ଆଜି ପରିବର୍ତ୍ତିତ ପଟ୍ଟଭୂମିରେ ସେ ଅନୁଭବ କରୁଛି ସେହି ବିଶ୍ୱାସ ଓ ଉତ୍ସର୍ଗ ପଣ ଅପାଂକ୍ତେୟ । ତଥାପି ଜଗନ୍ନାଥଙ୍କ ନିୟୋଗରେ ଆପଣାକୁ ନିୟୋଜିତ କରିଥିବା ମାହାରୀ କ'ଣ ସ୍ୱପ୍ନ ଦେଖେନା ? ଦେଖେନା, ଆଙ୍ଗୁଳିହୀନ ମଣିଷମାନଙ୍କ ସେହି କାଠ ହାତ ସାଉଁଳି ଆଣନ୍ତା ତା'ର କାଖତଳ ? ଅବଶ୍ୟ ଦେଖେ । କେବେ ନିଃସନ୍ତାନ ମାହାରୀର ସନ୍ତାନ ରୂପରେ ସେ ଆସନ୍ତି । କହନ୍ତି –

''ମାଆ ମୋର'', ତୋର କୋଳରେ ମୁଁ ଖେଳିବି, ମୋତେ ସର ଲବଣୀ ଖୁଆଇ ଦେ' ।

କେବେ ବା ଅଷ୍ଟପାଟବଂଶୀ ରାଣୀ'ଙ୍କ ଭିତରୁ ଜଣେ ବୋଲି ସେ ମାହାରୀକୁ କହନ୍ତି । ମହାମହିମ ମାହାର୍ଜା ସେ, ତାଂକୁ ସ୍ୱପ୍ନରେ ଦେଖେ ଅସ୍ୱର୍ଯ୍ୟଂପଶ୍ୟା ଅକ୍ଷତ ଯୋନି ମାହାରୀ । ସେ ପତ୍ନୀ, ସେ ପୁଣି ପରକୀୟା ପ୍ରେମିକା । ବାର୍ଦ୍ଧକ୍ୟରେ ସେ ପାଲଟି ଯାଏ ଜନନୀ । କବିଙ୍କ ଲେଖନୀରେ – 'ତମେ ମୋର ପାଟବଂଶୀ ରାଣୀ x x x ତମେ ମୋ ମାନସୀ ରାଧା ।'

କବି ଜଗନ୍ନାଥ ଓ କୃଷ୍ଣଙ୍କୁ ଏକ କରି ଦେଖନ୍ତି – ରୁକ୍ମିଣୀ ଓ ରାଧା ହେବାର ସ୍ୱପ୍ନରେ ଉଚ୍ଚାଟ ହୁଏ ମାହାରୀ । ସେ କେବଳ ରାସରଙ୍ଗିଣୀ ରାଧା ନୁହେଁ, ସେ ଗୋପିକା, ଚନ୍ଦ୍ରାବଳୀ, ପ୍ରେମପାଗଳୀ । ସ୍ୱପ୍ନର ପରିସର ଦିଗ୍‌ବିଦିଗ ବ୍ୟାପିଯାଏ । ଅସହାୟା ମାହାରୀର ମୃତ୍ୟୁ

କାଳରେ ଶ୍ମଶାନରେ ଠିଆ ହୁଅନ୍ତି ସ୍ୱୟଂ ମହାବାହୁ 'ମୁହଁରେ ଦେ ନିଆଁ ଦେବି/ ଅବଢ଼ାତୋରାଣି ଦେବି x x x ଆଉ କି ସମ୍ପର୍କ ଚାହୁଁ ମାହାରୀ ଲୋ...' ସ୍ୱପ୍ନ ଆଉ ସତ୍ୟର ବିଡ଼ମ୍ବନା ଭିତରେ ବଞ୍ଚୁଥିବା ମାହାରୀର ହୀନିମାନ ପଣକୁ କବି ପରଂପରା ଓ ନିଯୋଗର ମନ୍ତ୍ରପଢ଼ି ଧନ୍ୟ କରିବାକୁ ପ୍ରୟାସ କରନ୍ତି ।

ବାସ୍ତବ ଜୀବନରେ ଏତେ ସବୁ ଭୂମିକା ନିର୍ବାହ କରି, ଦିଅଁଙ୍କୁ ବିଡ଼ିଆପାନ ଖୁଆଇ, ପହଡ଼ ପକାଇସାରି ମାହାରୀ ଫେରେ। ଫେରେ ଅଧରାତିରେ ଦୀପଟିଏ ଧରି ତାର ନିଃସଙ୍ଗ ବସାଘରକୁ । କାଠପୁତ୍ତଳି ପରି ସେ, ଧର୍ମର ବିଧିବିଧାନରେ ତାର ଜୀବନ ବିଭକ୍ତ । ବାଧ୍ୟ ପାର୍ବଣରେ ପଶୁବଳିର ରକ୍ତକୁ ସେ ପଣତରେ ପୋଛିଦିଏ । ସେ ଦିବ୍ୟନାରୀ ରୂପେ ସେବାଧିକାର ପାଇଥାଏ । ମାତ୍ର ସେହି ନିଶାର୍ଦ୍ଧରେ ବରଫଳ ପରି ଲାଲ୍ ଆଖି ମଦ ଗଂଜା ଅଫିମ ନିଶାରେ ବିଭୋର ପୁରୁଷର ଲୋଭ ନିକଟରେ ସେ ତ୍ରସ୍ତ ହୋଇପଡ଼େ । ଏପରିଏକ ବିଶେଷତ୍ୱ ହୀନ, ନିର୍ଯ୍ୟାତନାର ଭୂମିରେ ମହାନାରୀକୁ ପରିତ୍ୟାଗ କରି କବି ରହିପାରନ୍ତି ନାହିଁ । ତାକୁ ପବିତ୍ର ଆତ୍ମୋତ୍ସର୍ଗର ଚିରନ୍ତନ ମୂଲ୍ୟରେ ମୂଲ୍ୟାୟିତ କରନ୍ତି । ସେ ମହାପ୍ରଭୁଙ୍କ ଅଙ୍ଗ ଲାଗି ନାରୀ, ଏହା ସତ୍ୟ, ମାତ୍ର ଲମ୍ପଟ ପୁରୁଷ ପାଇଁ ସେ ଖଡ୍‌ଗଧାରିଣୀ ଚଣ୍ଡୀ । ପ୍ରମତ୍ତପୁରୁଷ ସାମ୍ନାରେ ସେ ସଂହାରିଣୀ, ସାକ୍ଷାତ ଦୁର୍ଗାଦେବୀ । କବି ଅକାତର ଭାବେ ନିରିମାଖି ମାହାରୀକୁ ଛିଡ଼ା କରାନ୍ତି ଦେବୀ ରୂପରେ – 'ଯେଉଁଠି ପୁରୁଷମାନେ ଧାଇଁ ଆସନ୍ତି ଝାଳନାଳ/ ବଟଫଳ ଭଳି ଆଖି x x ମାହାରୀ ତୁ ଅଷ୍ଟଧାତୁ ବେଣ୍ଟଲଗା ଖଡ୍‌ଗ ହସ୍ତେ ଠିଆ ହେଉ x x ଲମ୍ପଟ ଆଗରେ' । କାରଣ ନାରୀତ୍ୱକୁ ଶକ୍ତି ମଣ୍ଡିତ କରିବା କବିଙ୍କର ଲକ୍ଷ୍ୟ । କବିତ୍ୱର, ସ୍ରଷ୍ଟାପଣର ଏଇ ସ୍ୱତନ୍ତ୍ର ଶକ୍ତିକୁ ସେଦିନ ଚିହ୍ନାଇଥିଲେ କବିଗୁରୁ ରବୀନ୍ଦ୍ରନାଥ ସ୍ୱରଚିତ କବିତାର ଅସହାୟା ନାୟିକା ମୁଖରେ । ତାଙ୍କ ମତରେ କବିଠାରୁ ବିଧାତା ଅଧିକ କୃପଣ । ବିଧାତା ଯାହାକୁ ଅସହାୟା କରିଦିଏ, କବି ତାହାକୁ ଶକ୍ତି ଯୁକ୍ତ କରାଏ । ରବୀନ୍ଦ୍ରଙ୍କ କବିତାରେ ଗ୍ରାମ୍ୟ ବାଳିକାଟିଏ ନିଜ ଅସହାୟ ସ୍ଥିତିକୁ ବ୍ୟକ୍ତ କରି ଚିଠି ଲେଖୁଛି ଔପନାସିକ ଶରତଚନ୍ଦ୍ରଙ୍କୁ – 'ଶରତ୍‌ବାବୁ, ଉଚ୍ଚ ତୋମାର ମନ୍/ ତୋ ମାତ୍ ଲେଖନୀ ମହୀୟସୀ/ ଆମାର ଦଶା ଯାଇ ହୋକ୍/ ଖାଁଟୋ କେରୋନା ତୋମାର କଳ୍ପନା/ ତୁମି ତୋ ନଓ ବିଧାତାର ମତୋ x x x' ସେହି ପତି ପରିତ୍ୟକ୍ତା ବାଳିକା ଲେଖିଥାଏ, 'ମୋର ଦୁଃଖ ତ ଘୁଞ୍ଚିବାର ନୁହେଁ, କିନ୍ତୁ ତୁମ ଉପନ୍ୟାସର ନାୟିକା'କୁ ତୁମେ କଳ୍ପନାର ସ୍ପର୍ଶରେ ଶକ୍ତିମୟୀ, ସୁଖଭାଗିନୀ କରାଇବ – କାରଣ, ମୁଁ ଜାଣେ, ତୁମେ ବିଧାତାଙ୍କ ପରି କୃପଣ ନୁହଁ – ।'

ସେହି ନ୍ୟାୟରେ କବି ହରିହର ବିଧାତାଙ୍କ ଭଳି ନିଷ୍ଠୁର, କୃପଣ ହୋଇପାରନ୍ତି ନାହିଁ । ବିଧିର ବିଧାନ ଯାହାକୁ ଅଣ ଓଡ଼ିଆ ଘରେ ଉଚ୍ଛିଷ୍ଟ ଧୁଆଏ, କବି ତାକୁ ବିପ୍ଳବିଣୀ କରି ଗଢ଼ି

ତୋଳନ୍ତି ଓ ତା' ହାତରେ ଅଷ୍ଟଧାତୁର ଖଡ୍‌ଗ ଧରାନ୍ତି । ମହାନାରୀର ରୂପକୁ ବିଭିନ୍ନ ସ୍ତର ମଧ୍ୟରେ, ଚିତ୍ରକଳ୍ପନା ମଧ୍ୟରେ ପ୍ରତୀକିତ କରି କବି ତାକୁ ତାହାର ନିରିମାଖି ସ୍ଥିତିରୁ ଉଠାଇ ଆଣନ୍ତି ପୂଜାବେଦୀକୁ । ଏହି ରୂପାନ୍ତରର ପ୍ରାୟୋଗିକ ସାଫଲ୍ୟକୁ ବିଚାର କରିବା ଅବାନ୍ତର । କାରଣ, ଏହା ସତ୍ୟ ନ ହେଲେ ମଧ୍ୟ ସମ୍ଭାବନାମୟ । ଏହି ସମ୍ଭାବନାକୁ କେବଳ କବିଦୃଷ୍ଟି ହିଁ ଦର୍ଶନ କରିପାରେ । କାରଣ କବି ଦୃଶ୍ୟ-ବାସ୍ତବତା ମଧ୍ୟରେ ଅଦୃଶ୍ୟ ବାସ୍ତବତାକୁ ସନ୍ଧାନ କରିପାରନ୍ତି ଏବଂ ଅଦୃଶ୍ୟବାସ୍ତବତା ଦୃଶ୍ୟବାସ୍ତବତା ଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ ଏହା ହୃଦୟଙ୍ଗମ କରିଥାନ୍ତି ।

ନୂତନ ସମୟର ପରିବର୍ତ୍ତିତ ସ୍ଥିତିରେ, ଭିନ୍ନ ଏକ ବିଚାରବୋଧର ଭିତ୍ତିଭୂମି ଉପରେ, ଅବକ୍ଷୟୀ ବିଶ୍ୱାସର ଟଳମଳ ଶପଥ ସମ୍ମୁଖରେ ତଥାପି କବିଙ୍କ ଅଙ୍କିତ ମହାନାରୀ 'ଦେବୀ' ରୂପରେ ଉଦ୍ଭାସିତ ହୁଏ । କବିତାଟିର ସର୍ବତ୍ର ପରମ୍ପରା ଓ ମୂଲ୍ୟବୋଧ ସହ କବିଚେତନାର ଗଭୀର ଆତ୍ମୀୟତା ପ୍ରକଟିତ । ଏହା ଏକ କରୁଣ ରସାଶ୍ରିତ କବିତା ସତ, ମାତ୍ର ସ୍ୱପ୍ନ ଓ ଆଶାବାଦରେ ଉଜ୍ଜଳ । କବି ଏଠାରେ ଅଇଠାଁ ବାସନ ମାଜୁଥିବା ମାହାରୀର ହାତରେ ଅଷ୍ଟଧାତୁର ଖଡ୍‌ଗ ଧରାଇ ଦେବୀ ରୂପରେ ପ୍ରତିଷ୍ଠା ଦେଇଛନ୍ତି, ସତ୍ୟ ସମ୍ଭାବନାର ସୀମାରେଖା ଲିଭେଇ ଦେବାକୁ ସମର୍ଥ ହୋଇ ପାରିଛନ୍ତି ।

ପ୍ରାଧ୍ୟାପିକା
ରମାଦେବୀ ମହାବିଦ୍ୟାଳୟ
ଭୁବନେଶ୍ୱର



ହରିହର ମିଶ୍ରଙ୍କ ଅକ୍ଷମ ଦେବତା ଏକ ପ୍ରାୟୋଗିକ ଆଲୋଚନା

# ଅକ୍ଷମ ଦେବତା

*ହର ପ୍ରସାଦ ଦାସ*

ଅକ୍ଷମ ଲୋକର ଗୁଡ଼ାଏ କଥା ନ କହିଲେ ଚଳେ ୧
ଅନେକ ଗୁଳା ଅନେକ ଗଳିରେ ନ ଯାଇ
ସିଧା ଯେଉଁଠି
ମୂଳ ପାଇବାକୁ ଥିବା ଲୋକେ ଫେରନ୍ତି
ଶଙ୍କିତ ଛାୟାମାନଙ୍କରେ
କିବା ରାତିରେ ମେଳା ଆଉ ଚୁଡ଼ାଘଷା ରଖି
ହାଟରୁ ପାନ ଗୁଆ ଗୁଡ଼ାଖୁ ଧରି
ଫେରୁଥିବା ବ୍ରାହ୍ମଣଙ୍କ ହ୍ରେଷାରବରେ
ଅଥବା ନିଶ୍ଚିନ୍ତ ନଡ଼ିଆ ଛାଇତଳେ
ଏଉଡ଼ି ମାରୁଥିବା ମହାଜନଙ୍କର ଚତୁର ଶ୍ଳୋକ ଗାୟନରେ
ଯେଉଁଠି ବିଭୋର ସନ୍ଧ୍ୟା ମାଳିର ନିବୀର୍ଯ୍ୟ ଘଣ୍ଟା ଆଳତିରେ ୨

ସେମାନେ କେହି ଏକାଠି ହୁଅନ୍ତି ନାହିଁ ୩
ଯୁଗ ବିତେ ଅଳସ ପ୍ରତିକ୍ଷାରେ ୪
ଏକାଠି ହୁଅନ୍ତି ନାହିଁ କେହି ୫
ତଡ଼ି ଉଠିଲେ ହଠାତ୍ ତାଡ଼ି ନିଶାରେ ପଡ଼ିଥିବା
ଇତସ୍ତତଃ ପଲ୍ଲୀ,
ଦିନଯାକର ଯନ୍ତ୍ରଣା ହାଡ଼ରୁ ଫୁଟେଇ

କଡ଼ମଡ଼ କରି ଡାକିଲା ମହାଜନକୁ
ନଡ଼ିଆ ଗଛରୁ ନାରଣା ବାଉରି ୭
ହିଡ଼ ଉପରୁ କଣ୍ଡରା କେଉଟ ତେଣ୍ଟା କଟୁରୀ ୮
ହାତକୁ ଚାହିଁଲେ ହଳକୁ ଚାହିଁଲେ
କ୍ଷେତକୁ ଚାହିଁଲେ ଶସ୍ୟକୁ ଚାହିଁଲେ
କୁଣ୍ଢାଇ ଧରିଲେ ମାଲିକ୍‌କୁ ୯
ଏ ଆମର ସବୁ ଆମର ୧୦

ଗୋଟା ଗୋଟା ଝାଳ ବୋହିଗଲା
ତା'ର ମରଦ ଦେହରୁ ୧୧
ମାଟି କୋଇଲା ନିଆଁ
ଲହ ଲହ ଜ୍ୟୋତି ଜଳୀୟ ବାଷ୍ପ
ଉତୁରି ଉଠିଲା
ଶିରା ପ୍ରଶିରାର ମାନଚିତ୍ରରେ
ଜଳି ଉଠିଲା ସ୍ୱପ୍ନାଭ ରକ୍ତ ୧୨

ଅଥଚ ସେମାନେ ଏକାଠି ହେଲେ ନାହିଁ ୧୩
ଗହଳିଆ ବୃକ୍ଷମାନଙ୍କରେ
ପତ୍ର ବି ଝରିଲା ନାହିଁ ୧୪
ଅକ୍ଷମ ଲୋକ
ନିଜେ ମଇଁଷୀ ହୋଇ ଶୁଙ୍ଘୁଛି ନିଜକୁ
ନିଜର ଜରାକୁ ବାର୍ଦ୍ଧକ୍ୟକୁ, ଶରୀରମାନଙ୍କୁ ୧୫
ପ୍ରଥମ ଥର ଜାଣୁଛି
ଅକ୍ଷମ ଲୋକ
ସବୁଜ କ୍ଷେତକୁ ଚାହିଁବାରେ ୧୬

ପ୍ରଥମେ ତା' ଦୃଷ୍ଟି ଫେରି ଆସୁଛି ୧୭
ଧ୍ୱଂସର ବିବରକୁ ତାର ଦୃଷ୍ଟି ଫେରି ଆସୁଛି... ୧୮

ଆକ୍ଷି କାନ ନ ଥିଲା ଦିଅଁ ୧୯
ହାତ ଗୋଡ଼ ନ ଥିବା ମହାତ୍ମା ୨୦
ସେଠି ଶୋଇଛି ସେ ବିସ୍ତୃତ କ୍ଷେତରେ
ସବୁଜ ଶସ୍ୟର ଲହରରେ
କୋଟି କୋଟି ଶ୍ରମକ୍ଲାନ୍ତ ମୁଦ୍ରିତ ପତାରେ ୨୧
ତା'ର ମାଦଳ ଦେହକୁ
କୁଣ୍ଢାଇ ପକାଏ ପତିତ
କେବେ ଯଦି ପାଏ ୨୨

ଅକ୍ଷମ ଠାକୁର ୨୩
ଓଠ ନ ଥିଲେ ବି ଥାଏ ହସ
ହାତ ନ ଥିଲେ ବି ଦିଏ ଦାନ
ପାଦ ନ ଥିଲେ ବି ତାର
କଂଟା ଥାଏ, କାଚ ଥାଏ, ମାଛଆକ୍ଷି ଥାଏ
ଛୁରୀ ଥାଏ, ଶବ୍ଦ ଥାଏ, ରକ୍ତ ଥାଏ
ତା'ର ପେଟ ନଥିଲେ ବି ସେଠି
ବିଷ ଥାଏ ତୋରାଧନ ଥାଏ ୨୪
ତାକୁ କୁଣ୍ଢାଇବା ଲୋକ ଜାଣେ ତା'ର
ଯନ୍ତ୍ରଣା, ଉତ୍ତାପ, ଜ୍ୱାଳା, ହାହାକାର
ତାକୁ ଧରି କାନ୍ଦୁଥିବାଲୋକ ତାକୁ କାଢିନିଏ
ଧୋଇଦିଏ କାନ୍ଦେ, କାନ୍ଦୁଥାଏ ୨୫

୧-୨ ବ୍ୟଞ୍ଜନା ଜଟିଳ, କିନ୍ତୁ ସାମାନ୍ୟ ଆୟାସରେ ସ୍ପଷ୍ଟ । ଅକ୍ଷମ ଲୋକର ଗୁଡ଼ାଏ 'କଥା ନ କହି କବି ବାଛନ୍ତି – କେବଳ ମୂଲ ପାଇବାକୁ ଥିବା ଲୋକର ଫେରିବା', 'ପାନଗୁଆ ଗୁଡ଼ାଖୁ ଧରି ବ୍ରାହ୍ମଣର ହାଟରୁ ଫେରବା' 'ନିଶ୍ଚିନ୍ତ ନଡ଼ିଆ ଗଛ ଛାଇ ତଳେ ମହାଜନର ଚତୁର ଶ୍ଳୋକ ଗାଇବା' ଓ 'ମାଳିର ଘଣ୍ଟା ଆଳତି' । 'ବ୍ରାହ୍ମଣର ହ୍ରେଷାରବ' ଓ 'ନିବୀର୍ଯ ଘଣ୍ଟା ଆଳତି' ବକ୍ତବ୍ୟର ମୂଳସ୍ୱରକୁ ବିଦ୍ରୂପ ଓ ଆକ୍ରୋଶରେ ଗୁଣାତ୍ମକ କରେ । 'ଶଙ୍କିତ' 'ହ୍ରେଷାରବ' 'ଚତୁର, ଓ 'ନିବୀର୍ଯ, ଶବ୍ଦର ପ୍ରୟୋଗରେ ନ୍ୟୁନବୋଧ, ଆତ୍ମସନ୍ତୋଷ' ଶୋଷଣ ଓ ଛଳନାର ଅର୍ଥ ଜ୍ଞାପନ ସମ୍ଭବ ହୁଏ ।

୩, ୪, ୫ କିନ୍ତୁ ବ୍ୟକ୍ତିର ଅକ୍ଷମତା ତାର ନିଜସ୍ୱ କାପୁରୁଷତାରେ ଆବଦ୍ଧ ହୋଇ ରହେ । ମୂଲିଆ ଓ ମହାଜନ ଏକାଠି ହୁଅନ୍ତି ନାହିଁ । ବିପ୍ଳବର ସମ୍ଭାବନା ସ୍ୱାର୍ଥର ବୈଚିତ୍ର୍ୟରେ ଲୁପ୍ତ ହୋଇ ରହେ ।

୬, ୭, ୮, ୯, ୧୦, ୧୧, ୧୨ – ଦିନେ କିନ୍ତୁ ଆସେ ଜାଗରଣ । 'ନଡ଼ିଆ ଟଛରୁ ନାରଣା ବାଉରି', 'ହିଡ଼ ଉପରୁ କଣ୍ଡରା କେଉଟ ତେଣ୍ଟା କଟୁରି' ଜାଗି ଉଠନ୍ତି ମହାଜନତ୍ୱର ବିରୁଦ୍ଧରେ । କିନ୍ତୁ ପ୍ରତିଶୋଧ ଓ ହିଂସାରେ ମଧ୍ୟ ଏକାଠି ହୁଅନ୍ତି ନାହିଁ ଅକ୍ଷମ ପୌରୁଷର ଏହ ଦୁଇ ପାର୍ଶ୍ୱ; ଶୋଷକ ଓ ଶୋଷିତ । କ୍ଷେତକୁ ଚାହିଁ, ଶସ୍ୟର ସମ୍ଭାବନାକୁ ଚାହିଁ ଥଣ୍ଡା ପଡ଼ିଯାଏ ।

୧୩-୧୪ ଯୁକ୍ତିରେ ପ୍ରମାଦ ବୋଧହୁଏ । ୧୦ ରେ ସୂଚିତ 'ଏ ଆମର ସବୁ ଆମର'ରେ ନାରଣା ବାଉରିର ଅଧିକାର ସୂଚିତ ନୁହେଁ, ମହାଜନର ମଧ୍ୟ, ସମଗ୍ର ମଣିଷ ସମାଜର । ମାଲିକ୍ ଈଶ୍ୱର । ତେଣୁ ଅକ୍ଷମ ଲୋକମାନଙ୍କର ପାର୍ଥକ୍ୟ ଏକାଠି ହୁଏ ସେହି ଅନୁଭବର ଆଶ୍ଚର୍ଯ୍ୟ ମୁହୂର୍ତ୍ତରେ । ଏହି ଅଂଶଟି ବର୍ଜନୀୟ ।

୧୫, ୧୬, ୧୭, ୧୮ କବିତାର ସବୁଠାରୁ ସଫଳ ବ୍ୟଞ୍ଜନା, ପ୍ରକାଶଭଙ୍ଗୀ ଚମତ୍କାର । ମଣିଷର ଅକ୍ଷମତା ତା'ର ନିଜର ଶରବ୍ୟ, କିନ୍ତୁ ସେ' ଅକ୍ଷମତା ଭିତରେ ଭିତରେ ସେ ପାଲଟିଯାଏ ଦେବତା, ସହନଶୀଳ କାଷ୍ଠ ପାଷାଣର ପ୍ରତିମା, କେବଳ ଧ୍ୱଂସର ଭୟରେ ବଞ୍ଚାଇ ରଖେ ତା'ର ପାର୍ଥକ୍ୟର ପୃଥିବୀକୁ ଶୋଷିତ ହୋଇ, ଅତ୍ୟାଚାରିତ ହୋଇ ।

୧୯, ୨୦, ୨୧ ପୂର୍ବର ୧୦ ସହିତ ମିଶାଇ ପଢ଼ନ୍ତୁ ।

୨୨ ପୂର୍ବର ୯, ୧୦ ସହିବ ମିଶାଇ ପଢ଼ନ୍ତୁ । ମାଲିକ (ମାଦକ ଦେହ) କୁ କୁଣ୍ଢାଇ ପକାଏ ନାରଣା ବାଉରି (ପତିତ) ।

୨୩-୨୪ ଦେବତାର ଅକ୍ଷମତା ଭିତରେ ନିହିତ ମଣିଷ ।

୨୫ ପୂର୍ବର ୧୨ ଓ ୨୨ ସହିତ ମିଶାଇ ପଢ଼ନ୍ତୁ । ଏହି ଅଂଶଟିରେ କବିତାର କଠିନ ଯୁକ୍ତିଶୀଳତା, ଆବେଗରେ ମନ୍ଥର ହୋଇଯାଏ । ମଣିଷର ଦେବତାପଣ ଓ ଦେବତାର ମଣିଷପଣ ଓ ଉଭୟରେ ନିହିତ । ଅକ୍ଷମତା କେବଳ ସୃଷ୍ଟିର ଭାରସାମ୍ୟ ପାଇଁ, ଏ ଯୁକ୍ତିର ପରିଣାମ ଦେବତାର ନବକଳେବର ସୂଚନା ସହିତ ମିଶିପାରେ ନାହିଁ ତେଣୁ ଯେଉଁ ଯନ୍ତ୍ରଣା ଓ ଶୋକର ସୂଚନା ପ୍ରତି କବି ଇଙ୍ଗିତ କରନ୍ତି ତାହା ଯଥେଷ୍ଟ ଭୀଷଣ ହୋଇ ପାରେ ନାହିଁ । ୯, ଓ ୧୦ରେ ସୁଚିତ ପରବେଶ ବରଂ ଏହି ଭାବକୁ ଅତି ଚମତ୍କାର ପରିବେଷଣ କରେ, ଏତିକି ହିଁ ଯଥେଷ୍ଟ ହୋଇଥାନ୍ତା ।

### ।। ବିଚାର ।।

ଏ କବିତାଟି ଏକ ଉଚ୍ଚକୋଟୀର କବିତା । କିନ୍ତୁ ଏ କବିତାର ସମ୍ଭାବନା ପ୍ରତି କରି ନିଜେ ଉଦାସୀନ । କାବ୍ୟିକ ଯୁକ୍ତି ପ୍ରତି ସାମାନ୍ୟ ସତର୍କ ହୋଇଥିଲେ ଏ କବିତାଟି କବିଙ୍କୁ ପ୍ରତିଷ୍ଠିତ କରି ଦେଇଥାନ୍ତା । ଏ ଦୃଷ୍ଟିଭଙ୍ଗୀଟି ଅନନ୍ୟ, ଏଭଳି ବ୍ୟାପକ ଚେତନାର ପ୍ରୟୋଗ କ୍ୱଚିତ ଦୃଷ୍ଟିଗୋଚର ହୁଏ । ଭାଷାରେ ସଂଯମ ସ୍ୱଷ୍ଟ, କେବଳ ଶୈଳୀରେ ସାମାନ୍ୟ ଚାତୁର୍ଯ୍ୟ ଆବଶ୍ୟକତା ଥିଲା । କବି ନିଜେ ବୋଧେ ଭାବର ବ୍ୟାପକତାକୁ ଆୟତ କରି ପାରି ନାହାନ୍ତି, ତେଣୁ କବିତାର ତିନୋଟି ମୁଖ୍ୟ ମୋଡ଼ ପରସ୍ପରକୁ ନ ଯୋଡ଼ି ବିଚ୍ଛିନ୍ନ ହୋଇ ଯାଇଛନ୍ତି ଓ ୧୩, ୧୪ ରେ ସୁଚିତ ସଂଯୋଜକଟି ଅକାମୀ ହୋଇପଡ଼ିଛି । ଗଠନ ସାନ୍ଦ୍ର । ଏହି କବିଙ୍କର କଳ୍ପନାଶକ୍ତିର ବ୍ୟାପକତା ପାଠକ ଲକ୍ଷ୍ୟ କରନ୍ତୁ ।

ଡି. ଜି. ସେଣ୍ଟ୍ରାଲ, ରେଭେନିଉ, ନୂଆଦିଲ୍ଲୀ
(ଜାନୁୟାରୀ, ୧୯୭୭ ମସିହା
'ସମାବେଶ'ରେ ପ୍ରକାଶିତ)



# ସାକ୍ଷାତକାର କବି ହରିହର ମିଶ୍ରଙ୍କ ସହିତ

ଉପସ୍ଥାପନା – *ଅକ୍ଷୟ ବେହେରା*

କେଉଁଠୁ ଆରମ୍ଭ କରିବି କବି ହରିହର ମିଶ୍ରଙ୍କର ପରିଚୟ ? ଏହା ଏକ ଦ୍ୱନ୍ଦ୍ୱ ଥିଲା ମନରେ । ଶେଷରେ 'ପ୍ରତିବେଶୀ'ରେ ତାଙ୍କ ସମ୍ପର୍କରେ ସତ୍ୟ ବିନିମୟ ଓ ସ୍ୱପ୍ନ ବିନିମୟର ଆଲୋଚନାଟି ଦୃଷ୍ଟିରେ ପଡ଼ିଲା । ବିଶିଷ୍ଟ କବି ଓ ସମାଲୋଚକ ସୌରୀନ୍ଦ୍ର ବାରିକ ଠାଏ ଲେଖିଛନ୍ତି ତାଙ୍କ କବିତା ସମ୍ପର୍କରେ ହରିହରଙ୍କ କବିତା ଭାଷାର ତାରକସୀ ମାତ୍ର ନୁହେଁ, ଏହା ସ୍ୱପ୍ନର ରୂପାନ୍ତର ମଧ୍ୟ । ପ୍ରତ୍ୟେକ କବିତା କବିର ଗୋଟିଏ ଗୋଟିଏ ବିଶ୍ୱରୂପ । ଏହି ଚେତନା 'ଚନ୍ଦ୍ରବିମ୍ବ' ପରି ତାଙ୍କର କବତାରେ ମାୟା ସୃଷ୍ଟି କରେ ସତ୍ୟ ଆଉ ସ୍ୱପ୍ନର । କାୟା ଆଉ ଛାୟାର । ଏହି ବିଶ୍ୱରୂପ ପାଇଁ କବିଙ୍କର ଶବ୍ଦ ଆଉ ଛାୟାର । ଏହି ବିଶ୍ୱରୂପ ପାଇଁ କବିର ଶବ୍ଦ ଆଉ ଛନ୍ଦର ବ୍ୟବହାର । ସବୁ ବ୍ୟବହାରରେ ସ୍ୱାଚ୍ଛନ୍ଦ୍ୟ, ସବୁ ସ୍ୱାଚ୍ଛନ୍ଦ୍ୟରେ ନିଜସ୍ୱ ଚେତନା, ନିବିଡ଼ତା । ତେଣୁ କବିତା ନିଜର ପ୍ରତିଧ୍ୱନି ।'

ଏଇ ପ୍ରତିଧ୍ୱନି 'ଚନ୍ଦ୍ରବିମ୍ବ'ରେ, 'ଅକ୍ଷମ ଦେବତା'ରେ 'ଚାହାଣୀ ମଣ୍ଡପ'ରେ 'ଶଙ୍ଖନାଭି'ରେ, 'ଭିତିରି ଚନ୍ଦନରେ', 'ଶବ୍ଦ ଏକା ଏକା ଏକତ୍ର' ଓ 'ଦର୍ପଣଶିଳା'ରେ ପ୍ରତିଧ୍ୱନିତ ।

ସ୍ୱପ୍ନ ହିଁ କବି ହରିହର ମିଶ୍ରଙ୍କର କାବ୍ୟଦୃଷ୍ଟି । ସେ ସ୍ୱପ୍ନ ଦେଖନ୍ତି ଆଉ ଏକ ସ୍ଥିତିର । ମୃତ୍ୟୁ ସତ୍ତ୍ୱେ ସାହିତ୍ୟ କୃତି ବଞ୍ଚି ରହେ ଯୁଗରୁ ଯୁଗକୁ । ତିନୋଟି ସ୍ତରରେ କବି ନିଜ ଅସ୍ତିତ୍ୱକୁ ବଞ୍ଚାନ୍ତି – ପ୍ରେମ ପାଇଁ ବଞ୍ଚିବା, ନିଜ ସ୍ୱପ୍ନ ଓ ଆଦର୍ଶ ନେଇ ବଞ୍ଚିବା ଓ ଏସବୁର ଊର୍ଦ୍ଧ୍ୱରେ ଅଜଣା ଅଫେରନ୍ତି ପଥରେ ମହାସୁଷୁପ୍ତିର ମଧୁମୟ ମୂର୍ଚ୍ଛନା ପାଲଟିଯିବା । କବିତାର ଉତ୍ସ ଓ ଲକ୍ଷ୍ୟ କବି ହରିହର ମିଶ୍ରଙ୍କର ତୃତୀୟ ସ୍ତରରେ ଥିଲା ଭଳି ମନେ ହୁଏ । ସେ ଏକ ମହାନ୍ ଦୃଷ୍ଟି । କ୍ରାନ୍ତ ବାସ୍ତବତା । ଭାବଲୋକରେ ଜୀଇଁଥିବା ସେ ଭାବଭୋଳା କବି ।

ତାଙ୍କର ଜୀବନଯାପନକୁ ଲକ୍ଷ୍ୟ କଲେ- ଜଣେ ନିର୍ଲିପ୍ତ ସନ୍ନ୍ୟାସର ସହିମ୍ନ ଔଜ୍ଜ୍ୱଲ୍ୟ ଦେଖିବାକୁ ମିଳେ । ଅହରହ ମଗ୍ନ ସେ କବିତାରେ- ଅନ୍ୟମନସ୍କତା ତାଙ୍କର ଶବ୍ଦର ଅନ୍ୱେଷଣ, ଭାବଭୂମିର ଆବିଷ୍କାର । ଥରେ କବିତା ସମ୍ପର୍କରେ ଆରମ୍ଭ କଲେ- ସେ ଚାଲିଯାଆନ୍ତି ଏକ

ଇନ୍ଦ୍ରିୟ ଊର୍ଦ୍ଧ୍ୱ ସୂକ୍ଷ୍ମ ଜଗତକୁ । ସେତେବେଳେ ତାଙ୍କ ବକ୍ତବ୍ୟକୁ ସମ୍ପୂର୍ଣ୍ଣ ଧରି ରଖିବା ଅସମ୍ଭବ ହୋଇପଡ଼େ । ରହସ୍ୟାବୃତ୍ତ ହୋଇଯାଏ କବିତାର ପରିଧି । ଛାଇ ଛାଇ ଜହ୍ନ ଆଉଅ ପରି କିଛି ଦିଶେନି । ତଥାପି ଜହ୍ନରାତି ଉଚ୍ଚାଟ କଲାପରି,ମୋହିନେଲା ପରି ସେ ତନ୍ମୟ ହୁଅନ୍ତି ଓ ତନ୍ମୟିତ କରନ୍ତି । ତେଣୁ ସେ ପାଠକର ସମୀପବର୍ତ୍ତୀ ହୋଇ ପାରିଥିଲେ ମଧ୍ୟ ଅନେକ ସମୟରେ ପାଠକ ଫେରିଆସେ କବିତାର ବଳୟ ଭିତରକୁ ପଶି ନପାରି । ତେଣୁ ସେ ନିର୍ଦ୍ଦିଷ୍ଟ ପାଠକ ଚାହାନ୍ତି– 'ମାତ୍ର କବିତାରେ ଆପାତତଃ କେତେକ ନିର୍ଦ୍ଦିଷ୍ଟ ପାଠକଗୋଷ୍ଠୀ ସୃଷ୍ଟି କରିବା ଓ ତା'ର ପରିସର ବୃଦ୍ଧି ପାଇଁ ମୁଁ ଐତିହ୍ୟର ଗୁଣ ଗୁଡ଼ିକୁ ମୋର ଭାଷାଶୈଳୀ ଭାବ ଓ ଆଭିମୁଖ୍ୟରେ ବର୍ତ୍ତମାନ ଗୁରୁତ୍ୱ ଦେଉଛି ।'

ଇତିହାସରେ ମଣିଷର ବର୍ବରତା, ସଂକୀର୍ଣ୍ଣତାର ଅସଂଖ୍ୟ ପ୍ରମାଣ ସତ୍ତ୍ୱେ ସେ ଆଶା କରୁଥାଏ ଯେ ଭବିଷ୍ୟତ ଅଲଗାହେବ, ଆଶା ଜୀବଦଶାରେ ନ ହେଉ ପଛକେ ଆମ ଅନନ୍ତ ପୃଥିବୀର ସୁଦିନ ଆସିବ । 'କିଏ ଜାଣେ ବହୁକାଳ ପରେ ହୁଏତ ଏପରି ସମୟ ଆସିବ, ଯେତେବେଳେ ଏ ପରମ୍ପରାଟି, ଯାହାକୁ ଆପଣମାନେ ବଞ୍ଚାଇ ରଖିଥିଲେ ନାନା ପ୍ରତିବନ୍ଧକ ସତ୍ତ୍ୱେ, ତାହା ପୁଣି କାର୍ଯ୍ୟକ୍ଷମ ହେବ । କବି ରମାକାନ୍ତ ରଥଙ୍କର ଏ ମନ୍ତବ୍ୟ କବି ହରିହର ମିଶ୍ରଙ୍କ ସ୍ୱପ୍ନ ଚେତନା ଓ ଦୃଷ୍ଟିଭଙ୍ଗୀର ଅନୁରୂପ । କାରଣ, ଏହାର ପ୍ରମାଣ ଆମେ ପାଉ ସ୍ୱପ୍ନ ବିନିମୟ (୧୯୯୨)ର ମୁଖବନ୍ଧରେକବି ନିଜେ ଲେଖିଛନ୍ତି– 'ଏ ବିଶ୍ୱଟି ବିସ୍ଫୋରିତ ହୋଇ ବିକ୍ଷିପ୍ତ ହେବାପରେ ତା'ର ସ୍ୱପ୍ନଟି ରହିଯାଏ ଆଉ କେଉଁ ସୃଜନର ପ୍ରତ୍ୟାଶା ବାଣ୍ଟିଦେଇ ଅଜଣା ମୂଳକରେ ।'

କବି ମିଶ୍ରଙ୍କର ଏ ସୃଜନର ପ୍ରତ୍ୟାଶା– ଯାହାକୁ ଆମେ କହୁ ସୃଜନର ଯାତ୍ରା ଆରମ୍ଭ ହୋଇଛି ଶଙ୍ଖନାଭିରୁ– ଦର୍ପଣଶିଳା ଯାଏଁ । ଅଥଚ ଆହୁରି ଅପେକ୍ଷା ରଖିଛି ଅନେକ ସଂକଳନ ।

ଏକଦା ଶଙ୍ଖନାଭି, ଲାଲ କଢ଼ର ତପସ୍ୟା, ଚାହାଣୀ ମଣ୍ଡପ, ଚନ୍ଦ୍ରବିମ୍ବ, ଅକ୍ଷମ ଦେବତାରେ ହଜି ଯାଉଯାଉ ଲେଉଟିଆସି 'ଅନାମ' ଚେତନାରେ ଉଦ୍‌ବୁଦ୍ଧ ହୋଇଥିଲେ । ଅନାମ ଆନ୍ଦୋଳନ ରହିଗଲା ଓଡ଼ିଆ ସାହିତ୍ୟ ଇତିହାସରେ ଏକ ଅଧ୍ୟାୟ ହୋଇ ।

କବିତା ତାଙ୍କର ଭାବମୟ ଜଗତର ପ୍ରତିନିଧିତ୍ୱ କରୁଥିଲାବେଳେ ଅଭିନୟ, ନାଟକ, ଗଳ୍ପ ରଚନାରେ ସେ ମଧ୍ୟ ସୁନାମ ପାଇଛନ୍ତି । ଆକାଶବାଣୀ କଟକ କେନ୍ଦ୍ରରେ ସେ ଜଣେ 'ଏ' ଗ୍ରେଡ଼ର ଆର୍ଟିଷ୍ଟ । ତାଙ୍କର ବହୁ ଗୀତିକବିତା ଆକାଶବାଣୀରେ ପ୍ରଚାରିତ ଓ ଏବେ ମଧ୍ୟ ପ୍ରଚାରିତ ହେଉଛି । ଦୂରଦର୍ଶନରେ ତାଙ୍କର ନାଟକ ସୁଖବାସୀକୁ ନିର୍ଦ୍ଦେଶନା ଦେବା ସଙ୍ଗେ ସଙ୍ଗେ ସେ ବହୁ ନାଟକର ସଫଳ ନିର୍ଦ୍ଦେଶକ । ଚିଲିକାତୀରେ ଚଳଚ୍ଚିତ୍ରର ସେ ମଧ୍ୟ ସଫଳ

ସଂଳାପ ଲେଖକ । ଆକାଶବାଣୀ କଟକ ଓ ଦୂରଦର୍ଶନରେ ବହୁ କବିତା ପାଠ କରିଛନ୍ତି । ଜାତୀୟସ୍ତରର ବହୁ କବିତା ସେମିନାରରେ ମଧ୍ୟ ସେ ଯୋଗଦେଇ ସନ୍ଦର୍ଭ ପାଠ କରିଛନ୍ତି । ଜଣେ ସଫଳ ସମ୍ପାଦକ ଭାବରେ ଗଲା କିଛି ବର୍ଷ ଧରି ସେ 'ସମାବେଶ' ପତ୍ରିକାର ସମ୍ପାଦନା ସହ ଜଡ଼ିତ । 'ଦୃଷ୍ଟିପାତ'ରେ ବହୁ କବିମାନଙ୍କ ଉପରେ ତୁଳନାତ୍ମକ ଆଲୋଚନା ଲେଖି ସଫଳ ସମାଲୋଚକ ଭାବରେ ନିଜକୁ ପ୍ରତିପାଦନ କରି ପାରିଛନ୍ତି । 'ସ୍ୱର ସାଧକ' ତାଙ୍କର ଅନ୍ୟତମ ସମାଲୋଚନା ଗ୍ରନ୍ଥ ।

କବି ହରିହର ମିଶ୍ରଙ୍କର ଅନ୍ୟ ଏକ ଉଚ୍ଚକୋଟୀର ବିଶେଷତ୍ୱ ହେଲା ଯେ ସେ ତରୁଣମାନଙ୍କ ଉପରେ ଅନୁଧ୍ୟାନ କରନ୍ତି, ସେମାନଙ୍କ ସୃଷ୍ଟିକୁ ଅର୍ଥାତ୍ ଭଲ ଲାଗିଥିବା ନୂଆ ପ୍ରତିଭାମାନଙ୍କୁ ସେ ସମାବେଶ ପୃଷ୍ଠାରେ ସ୍ଥାନିତ କରାଇବାରେ କୁଣ୍ଠାବୋଧ କରିନାହାନ୍ତି । କହିବାକୁ ଗଲେ ସାମ୍ପ୍ରତିକ ଓଡ଼ିଆ କବିତାର ତରୁଣ ପ୍ରବୀଣମାନଙ୍କର ସ୍ୱରକୁ ସମନ୍ୱିତ କରାଇବାରେ ସେ ପ୍ରମୁଖ ଭୂମିକା ନେଇଛନ୍ତି । ପୁରସ୍କାର ସମ୍ମାନର ଉର୍ଦ୍ଧ୍ୱରେ ରହି ମଧ୍ୟ ସେ କବିତାରେ ଚାରିଦଶନ୍ଧି ଧରି କ୍ରିୟାଶୀଳ ଓ ଅଗ୍ରଣୀ କବି ।

ବାସ୍ତବରେ ମଣିଷର ଜୀବନଯାପନ ଚିନ୍ତା ଚେତନା ଓ ମନୋଭାବ ଯେତେ ନିର୍ମଳ ହେବ, ଆଉ ସିଏ ଯଦି ସୃଜନଶୀଳ ମଣିଷଟିଏ ହୋଇଥାଏ, ତେବେ ତା'ର ସୃଷ୍ଟି ଓ ତାର ଭାବାଲୋକ ଅନୁରୂପ ସ୍ୱାତନ୍ତ୍ର୍ୟ ବହନ କରିବ । କବି ହରିହର ମିଶ୍ର ସେହି ସ୍ୱାତନ୍ତ୍ର୍ୟ ବଜାୟ ରଖିପାରିଛନ୍ତି ଓ ଜୀବନର ବହୁବିଧ ବିଭାବକୁ ସେ ଜୀବନ୍ତ କରିପାରିଛନ୍ତି ତାଙ୍କ କବିତା, ନାଟକ, ଗଳ୍ପ, ଅଭିନୟ ମାଧ୍ୟମରେ ।

## ସାକ୍ଷାତକାର

ପ୍ର– ଆପଣ ନିଜସ୍ୱ ସୃଷ୍ଟି ପ୍ରକିୟା ସମ୍ପର୍କରେ କିଛି କହିବେ କି ? କବିତାଟିଏ ଜନ୍ମ ଦେଲାବେଳେ ଆପଣ ବହିର୍ଜଗତରୁ ଅନ୍ତର୍ଜଗତ ନା ଅନ୍ତର୍ଜଗତରୁ ବହିର୍ଜଗତକୁ ଯାଇଥାଆନ୍ତି ?

ଉ– ଶବ୍ଦକୁ ଅଭିଧାର୍ଥରୁ ମୁକ୍ତ କରି ଭିନ୍ନ ଭିନ୍ନ ଇଙ୍ଗିତରେ ଭାବର ବିକାଶ କରାଇବା ପାଇଁ କବିତାରେ ପରିବେଶ ସୃଷ୍ଟି କରିବା ଏବଂ ଜଗତକୁ ଇନ୍ଦ୍ରିୟଲବ୍ଧ ଜ୍ଞାନରେ ଗ୍ରହଣ କରି ଏହାର ଉର୍ଦ୍ଧ୍ୱରେ ଥିବା ଇନ୍ଦ୍ରିୟାତୀତ ସତ୍ୟ ପ୍ରତି ଏକନିଷ୍ଠ ହେବା ମୋର କାବ୍ୟ ପ୍ରକ୍ରିୟା । କବିତାର ଏହି ପ୍ରକ୍ରିୟାର ଭିନ୍ନ ଭିନ୍ନ ପରିବେଶରେ ଚିତ୍ର ଦେଇ ପୃଥକ୍ ପୃଥକ୍ ଉପଲବ୍ଧି ଗୁଡ଼ିକୁ ଚେତନାଭିମୁଖୀ କଲାବେଳେ ଉଭୟ ତନ୍ମୟତା ଓ ନିର୍ଲିପ୍ତତା ଆସେ । ଅନ୍ୟ ଜଗତ ପ୍ରତି ନିର୍ଲିପ୍ତ ରହି କବିତାର ଜଗତରେ ତନ୍ମୟ ହେବାରେ ଯେଉଁ ଅବବୋଧ ଗଢ଼ା ହୁଏ; ତାହା ବହୁସଂଘାତ ପୂର୍ଣ୍ଣ ବାସ୍ତବତାକୁ ପ୍ରକଟ କରେ । ଏତେବେଳେ ଚେତନା

ସହିତ ବିଚ୍ଛେଦ ଯେତିକି, ଚେତନା ସହିତ ସମ୍ପର୍କ ବି ସେତିକି ବଢ଼ିଥାଏ । ମାତ୍ର ଏହାର ସମନ୍ୱୟକାରୀ ଶକ୍ତି ହିଁ କବିତାର ଆଭ୍ୟନ୍ତରୀଣ ଶୃଙ୍ଖଳା । ଅର୍ଥାତ୍ ବିଚ୍ଛିନ୍ନତାର ଏ ଅବବୋଧ ଏବଂ ଅଭିନ୍ନ ସମ୍ପର୍କର ଉପଲବ୍‌ଧିକୁ ନେଇ ଜଣେ ଜୀବ ଓ ପରମର ସ୍ଥିତି-ଅସ୍ଥିତିର ମହାଚେତନାକୁ ବେଶ୍ ଉପଲବ୍‌ଧି କରି ପାରେ । ସେହିଭଳି ଅନ୍ତର୍ଜଗତ ଓ ବହିର୍ଜଗତର ସମନ୍ୱୟ ସାଧନ ହିଁ କବିତାର କଳା । କଳ୍ପନାକୁ ବାସ୍ତବରେ ପରିଣତ କରିବା ଏବଂ ବାସ୍ତବକୁ କଳ୍ପନାରେ ପରିଣତ କରିବାର ଏକ ପ୍ରକିୟା ଭିତରେ ଅନ୍ତର୍ଦୃଶ୍ୟ ଏବଂ ବହିର୍ଦୃଶ୍ୟର ସମୀକରଣ ହୋଇଥାଏ ।

ତେବେ ମୁଁ ଅନ୍ତର୍ଜଗତରୁ ବହିର୍ଜଗତକୁ ଯିବାରେ ଆନନ୍ଦ ଅନୁଭବ କରେ । ବେଳେବେଳେ ବହିର୍ଜଗତ ମୋ ସ୍ମୃତି-ଅନୁଭୂତିର ତଥା ଚେତନାର ପରିଧି ଦ୍ୱାରା ଚିହ୍ନିତ ହୋଇଯାଏ । ଅନ୍ୟ ଅର୍ଥରେ ବହିର୍ଜଗତ ଭିତରେ ମୁଁ ମୋର ଅନ୍ତର୍ଜଗତକୁ ଦେଖିପାରେ ।

ପ୍ର— କାବ୍ୟାନାଭୁତି ଅଥବା କାବ୍ୟରୂପଟିଏ ଧରାଦେବାପରେ ଆପଣ ତାକୁ ଭାଷାରେ ପ୍ରକାଶ କରନ୍ତି ବା ରୂପ ଭାଷା ସହିତ ସିଧାସଳଖ କଲମରୁ ଓହ୍ଲେଇ ଆସେ ?

ଉ— ରୂପଟି ଭାଷା ସହ ସିଧାସଳଖ ଆସେ । ଅଲିଖିତ ଅବସ୍ଥାରେ ସେଗୁଡ଼ିକ କୋଉଠି ଥିଲାଭଳି ଦିଶେ ଓ ଶୁଭେ । ଆଗେ ଏହି କାରଣରୁ ଅନେକ କବିତା ମନେ ରହିଯାଉଥିଲା । 'ଉର୍ଣ୍ଣନାଭର ଗୀତ' ବା 'ଶଙ୍ଖନାଭି' କବିତାଟି ୨୪୩ ଧାଡ଼ି । ଲାର୍କ ବୁକ୍ସର ପ୍ରକାଶକ ମହେନ୍ଦ୍ରବାବୁ ଏହାକୁ ୧୯୬୮ରେ ନେଲେ (୪ ବର୍ଷ ତଳୁ ଏହା ଲେଖା ସରିଥିଲା । ମୁଁ ପ୍ରଥମ ଯୁବ ଲେଖକ ସମ୍ମେଳନ ପୁରୀଠାରେ ଏହାକୁ ଆବୃତ୍ତି ୧୯୬୪ ମସିହାରେ କରିଥିଲି) କିନ୍ତୁ ସେ ହଜେଇ ଦେଲେ । ମୁଁ ପାଞ୍ଚ ବର୍ଷ ପରେ ଜାଣିଲି ଯେ 'ଶଙ୍ଖନାଭି' ହଜିଯାଇଛି । ମନରେ ଲେଖା ହୋଇ ଅଧିକାଂଶ ଧାଡ଼ି ଥିଲା । କିଛି କଟାଯୋଡ଼ା ହୋଇଥିବାରୁ ଏହା ମୋ ଅନୁଜୋପମ କବିବନ୍ଧୁ ହରପ୍ରସାଦ ଦାସ ଜାଣିପାରି ଦୁଃଖ ପ୍ରକାଶ କରନ୍ତି । ମୋର କିନ୍ତୁ ଏଥିରେ ଦୁଃଖ ନାହିଁ କାରଣ ସୃଜିବାର କ୍ଷମତା ନେଇ ମତେ କବିତା ଲେଖିବାକୁ ହେବ । ସେହି ଲାର୍କବୁକ୍ସ, ପୁଣି ମୋର 'ସାକ୍ଷୀ ପୁରୁଷ' କବିତା ପାଣ୍ଡୁଲିପିଟି ହଜାଇଦେଲେ । ତଥାପି ମୁଁ ମୋର ମୁକ୍ତ କାବ୍ୟ 'ଶବ୍ଦ ଏକା ଏକା ଏକତ୍ର' ତାଙ୍କୁ ଛାପିବାକୁ ଦେଲି । ସେ ପ୍ରକାଶକଙ୍କ ଏ ଦୁର୍ବଳତା ଗୋଟିଏ କବିର ଦୁର୍ବଳତା । ସେ ମୋର ଯେ ସମ୍ମାନାସ୍ପଦ ବଡ଼ଭାଇ ତା ଭୁଲିବି କିପରି ? କ୍ଷମା କରିବ, କଥାଟା ଅନ୍ୟଆଡ଼େ ଚାଲିଗଲା । ତେବେ କହିଲି ତ ରୂପ ଓ ଭାଷା ମତେ ଦିଶେ । କିନ୍ତୁ ମୋର ତିନୋଟି କବିତା ସଙ୍କଳନ ଅକ୍ଷମ ଦେବତା, ଲାଲ କଢ଼ର ତପସ୍ୟା, ଚାହାଣି ମଣ୍ଡପ ମୁଁ ଶୂନ୍ୟମନ ନେଇ ଆରମ୍ଭ କରେ ଓ ପରେ ଅକ୍ଷର ଦେଖିଲା ପରେ ଭାବ

ଅନୁସାରେ କବିତା ଚାଲେ । ଭାବର ଗୁରୁତ୍ୱ ଦୃଷ୍ଟିରୁ ମୁଁ ଭାଷାକୁ ଖୋଜିବାକୁ ଯାଏ । ଅନେକ ସମୟରେ ଭାଷା ଧରାଦିଏ ନାହିଁ । ତେବେ ମୁଁ ଶୂନ୍ୟତାରୁ କବିତା ଲେଖୁଛି ଓ କବିତାରେ ଶୂନ୍ୟତାକୁ ପୂର୍ଣ୍ଣ କରୁଛି ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ପ୍ର— ସବୁବେଳେ ଭାବ ପାଖରେ ଭାଷା ପହଞ୍ଚି ପାରେ ନାହିଁ । ଏପରି ଅନୁଭୂତି ଆପଣଙ୍କର ଆସିଛି କିପରି ?

ଉ— ଭାଷାକୁ ତା'ର ପାରମ୍ପରିକ ଉଦ୍ଦେଶ୍ୟ ଇଙ୍ଗିତ ଓ ଗତିରୁ ଅନ୍ୟ ଏକ ଦିଗରେ ନେଲାବେଳେ ସେ ଭାଷା ଛେଳିକୁ ପାଣିକୁ ଘୋଷାରିଲା ପରି ହେବା ସ୍ୱାଭାବିକ । ଶାରଳା ଦାସଙ୍କୁ ତାଙ୍କ ଇଷ୍ଟଦେବୀ ଶାରଳା ହଳ କରିବାକୁ ପଟେ ବଳଦ ସାଙ୍ଗକୁ ତାଙ୍କ ବାଘକୁ ପଠେଇ ଦେଇଥିଲେ ଜୁଆଳି ଯୋଖି ଚାଷ କରିବା ପାଇଁ । ଶବ୍ଦଗୁଡ଼ିକ ପରସ୍ପର ଈର୍ଷା ଜର୍ଜରିତ ଓ ବିରୋଧୀ ହୋଇ ଏକାଠି ରହନ୍ତି ପାର୍ଥିବ ଓ ଅପାର୍ଥିବ ଉଭୟ ଚେତନାକୁ ନେଇ । ଏ ଚେତନାକୁ ଆଧିଭୌତିକ ଚେତନା କୁହାଯାଏ । କ୍ରମେ ବିରୋଧଭାବ ହଟିଯାଏ । କବିତା ପହଞ୍ଚେ ଆଉ ଏକ ମହାସ୍ତବ୍ଧତାର ମହାଭାବରେ । ସେ ଅବାରିତ ଧ୍ୱନି ଶବ୍ଦରେ ମିଳେ ନାହିଁ । ମିଳେ ନୀରବତାରେ । ନୀରବତାରସେ ଇଲାକା ମୌନ ମୁଖର ହୋଇ ସେ ନୀରବତାକୁ ମଧ୍ୟ ଭାଙ୍ଗିଦିଏ । ଆସେ ସ୍ତବ୍ଧତା । ଶବ୍ଦ ସେ ପୁରରେ ପହଞ୍ଚି ପାରେନା । ତେଣୁ ସଙ୍ଗୀତର ଭାଷା ନଥାଏ । ତାକୁ ଶିକ୍ଷା କରିବାକୁ ସ୍ୱରଲିପି ଥାଏ । ସେ ମୌନତାର ରୋହିଣୀ ତୀର୍ଥରେ ପ୍ରତିଶିଳ୍ପୀ ଦିନେ ନା ଦିନେ ନିମଜ୍ଜିତ ହୋଇ ଅଲୌକିକତାର ସ୍ପର୍ଶରେ ବିଭୋଳ ହୋଇଥାଏ । କିନ୍ତୁ କବିତା ବଚନ ବିଷୟ ନୁହେଁ, ହୃଦୟ ତା କେବଳ ଅନୁଭବ କରିପାରେ କହି, ଏହାକୁ ଏଡ଼ିଦେବା ଉଚିତ ହେବ ନାହିଁ । ସକଳ ପ୍ରତିବନ୍ଧକ ଥିବା ସତ୍ତ୍ୱେ ଓଡ଼ିଆ ଶୂନ୍ୟସାଧକମାନେ ଓ ଆଜିର ମନନଶୀଳ କେତେକ ବିଶିଷ୍ଟ କବି ଏପରି ସ୍ତରରୁ ଶବ୍ଦକୁ ଖୋଜନ୍ତି ଓ ଶବ୍ଦକୁ ନୀରବତାର ସ୍ତରରେ ପହଞ୍ଚାଇବାକୁ ପରିବେଶ ଗଢ଼ନ୍ତି ।

ଏ କ୍ଷେତ୍ରରେ ମୁଁ ଶବ୍ଦ ଗୁଡ଼ିକୁ ବାରମ୍ବାର ପରୀକ୍ଷା କରିଛି । ତାହାର ଐତିହ୍ୟ ଗୁଣ ଥିଲେ ଯେ ପୁନର୍ଗଠିତ ହୋଇ ଆଧୁନିକ ଚେତନାର ସତ୍ୟ ସ୍ୱରୂପକୁ ଗଢ଼ିବାର ଉପାଦାନ ହୋଇଯାଏ ।

ପ୍ର— ଭାଷା ବ୍ୟତୀତ ଭାବ କ'ଣ ରହିପାରେ ? ଯଦି ରହିପାରେ ଭାବ କ'ଣ ମନର ଏକ ଅବସ୍ଥା ମାତ୍ର ?

ଉ— ଟିକେ ଆଗରୁ କହିଲି ଯେ ଭାବ ଏକ ଅଲିଖିତ ଭାଷା । କବିତାରେ ମନର ଅବସ୍ଥାକୁ ନେଇ ପରିବେଶ ଗଢ଼ା ହୁଏ । ଏ ପ୍ରକାର ପ୍ରସ୍ତୁତି ଭାବକୁ ପାଠକ ମନରେ ମୂର୍ତ୍ତିମନ୍ତ

କରିବାର ପ୍ରକ୍ରିୟା । କ୍ରମେ ଏ ଭାବ ମହାଭାବ ଆଡ଼କୁ ମଧ୍ୟ ଯାଇଥାଏ । ତେବେ ଭାବୋଚ୍ଛ୍ୱାସକୁ ନିୟନ୍ତ୍ରଣ କରି ନ ପାରିଲେ ମହାଭାବର ଦୃଶ୍ୟ ଆସିବା କଷ୍ଟକର । ପୁଣି ଭାବରେ ଉଦ୍‌ବୁଦ୍ଧ ନ ହେଲେ ସେ ମହାସାଗରର ପୁଣ୍ୟ ତଟ ଦେଶରେ ପହଞ୍ଚିବା ଅସମ୍ଭବ ।

ପ୍ର– କେବଳ ଦାର୍ଶନିକ ଉପଲବ୍ଧି କବିତାର ଉପଜୀବ୍ୟ ହେଲେ କବିତାର ଉତ୍କର୍ଷ ବଢ଼େ ନା କମେ ?

ଉ– କମିଥାଏ । କାରଣ ଭାବହୀନ ବା ଅନୁଭବହୀନ ହେଲେ ଦାର୍ଶନିକ ମୂଲ୍ୟବୋଧ କବିତା ହୋଇପାରେ ନାହିଁ । ମୋ ମତରେ କବି ଯେପରି ଜଣେ ସ୍ରଷ୍ଟା ପୁରୁଷ, ସେପରି ଜଣେ ଦ୍ରଷ୍ଟା ପୁରୁଷ । ଦାର୍ଶନିକତାର ସଚ୍ଚୋଟତା ତା'ର ଚେତନା ପ୍ରତି ବା ସତ୍ୟ ପ୍ରତି ଆସ୍ଥା ସ୍ଥାପନରେ ପ୍ରକଟିତ । କେବଳ ଶିକ୍ଷାତ୍ମକତା ଭିତରେ ତାହା ନାହିଁ । ଏହି ସତ୍ୟବୋଧ ହିଁ ସୌନ୍ଦର୍ଯ୍ୟବୋଧ ଗଢ଼େ କବିତା ଭିତରେ । ତେଣୁ କବି ମଧ୍ୟ ଜଣେ ଦାର୍ଶନିକ ଅନ୍ୟ ଅର୍ଥରେ ଜଣେ ସ୍ୱପ୍ନ ଦ୍ରଷ୍ଟା ଓ ସତ୍ୟ ଦ୍ରଷ୍ଟାର ସମନ୍ୱିତ ବ୍ୟକ୍ତିତ୍ୱ । ତେବେ ମନଜନିତ ଶବ୍ଦ ଇନ୍ଦ୍ରିୟ ଲବ୍ଧ ସ୍ତରରେ ପ୍ରକଟିତ ନହେଲେ ଓ ଇନ୍ଦ୍ରିୟ ଲବ୍ଧ ଜ୍ଞାନ ମନନଶୀଳତାରେ ରୂପାନ୍ତରିତ ନହେଲେ କବିତ୍ୱ ଓ ଦାର୍ଶନିକତା ଭିତରେ ସମନ୍ୱୟ ଅସମ୍ଭବ କଥା ।

ପ୍ର– ସାମ୍ପ୍ରତିକ ବ୍ୟାବହାରିକ ଜଗତର କ୍ରୂର ବାସ୍ତବତାର ଛବି ଆପଣଙ୍କର କବିତାରେ କମ୍ ଦେଖିବାକୁ ମିଳେ । ଏପରି କାହିଁକି ?

ଉ– ଅବକ୍ଷୟର ଚିତ୍ର ଏକ କ୍ରୂର ବାସ୍ତବତାର ଚିତ୍ର । ପ୍ରତିଟି ବିନାଶକାରୀ ଶକ୍ତି କବିର ନୈତିକ ପଛାର ପରିପନ୍ଥୀ । ତଥାପି ନୈତିକତା ଊର୍ଦ୍ଧ୍ୱରେ ସତ୍ୟକୁ ଆକଳନ କଲାବେଳେ ଏସବୁର ନିର୍ଣ୍ଣୟ ମୋର ଅକ୍ଷମ ଦେବତା, ଲାଲକଢ଼ର ତପସ୍ୟା ଓ ଅନାମ ଚେତନାର କବିତା ଭିତରେ ଆସିଛି । କିନ୍ତୁ ତା' ଉପରେ ସର୍ବଦା ମୋ ଦୃଷ୍ଟି ସ୍ଥିର ହୋଇ ରହିନାହିଁ । ତାକୁ ଅତିକ୍ରମ କରିବାର ସ୍ୱଚ୍ଛ ଚେତନା ମୁଁ ଶହେଟି ବୈଦିକ ମନ୍ତ୍ରକୁ 'ସୂକ୍ତ ଶତକ'ରେ କାବ୍ୟରୂପ ଦେଲାବେଳେ ଉପଲବ୍ଧିକୁ ଆଣିଛି । ଏହି ବୈଦିକ ସୂକ୍ତ ରଚନା ହେବା ପଛରେ ନିଶ୍ଚୟ ଏକ ଆଦିମ ବର୍ବର ସମାଜର କ୍ରୂର ଲୀଳା ପ୍ରାଗ୍‌ଐତିହାସିକ କାଳରୁ ରହିଥିବ କିନ୍ତୁ ଋଷିମାନେ ତାକୁ ଅତିକ୍ରମ କରି ସତ୍ୟର ଜୟବୈଜୟନ୍ତୀ ଚେତନାର ଶୃଙ୍ଗରେ ଉଡ଼ାଇଛନ୍ତି ଏକ ଶୀର୍ଷାରୋହଣ ପ୍ରଚେଷ୍ଟାରେ । ମୁଁ ଶ୍ରୀକ୍ଷେତ୍ରକୁ ଅପୋଡ଼ା ଭୂଇଁ କହିଲାବେଳେ ଓ କାଳର ଅଖଣ୍ଡ ପ୍ରବାହରେ ଜୀବନର ସ୍ଥିତି ନିରୂପଣ କଲାବେଳେ ମୃତ୍ୟୁ ଓ ପ୍ରଳୟ ଆଦିର ଊର୍ଦ୍ଧ୍ୱକୁ ଭାରତୀୟ କାବ୍ୟ ପରମ୍ପରା ଯିବା ଲକ୍ଷ୍ୟ କରିଛି । ଏହା ଆମ ଜଗନ୍ନାଥ ଦର୍ଶନରେ ଅତି ସ୍ପଷ୍ଟ ସତ୍ୟ ରୂପେ ବିଦ୍ୟମାନ । ବ୍ୟକ୍ତି, ପରିବାର, ରାଷ୍ଟ୍ର ଓ ବିଶ୍ୱର ମାନବ ଜାତି

ପାଇଁ ବୈଦିକ ଆଧ୍ୟାତ୍ମିକ ପରମ୍ପରା ସହିତ ଆମ ଉତ୍କଳୀୟ ଐତିହ୍ୟର ଉତ୍ସର୍ଗୀକୃତ ଜୀବନ ଧାରା ସମ ତାଳରେ ଗତି କରିଛି ଓ ଆମ ସାହିତ୍ୟରେ ଏହାର ଏକ ବଳିଷ୍ଠ ପରମ୍ପରା ମଧ୍ୟ ରହିଛି । ଆଜିର ଯୁଦ୍ଧୋତ୍ତର ଓ ଯୁଦ୍ଧଆତଙ୍କିତ ପୃଥିବୀ ପାଇଁ ଏହାର ଦିଗ୍‌ଦର୍ଶନ ମୁଁ ଶ୍ରୀମନ୍ଦିର ବେଢାରୁ ବିଶ୍ୱର ସାମ୍ପ୍ରତିକ ପରିସ୍ଥିତି ପର୍ଯ୍ୟନ୍ତ ପ୍ରସାର କରିବାକୁ ଏକ ଅଙ୍ଗୀକାର ଭାବେ ଗ୍ରହଣ କରିଛି । ଯେପରି ହେଉ କ୍ରୁର ଶକ୍ତିର ମୁକାବିଲା କରିବାକୁ ଆମ ମନୋବଳକୁ ଆଧ୍ୟାତ୍ମିକ ଶକ୍ତିରେ ଦୃଢ଼ୀଭୂତ କରିବାକୁ ପଡ଼ିବ । ତେଣୁ ଏ କ୍ରୁର ଶକ୍ତିର ପ୍ରସଙ୍ଗ ମୋ ପାଇଁ ସବୁବେଳେ ଗୁରୁତ୍ୱପୂର୍ଣ୍ଣ ଏକ ନିଶ୍ଚିତବୋଧକ ଦୃଷ୍ଟିଭଙ୍ଗୀରୁ । ପାର୍ଥିବ ଜଗତର ବହୁ ଆକର୍ଷଣ ଦୃଷ୍ଟିରୁ ମୋ 'ପ୍ରିୟ ଶତ୍ରୁ' ବୋଲି କବିତାରେ ମୁଁ ଦର୍ଶାଇ ଆସିଛି ।

ପ୍ର— ଏକ ନିର୍ଦ୍ଦିଷ୍ଟ ପାଠକଗୋଷ୍ଠୀକୁ ଆଖି ଆଗରେ ରଖି ଆପଣ ତେବେ କବିତା ଲେଖିଛନ୍ତି ? ଯଦି ତା' ନୁହେଁ, ପାଠକଗୋଷ୍ଠୀ ନିକଟରେ କବିତାର ଫଳାଫଳ ପାଇଁ କବିର ଦାୟିତ୍ୱ କେତେଦୂର ?

ଉ— ମୁଁ କିଛି ଗୀତ ଲେଖିଛି । ଅନେକ ଶ୍ରୋତା ତାହା ବେତାର ଓ କ୍ୟାସେଟ୍ ମାଧ୍ୟମରେ ଶୁଣନ୍ତି । ସ୍ୱରବର୍ଣ୍ଣ ବୋଲି ଗୋଟିଏ ଗୀତ ସଞ୍ଚୟନ ମୁଁ ଶୀଘ୍ର ପ୍ରକାଶ କରିବାକୁ ଦେବି । ଗୀତର ଆଉ ଏକ ଆକର୍ଷଣ ହେଲା ତା'ର ସ୍ୱର ଓ ଗାୟନ ଶୈଳୀରେ ଶ୍ରୋତା ଆକୃଷ୍ଟ ହୁଅନ୍ତି । ପାଠକମାନେ ତାକୁ ପଢ଼ିଲା ପରେ ମଧ୍ୟ ସଙ୍ଗୀତକୁ ଅପେକ୍ଷା କରିବା ସ୍ୱାଭାବିକ । ଗୀତିକବିତାର ପାଠକମାନେ ତାକୁ ପଢ଼ିଲା ପରେ ମଧ୍ୟ ସଙ୍ଗୀତକୁ ଅପେକ୍ଷା କରିବା ସ୍ୱାଭାବିକ । ଗୀତିକବିତାର ପାଠକମାନେ ତାକୁ କିପରି ଅଧିକ ସଂଖ୍ୟାରେ ଗ୍ରହଣ କରିବେ ମୁଁ ଏବେ କହି ପାରିବି ନାହିଁ । ମାତ୍ର କବିତାରେ ଆପାତତଃ କେତେକ ନିର୍ଦ୍ଦିଷ୍ଟ ପାଠକଗୋଷ୍ଠୀ ସୃଷ୍ଟି କରିବା ଓ ତାର ପରିସର ବୃଦ୍ଧି କରିବା ପାଇଁ ମୁଁ ଐତିହ୍ୟର ଗୁଣ ଗୁଡ଼ିକୁ ମୋର ଭାଷାଶୈଳୀ, ଭାବ ଓ ଆଭିମୁଖ୍ୟରେ ବର୍ତ୍ତମାନ ଗୁରୁତ୍ୱ ଦେଉଛି ।

ପ୍ର— ସମସାମୟିକ ଓଡ଼ିଆ କବିତା ଆଦୌ ନ ପଢୁଥିବା ଲୋକଠାରେ ଆପଣଙ୍କ ପ୍ରତିକ୍ରିୟା କ'ଣ ?

ଉ— ହୁଏତ ସେମାନେ କବିତା ପ୍ରେମୀ ହେବାରେ ଜୀବନର ସଫଳତା ପାଇବେ ବୋଲି ସନ୍ଦିହାନ । ଆଜିକାଲି ସଫଳତାର ଅନ୍ୟ ଦିଗ ସବୁ ରହିଛି । ଆଗେ କାବ୍ୟାସ୍ୱାଦକୁ ପୁରୁଷାର୍ଥ ଲାଭର ଉପାୟ ବୋଲି ପାଠକମାନେ ମଣୁଥିଲେ । ଚଉବର୍ଗ ସିଦ୍ଧି ବର୍ତ୍ତମାନ ଅଧିକାଂଶ କ୍ଷମତା ଓ ଧନରୁ ସହଜରେ ମିଳିଯାଇ ପାରେ ବୋଲି ବିଚାରୁଛନ୍ତି । ଶାସ୍ତ୍ରରେ ଏମାନଙ୍କୁ ଶୃଙ୍ଗ ପୁଚ୍ଛହୀନ ପଶୁବୋଲି କୁହାଯାଏ । ବୁଦ୍ଧିମାନ ଲୋକେ କାବ୍ୟଶାସ୍ତ୍ର

ପଠନ୍ରେ କାଳ କଟାନ୍ତି – ଏ ପ୍ରୟୋଜନୀୟତା ଦିନେ ନିଶ୍ଚୟ ଲୋକେ ଅନୁଭବ କରିବେ ।

ପ୍ର– କବିତାରେ ଏ ଅବକ୍ଷୟ ଆପଣ କିପରି ଚିହ୍ନନ୍ତି ?

ଉ– ବେଶ୍ ଚିହ୍ନେ ଓ ବାରମ୍ବାର ଚିହ୍ନୁଥାଏ ।

ପ୍ର– ଆପଣଙ୍କ କବି ଜୀବନରେ ଏପରି ଅଧଃପତନ କେବେ ଆସିଛି କି ?

ଉ– ବରଂ ଅଧଃପତନରୁ ରକ୍ଷା ପାଇବାର ବାଟ ମୋ କବିତ୍ୱ ହିଁ ମୋତେ ଦେଇଛି । କିନ୍ତୁ କବିତାରେ ସେ ଅଧଃପତନର ଛନ୍ଦ ଆସିବା ଜାଣିବା ମାତ୍ରେ ମୁଁ ସେ ରାସ୍ତାରୁ ନିଜକୁ ପ୍ରତ୍ୟାହାର କରି ଆଣିବାକୁ ସହକବି ଓ ସତ୍‌ସମାଲୋଚକଙ୍କ ପରାମର୍ଶକୁ ସମ୍ମାନ ଦେଇଥାଏ । ଅନାମ କବିତା ଲେଖିଲାବେଳେ ଅନେକ ମତେ ସତର୍କ କରି ଦେଇଥିଲେ ଓ ମୋ କବିତାରେ ଦୁର୍ବୋଧ୍ୟତା ଓ ଲକ୍ଷ୍ୟହୀନତା ପୀଡ଼ାଦାୟକ ହେଲେ ଯେଉଁମାନେ ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି, ମୁଁ ସେ ନିର୍ଦ୍ଦେଶ ମାନିନିଏ । ମୋଟାମୋଟି ମୁଁ ଏ ଅଧଃପତନରୁ ନିଜ କବିତାକୁ ବଞ୍ଚେଇବାକୁ ସତର୍କ ଥାଏ ।

ପ୍ର– ଶଙ୍ଖନାଭି ଓ ଦର୍ପଣଶିଳା ଭିତରୁ ଆପଣ କେଉଁଥିରୁ ବେଶି ଆତ୍ମସନ୍ତୋଷ ପାଇଛନ୍ତି ?

ଉ– ଶଙ୍ଖନାଭି ୩୫ ବର୍ଷ କାଳ ଅନ୍ୟମାନଙ୍କ ସନ୍ତୋଷର କାରଣ ହୋଇ ପାରିଛି । ଦର୍ପଣଶିଳା ଏଇ ଦି ବର୍ଷ ତଳର ଲେଖା । ଶୁଣୁଛି ଯେଉଁମାନେ 'ଶଙ୍ଖନାଭି' ପ୍ରତି ଅସ୍ଥାବାନ ଥିଲେ ଦର୍ପଣଶିଳା ତା'ଠାରୁ ଭଲ ଲାଗିଲା ବୋଲି ମନ୍ତବ୍ୟ ଦେଇଛନ୍ତି । ମୁଁ କିଛି ଆତ୍ମସନ୍ତୋଷ ଏବେ ପାଉଛି କିନ୍ତୁ ଲେଖୁଥିବା ଯାଏଁ ମୁଁ ଭାବୁଛି କିଛି ଅଭାବ ରହିଛି-ଯାହା ମତେ ପୂରଣ କରିବାକୁ ପଡ଼ିବ ।

ପ୍ର– କବିତା ଲେଖିବା ପାଇଁ ଆପଣଙ୍କ ପାଇଁ ସବୁଠାରୁ ଶକ୍ତିଶାଳୀ ପ୍ରେରଣାର ଉତ୍ସ କ'ଣ ?

ଉ– କ'ଣ ବୋଲି ପଚାରିଲେ କହିବି ଆମର ପରମ୍ପରା ଓ ଐତିହ୍ୟ । କିନ୍ତୁ କିଏ ବୋଲି ପଚାରିଲେ କହିବି କବିତା ନିଜେ । କବିତାର ଉତ୍ସ ହିଁ ପ୍ରେରଣାର ଉତ୍ସ । ଏହା ଆକସ୍ମିକ ଭାବେ ଅଜାଡ଼ି ହୋଇପଡ଼େ ଜଙ୍ଗଲର ଶାଳଫୁଲ ପରି ବହୁ ସମୟ ମୋ ଉପରେ । କେଉଁ ଅଜ୍ଞାତରେ ସେ ପ୍ରେମ ଲୁଚିଥାଏ କେଜାଣି ନା ମୋ ଭିତରେ ଥାଏ ?

ପ୍ର– ବର୍ତ୍ତମାନ ଓଡ଼ିଆ କାବ୍ୟ ସମାଲୋଚନା ଆପଣଙ୍କୁ କିପରି ଲାଗୁଛି ? କେଉଁ ସମାଲୋଚକମାନେ ଆପଣଙ୍କର ଉପରେ ଆସ୍ଥା ପ୍ରକଟ କରନ୍ତି- କହିବେ କି ?

ଉ– ମୋ ନିଜ ଉପରେ ଆସ୍ଥା ନଥିଲେ ମୁଁ ଲେଖନ୍ତି ନାହିଁ । ତେବେ ପାଠକମାନଙ୍କ ସହିତ ସୃଜନର ସମ୍ପର୍କକୁ ପ୍ରସାର କରିବା ପାଇଁ ମୋ ଲେଖାର ସମାଲୋଚନା ଦରକାର ।

ଓଡ଼ିଆ ସମାଲୋଚକମାନଙ୍କର ଭାରତୀୟ ସମାଲୋଚନା କ୍ଷେତ୍ରକୁ କୌଣସି ଅବଦାନ ନାହିଁ । ପଣ୍ଡିତ ନୀଳକଣ୍ଠ ଦାଶଙ୍କ ସମାଲୋଚନାର ମୌଳିକ ଦୃଷ୍ଟିଭଙ୍ଗୀ ଓ ସୃଜନଶୀଳ ଅଭିବ୍ୟକ୍ତି ମତେ ସର୍ବଦା ଦିଗ୍‌ଦର୍ଶନ ଦିଏ । ସମାଲୋଚକମାନେ ଯାହା କହିବେ ତାହା ଯଦି ସତ୍ୟ ଉପରେ ଆଧାରିତ ଓ ସୃଷ୍ଟିଧର୍ମୀ ସମାଲୋଚନା ତାହା ଗ୍ରହଣ କରିବାରେ ମୋର ସଙ୍କୋଚ ନଥାଏ । ମୋ ଉପରେ ଆସ୍ଥା ପ୍ରକଟ କରି ପ୍ରବନ୍ଧ ଲେଖିଥିବା ବ୍ୟକ୍ତିଙ୍କ ସଂଖ୍ୟା ବହୁତ । ମୁଁ ସେଗୁଡ଼ିକ ସାଇତି ରଖିବାକୁ ଇଚ୍ଛାକରେ । ପ୍ରକୃତରେ ସମାଲୋଚନା ମତେ ବ୍ୟଥିତ କରେନାହିଁ । ତେବେ ମୁଁ ସାହିତ୍ୟ ଭିତରକୁ ନାନା ବିବାଦ, ଅସୂୟା, ବୈରଭାବ, ହତାଶା ଓ ପ୍ରତିଯୋଗିତାମୂଳକ ଦ୍ୱନ୍ଦ୍ୱ, ବିତର୍କ ପଶି ଆସୁଥିବା ବହୁଦିନରୁ ଦେଖି ଆସୁିଛି ଓ ଶୁଣି ଆସୁଛି । ସାହିତ୍ୟ ଭିତରକୁ ଆସି ସେ ମାୟାରେ କଷ୍ଟ ପାଇବା ଲୋକ ମୁଁ ନୁହେଁ । ସାହିତ୍ୟ, ମୋର ନିଶା ଓ ଅପାର୍ଥିବ ଚେତନାର ବାହକ ଏକ ସୁସଜ୍ଜିତ ଶୂନ୍ୟଯାନ । ଯାହା ଭୂଇଁରୁ ଶୂନ୍ୟକୁ ଯାଏ । ପୁଣି ଫେରି ଆସେ । ସାହିତ୍ୟକୁ ନେଇ ଜୀବନ ଗଢ଼ାଯାଇ ପାରେ କିନ୍ତୁ ଜୀବନକୁ ଧ୍ୱଂସ କରି ପାରେନା ସାହିତ୍ୟ । ସାହିତ୍ୟିକର ପ୍ରାଣଶକ୍ତି ତେଣୁ ମନ୍ତ୍ରଶକ୍ତି ଭଳି ଶକ୍ତିଶାଳୀ । ସମାଲୋଚକମାନେ ପ୍ରଥମେ ସହୃଦୟ ହେବା ଉଚିତ୍ ।

ପ୍ର— ଅନାମ ଗଣଚେତନା ତଥା ଏକ ବିଶ୍ୱଜୀବନ ସତ୍ତାର ପ୍ରତୀତି ଓ ଅନୁଭବ ପାଠକଠାରେ ଦେବା ପାଇଁ ଆପଣ ଚେଷ୍ଟା କରି ଆସିଛନ୍ତି । ଏ ଦିଗରେ ସଫଳତାର କେଉଁ ସୋପାନରେ ଆପଣ ?

ଉ— ଅନାମ ଗଣଚେତନା ବ୍ୟକ୍ତି ଚେତନାର ପରିପନ୍ଥୀ ନୁହେଁ । ମେଳରେ ଯାଉଥିବା ଲୋକର ବ୍ୟକ୍ତି ସ୍ୱତନ୍ତ୍ରତା ଓ ମର୍ଯ୍ୟାଦାବୋଧ ନଥିଲେ ସେ ମେଳରେ ଯାଇପାରେନା । ଚନ୍ଦ୍ରଭାଗା ବୁଡ଼କୁ ରାତି ରାତି ଚାଲିଥିବା ଯାତ୍ରୀ ଓ ଶଗଡ଼ ଗୋଟିଏ ଲକ୍ଷ୍ୟରେ ଯାଆନ୍ତି - ଅନ୍ଧାରରେ - ଚୋଳାଏ ପାଣି ସୂର୍ଯ୍ୟଙ୍କୁ ଟେକି ଆଲୋକ ପାଇବାକୁ । ଆଞ୍ଚଳିକତାର ବୁନିୟାଦି ଉପରେ ବିଶ୍ୱଜନୀନତା ମୋ ପାଇଁ ଠିଆ ହୋଇଛି । ଜଗନ୍ନାଥଙ୍କ ସାମ୍ୟ, ମୈତ୍ରୀ, ମୁକ୍ତିର ଚେତନା ଓ ଆଧ୍ୟାତ୍ମିକ ସଂପ୍ରୀତିର ମୋହ ଅନାମଙ୍କ ଆକର୍ଷଣୀୟ ଉପାଦାନ-

'କବିତାକୁ ଚଳେଇବାକୁ ହେବ ବଡ଼ ଦାଣ୍ଡରେ
ଏ କଥା ବିଶ୍ୱାସ ନଥିଲା ଏ ଯାଏଁ
ବହୁ ପ୍ରାଚୀନ ଗମନାଗମନ
ନା ଅଛି ମାଧ୍ୟମ ନା ଅଛି ବାହନ

ଅପୂର୍ବ ଆକର୍ଷଣ ହେତୁ
ଆପେ କିଏ ଗଢ଼ିଦିଏ ସେତୁ ।'

ଅନାମ ପୁରସ୍କାର ଲାଳସୀ ହେବାର ପ୍ରଶ୍ନ ଉଠୁନାହିଁ । ପଦ ପଦବୀର ମଣିଷକୁ ସାଧାରଣ ମଣିଷ ସ୍ତରକୁ ଖସି ଆସି ଛନ୍ଦହୀନ କବିତା ଲେଖିବା ମଧ୍ୟ ସହଜ କଥା ନୁହେଁ । ସାଧାରଣତ୍ୱ ଓ ଗହଳିରେ ତା'ର ନିଶ୍ଚିହ୍ନତାବୋଧ ତା'ର ଅସ୍ତିତ୍ୱକୁ ଏପରି ଗୌଣ କରିଦିଏ ଯେ ତା'ର ଅନ୍ତର ସାରା ଅସହାୟତା, ବିସ୍ୱାଦ, ବିକାର ଓ ବିଫଳତାରେ ତାକୁ ଦଳିତ ପତିତ ସ୍ତରକୁ ନେଇଯାଏ । ଆଧ୍ୟାତ୍ମିକତା ଶକ୍ତିରେ ଜଣେ ସନ୍ଥ ଭଳି ଆନନ୍ଦୋଚ୍ଛଳ ଦୀପ୍ତିରେ ହୃଦୟକୁ ଆହ୍ଲାଦିତ କରି ନ ରଖିଲେ ସେ ବାଟରେ ନିର୍ଭୀକ ହୋଇ ବାଟ ଚାଲିବା କଷ୍ଟ । ସଂସାରରୁ ଧ୍ୟାନାତୀତ ହେବାରେ କେଉଁ ଅନାହତ ପୁରରୁ ଶବ୍ଦର ସୁପର୍ଣ୍ଣମାନେ ସେମାନଙ୍କ ଡ଼େଣାରେ ଅପୂର୍ବ ଭାବର ପୀୟୁଷ ନୀରବରେ ବୋହି ଆଣିବାର ଅଲୌକିକ ଅନୁଭବ କେବଳ କବିତାରେ ମିଳିଥାଏ । ନ ମିଳିଲେ ସନ୍ତୋଷ ମିଳେନା । ସେଥିପାଇଁ ଏଯାବତ୍ ଲେଖିବାକୁ ପଡ଼ୁଛି ମତେ । ଅନାମ ସାହିତ୍ୟ ପରମ୍ପରା, ପରିସ୍ଥିତି, ପରିବର୍ତ୍ତନ, ପ୍ରଗତି ଓ ପ୍ରତିବାଦକୁ ନେଇ ଲେଖା ହୁଏ । ଲୋକ କବିତାର ଛନ୍ଦ ସ୍ତରକୁ ଯାଇ ପାରିଲେ ଏହାର ସଫଳତା । ଶୀର୍ଷକହୀନ ଅନାମ୍ନ କବିତା ହିଁ ଆଜିର ମୁକ୍ତ କାବ୍ୟଧାରା । ଆଜି କବିତାରେ ଶୀର୍ଷକର ଅର୍ଥ ମୁଁ କିଛି ପାଏ ନାହିଁ । କିନ୍ତୁ ନୂଆ ପ୍ରତୀକବାଦୀ କବିତାରେ ଶୀର୍ଷକ ଅପରିହାର୍ଯ୍ୟ ।

ହଁ, ସାମ୍ପ୍ରତିକ ବିନ୍ଦୁରେ ଠିଆ ହୋଇ ପରମ୍ପରାଠୁ ପ୍ରତିବାଦ ପର୍ଯ୍ୟନ୍ତ କବିତା ଜାରି ରଖିବା ମଧ୍ୟ ସହଜ କଥା ନୁହେଁ । ବିରୋଧ ଓ ପ୍ରତିବାଦର ଅର୍ଥ ଈର୍ଷା ଓ ହିଂସାକରଣ ନୁହେଁ । ତେଣୁ ଅନାମମାନେ ସର୍ବଦା ଆତ୍ମରକ୍ଷା କରି ନିଜକୁ ପରିବର୍ତ୍ତନ କରିବା ପାଇଁ ବାଟ ଖୋଲା ରଖନ୍ତି । ଯେଉଁଠି କବାଟ ବନ୍ଦ ହୁଏ, ଅଣନିଶ୍ୱାସୀ ଲାଗେ ।

ପ୍ର– ନିଜର କବି କର୍ମକୁ ବାଦ୍‌ଦେଲେ ଆପଣଙ୍କ ପାଖେ ଯାହା ରହିବ ତାହା କବିଠାରୁ ବଡ଼ ନା ଛୋଟ ?

ଉ– କେଦାରଗୌରୀରେ ପାଣି ଯେତିକି ପଶେ ସେତିକି ଅନ୍ୟ କୁଣ୍ଡକୁ ବୋହିଯାଏ । ଜୀବନ କହିଲେ ଯେତିକି ରହେ ସେତିକି ରହିବ । କବି କର୍ମ ପାଇଁ ମୋ ପାଇଁ ଜୀବନ କାହିଁ ? ଏହା ପ୍ରକୃତ ଈଶ୍ୱରୀୟ କାର୍ଯ୍ୟ ।

ପ୍ର– ଓଡ଼ିଆ କବିତାର ଭବିଷ୍ୟତ କ'ଣ ?

ଉ– ଅତୀତ ବଳିଷ୍ଠ, ବର୍ତ୍ତମାନ ଆହୁରି ସମୃଦ୍ଧ ହେବ ଜନାଦର ଲାଭକଲେ । ତା' ହେଲେ ଭବିଷ୍ୟତ ଉନ୍ନତତର ହେବା ନିଶ୍ଚିତ ।

ପ୍ର– କେଉଁ ଓଡ଼ିଆ କବିମାନଙ୍କ କବିତା ଆପଣଙ୍କୁ ଭଲ ଲାଗୁଛି ଓ କେଉଁ ଯୁବ ପୀଢ଼ୀର କବିମାନଙ୍କ ଠାରେ ଆପଣ ଉଜ୍ଜ୍ୱଳ ସମ୍ଭାବନା ଦେଖି ପାରିଛନ୍ତି ?

ଉ– 'ସମାବେଶର ସମ୍ପାଦକ ଭାବେ ମୁଁ ଯେଉଁ କବିମାନଙ୍କୁ ଆଦର କରେ ତାହା ପ୍ରକାଶ କରୁଛି । ସେଥିରେ ପୁରୁଣା ନୂଆଙ୍କର ସମାବେଶ ହେଉଛି ।

ସର୍ବଦା ବ୍ୟଥିତ କରିଛି- ନୂଆ ଶୈଳୀଟିଏ ଉଦ୍‌ଭବ ହେବାରେ ପୁରୁଣାଙ୍କ ଭିତରେ ଗୁଞ୍ଜରଣ ଓ ରକ୍ଷଣଶୀଳତାର ଆଭ୍ୟନ୍ତରୀଣ ପ୍ରତିକ୍ରିୟା । ସେହିଭଳି ଗୋଟେ ପ୍ରକାର ହେୟାର୍‌କଟ୍ ଓ ୟୁନିଫର୍ମ ପିନ୍ଧି କେତେକ କବିତା କର୍ମଶାଳାରୁ ତିଆରି ହୋଇ ତାର ବୈଚିତ୍ର୍ୟ ହରାଇ ବସୁଛି ଓ କବିର ମୌଳିକତା ଏହା ଦ୍ୱାରା ବାରି ହେଉନାହିଁ । ଭାବର ଗଭୀରତା ନଥାଇ କେବଳ ବିରୋଧ ପାଇଁ ବିରୋଧ କରି ଢେ଼ଲା ବା କାଦୁଅ ଫୋପାଡ଼ିବାରେ କବିତାରେ କିଛି ନୂଆ ଆନ୍ଦୋଳନ ସୃଷ୍ଟି ହେବ ନାହିଁ । ଏ ଦ୍ୱନ୍ଦ୍ୱରେ ପଡ଼ିବା ନାହିଁ ବୋଲି ଯଦି ସାହିତ୍ୟ କଲେ- ଭାବ ଓ ଶୈଳୀରେ ମୁକ୍ତପଣିଆ ଦର୍ଶାଇବା ଯଦି ଆମ ଆଧୁନିକତାର ଲକ୍ଷ୍ୟ ତେବେ ଆମର ହୃଦୟକୁ ମୁକ୍ତ ରଖିବା ଅତ୍ୟନ୍ତ ଜରୁରୀ । ତେବେ ଯାଇ ଆମେ ସହୃଦୟ ପାଠକ ଓ ସମାନଧର୍ମା ହୋଇପାରିବା ।



## କବିଙ୍କୁ ପ୍ରଦତ୍ତ ପୁରସ୍କାର ଓ ସମ୍ମାନ

ଓଡ଼ିଶା ସାହିତ୍ୟ ଏକାଡ଼େମୀ – ୧୯୮୦, ରାତିର ଦୁଇଟି ଡ଼େଣା (ନାଟକ ପାଇଁ ୧୯୭୩-୭୪)

ଜୀବନ ରଙ୍ଗ - ୧୯୮୩, ଝଙ୍କାର ବିଷୁବ ଗଳ୍ପ - ୧୯୬୦, ଝଙ୍କାର ବିଷୁବ କବିତା - ୧୯୬୯

ବିଷୁବ ପୁରସ୍କାର (ସାମଗ୍ରିକ କୃତି ପାଇଁ) - ୧୯୭୪, ଧରିତ୍ରୀ - ୧୯୭୭,

ସାମନ୍ତ ଚନ୍ଦ୍ରଶେଖର ପ୍ରତିଭା ସମ୍ମାନ, ସଙ୍ଗୀତ ନାଟକ ଏକାଡ଼େମୀ ପ୍ରଶଂସା ପତ୍ର

କଳାତୀର୍ଥ ପୁରସ୍କାର, ଶତାବ୍ଦୀର କଳାକାର ପୁରସ୍କାର ଓ ଯଦୁମଣି ସମ୍ମାନ, ତଥା ସୁଧନ୍ୟା ସମ୍ମାନ ।

## କବିଙ୍କର ସାହିତ୍ୟ କୃତି

### କବିତା :

ଶଙ୍ଖନାଭି (୧୯୭୩), ଅକ୍ଷମ ଦେବତା (୧୯୭୮), ସୂକ୍ତ ଶତକ (୧୯୭୮), ଚନ୍ଦ୍ରବିମ୍ବ (୧୯୮୧), ଲାଲ କଢ଼ର ତପସ୍ୟା (୧୯୮୨), ଚାହାଣୀ ମଣ୍ଡପ (୧୯୮୭), ସ୍ୱପ୍ନ ବିନିମୟ, (୧୯୯୨), ଭିତିରି ଚନ୍ଦନ (୧୯୯୪), ଦର୍ପଣଶିଳା (୧୯୯୫), ଶବ୍ଦ ଏକା ଏକା ଏକତ୍ୱ (୧୯୯୫), ସନ୍ଧ୍ୟା ଦର୍ଶନ (୧୯୯୮), ଅଣ ଅକ୍ଷର (୧୯୯୮), ସ୍ୱରବର୍ଣ୍ଣ (ଗୀତି କବିତା - ୧୯୯୯), ଶଙ୍ଖନାଭି ଓ ଅନ୍ୟାନ୍ୟ କବିତା (୨୦୦୦)

### ଗଳ୍ପ :

ମୂକ ଡାହୁକ (୧୯୭୫), ବୃଷଭର ଏକପାଦ (୧୯୭୭), ଇଚ୍ଛାର ସାମ୍ରାଜ୍ୟ (୧୯୯୦)।

### ନାଟକ :

କାଗଜ ଡଙ୍ଗା (୧୯୬୦), ରାତିର ଦୁଇଟି ଡେଣା (୧୯୭୪), ହେ ନିଷାଦ ନିବୃତ୍ତ ହୁଅ (୧୯୭୭), ନିନ୍ଦିତ ଗଜପତି (୧୯୭୭), ହଂସଧ୍ୱନି (୧୯୭୮), ମଝି ଦରିଆ (୧୯୭୮), ମଧୁଲିତା (୧୯୮୦), ସମ୍ଭବ ଅସମ୍ଭବ (୧୯୮୩), ଅଦୃଶ୍ୟ ନଟ (୧୯୮୦), ଏବେ ନୁହେଁ ତ କେବେ ନୁହେଁ (୧୯୯୦)।

### ଉପନ୍ୟାସ :

ବନବିହଙ୍ଗୀ (୧୯୬୦),

ନୀଳ ହ୍ରଦର ରକ୍ତକମଳ (୧୯୬୧)

### ସମାଲୋଚନା :

ସ୍ୱର ଓ ସାଧକ (୧୯୮୧)

### ଏକାଙ୍କିକା :

ବନାଗ୍ନି (୧୯୭୮)

### ଅନୁବାଦ :

ଗରିଲା (ଲେଖକ-ଜାଁପଲ୍ ସାର୍ତ୍ତଙ୍କ Crime passional) (୧୯୭୯)

ମାର୍ଚ୍ଚ ୧୯୯୭ 'ସମ ସାମୟିକ ପତ୍ର'ରେ ପ୍ରକାଶିତ, ଏମ୍.ଆଇ.ଜି. ୨, ୬୫/୫ ଭୁବନେଶ୍ୱର - ୧୬, ଚନ୍ଦ୍ରଶେଖର ପୁର।

